# ଅନ୍ଧାରର ମୁହଁ

(ଗଳ୍ପ ସଂକଳନ)


| | |
|---|---|
| ଗାଳ୍ପିକା | ଡକ୍ଟର ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ର<br>'କୈବଲ୍ୟ', ବଳଗଣ୍ଡି, ବଡ଼ଦାଣ୍ଡ, ପୁରୀ |
| ପ୍ରକାଶକ | ଦିଲୀପ କୁମାର ବେଉରା<br>ବିଜୟିନୀ ପବ୍ଲିକେଶନ୍ସ<br>ଶଙ୍କରପୁର, ଅରୁଣୋଦୟ ମାର୍କେଟ୍, କଟକ - ୧୨ |
| ପ୍ରଥମ ପ୍ରକାଶନ | ମହାସପ୍ତମୀ, ୧୨ ଅକ୍ଟୋବର ୨୦୨୧ |
| ପ୍ରଚ୍ଛଦ | ରମାକାନ୍ତ ସାମନ୍ତରାୟ |
| ମୁଦ୍ରଣ | ସଙ୍ଗୀତା ପ୍ରିଣ୍ଟର୍ସ, କଟକ |


---

## Andharara Muhan

(Short Story Collection)


| | |
|---|---|
| Writer | **Dr. Swarajya Laxmi Mishra**<br>'Kaibalya', Balagandi,<br>Badadanda, Puri<br>Phone : 06752-222888 |
| Publisher | Dilip Kumar Beura<br>**Bijayinee Publications**<br>Shankarpur, Arunodaya Market<br>Cuttack - 753 012<br>Phone : 9439241471 |
| First Edition | Mahasaptami, 12 October 2021 |
| Cover Art | Ramakanta Samantaray |
| Printed at | Sangeeta Printers, Cuttack |

---

Price : ₹ 220 ISBN : 978-93-90881-45-1

# ଅନ୍ଧାର ଭିତରୁ ଫୁଟି ଉଠୁଥିବା ନାରୀ ଜୀବନର ଅକୁହା ବେଦନାର ମୂର୍ତ୍ତ ସ୍ୱର 'ଅନ୍ଧାରର ମୁହଁ' ସମ୍ପର୍କରେ ପଦେ

**ବୈଷ୍ଣବ ଚରଣ ସାମଲ**

ସ୍ୱନାମଧନ୍ୟା ପ୍ରତିଷ୍ଠାତା ଗାଳ୍ପିକା ଡକ୍ଟର ସ୍ୱରାଜଲକ୍ଷ୍ମୀ ମିଶ୍ରଙ୍କର 'ଅନ୍ଧାରର ମୁହଁ' ମଧ୍ୟବିତ୍ତ ନାରୀ ଜୀବନର କେତେ କେତେ ଅକୁହା କାହାଣୀକୁ ଆଧାର କରି ଆଠଟି ଗଳ୍ପର ଏକ ରମ୍ୟ ମଧୁର ସଙ୍କଳନ । ସର୍ବତ୍ର ଅଛି ଅନ୍ଧାରର ଗୁରୁତ୍ୱ । ଅନ୍ଧାର ହିଁ ଚିହ୍ନେଇ ଦିଏ ମଣିଷର ପ୍ରକୃତ ସ୍ୱରୂପକୁ; ଆଲୋକ ନୁହେଁ । ଆଲୋକ ହିଁ ମଣିଷର ଭଦ୍ରଖୋଳ । ସାତତାଳ ପାଣି ଓ ପଙ୍କ ଭିତରେ ଥିବା ଫଗୁଆ ଭିତରେ ଲୁଚି ରହିଥାଏ ଅନ୍ଧାରରୂପୀ କଳା ଭଅଁର । ତାକୁ ଆବିଷ୍କାର କରିବା କ'ଣ ଏତେ ସହଜ ! ଗାଳ୍ପିକା ଅତି ଦକ୍ଷତାର ସହିତ ଅନ୍ଧକାରର ପରସ୍ତ ପରସ୍ତ ଆବରଣ ଭେଦ କରି ସତ୍ୟକୁ ଆବିଷ୍କାର କରିଛନ୍ତି । ସେହି ଆବିଷ୍କାର ଓ ଅନ୍ୱେଷା ଭିତର ଦେଇ ଶାଣିତ ହୋଇଉଠିଛି ତାଙ୍କର ଜିଜ୍ଞାସା ଓ ଅନ୍ୱେଷା ।

ସଙ୍କଳନର ପ୍ରଥମ ଗଳ୍ପଟି ହେଉଛି 'ଅନ୍ଧାରର ମୁହଁ' । ଏହି ନାମାନୁସାରେ ସଙ୍କଳନର ମଧ୍ୟ ହୋଇଛି ନାମକରଣ । 'ଅନ୍ଧାରର ମୁହଁ' ଗଳ୍ପରେ ମଧ୍ୟବିତ୍ତ ପରିବାରର ସ୍ୱାମୀ ସୁଖମୟ ଓ ପତ୍ନୀ କଲ୍ୟାଣୀଙ୍କର ଦାଂପତ୍ୟ ଜୀବନର ତିକ୍ତ ମଧୁର କାହାଣୀ ବ୍ୟଂଜିତ । ଏଥିରେ ସୁଖମୟ ଚରିତ୍ର ଭିତରେ ଫୁଟି ଉଠିଛି ପୁରୁଷୋଚିତ ଅହଂପଣ । ଏହି ମଣିଷଟି ଭିତର ମୁହାଁ । ତେଣୁ ତାଙ୍କୁ ବୁଝିବା ଓ ତାଙ୍କ ସ୍ୱରୂପକୁ ଜାଣିବା ସହଜ ନୁହେଁ । କଲ୍ୟାଣୀ କିନ୍ତୁ ଭିତରମୁହାଁ ନୁହେଁ । ସେ ପତ୍ନୀ ଓ ଗୃହିଣୀ । ତା'ର ଦାୟିତ୍ୱ ସେ ଠିକ୍ ଭାବରେ ତୁଲାଏ । ତା'ର ଜୀବନ ମଧ୍ୟ ଶୃଙ୍ଖଳିତ । ସ୍ୱାମୀର ଭୁଲାପଣ ଓ ନିଜେ ଦୋଷ କରିଥିଲେ ମଧ୍ୟ ପତ୍ନୀ ଉପରେ ତା'ର କ୍ରୋଧକୁ

ଶୁଝାଏ । ନିଜ ଭୁଲ ଜଣା ପଡ଼ିଗଲା ପରେ ପତ୍ନୀ ପ୍ରତି ତା'ର ମମତା ପୁଣି ଝରିଆସେ । ଏପରି ଘଟଣା ପ୍ରାୟ ଅଧିକାଂଶ ପରିବାରରେ ଘଟିଥାଏ । ଲେଖିକା ତାହାକୁ ଚମତ୍କାର ଭାବରେ ରୂପ ଦେବା ସଙ୍ଗେ ସଙ୍ଗେ ପତ୍ନୀର ଧୈର୍ଯ୍ୟକୁ ଦର୍ଶାଇ ଦେଇଛନ୍ତି । ଏହା ତାଙ୍କ ଦାମ୍ପତ୍ୟ ଜୀବନର ଜୀବନ୍ତ ଜୀବନ୍ତ ଅନୁଭୂତିର କଳାତ୍ମକ ରୂପ । ଠିକ୍ ଏହିପରି ଅନ୍ୟ ଏକ ଗଳ୍ପ 'ତମାଳ' । ନିରବ ପ୍ରେମ, ସାଧାରଣ ନାରୀର ପରକୁ ଆପଣାର କରିବାର ମହନୀୟ ବ୍ୟକ୍ତିତ୍ୱ, ନିଜକୁ ତିଳ ତିଳ କରି ଅନ୍ୟର ପିଲାମାନଙ୍କୁ ମଣିଷ କରିବାର ସଂକଳ୍ପ ପିଲାମାନେ ପ୍ରତିଷ୍ଠା ଲାଭ କଲା ପରେ ତା'ର ତ୍ୟାଗକୁ ବିସ୍ମୃତ ହୋଇଯିବା ଓ ତାକୁ ଅବହେଳା କରିବା, କୌଣସି ଏକ ଅନାଥ ବାଳକକୁ ବାତ୍ସଲ୍ୟ ମମତା ଦେଇ ପାଳନ କରିବା ଓ ତା'ର ଶାରୀରିକ ଅସୁସ୍ଥତା ବେଳେ ଯାହାଙ୍କୁ ସେ ମଣିଷ କରିଥିଲା ସେମାନେ ତାକୁ ନ ଚାହିଁଲା ସମୟରେ ସେହି ବାଳକଟିର ସେବା, ମୃତ୍ୟୁ ପରେ ତା'ର ଶବଦାହକୁ ନେଇ ଭାଇ ବିରାଜମାନଙ୍କର ଝଗଡ଼ା, ଶେଷରେ ସେହି ଅନାଥ ବାଳକର ମୁଖାଗ୍ନି ପ୍ରଦାନ, ପାଠ ପଢ଼ିଥିଲା ବେଳେ ସେହି ନାରୀ ମାଳ ଅପାର ସହପାଠୀ ବିଭାସ ସହିତ ତାଙ୍କର ଦିବ୍ୟ ପ୍ରେମ, ଚିତାଗ୍ନି ଜଳୁଥିଲା ବେଳେ ତା'ର ଫୁଲ ତୋଡ଼ା ପ୍ରଦାନ, ଅନାଥ ବାଳକ ସୁବୋଧ ଦ୍ୱାର ରହସ୍ୟ ଉନ୍ମୋଚନ ଓ ମାଳ ଅପାର ତ୍ୟାଗ ଓ ନିଷ୍ଠାରେ ଡାକ୍ତର ହୋଇଥିବା ସଜଳେନ୍ଦୁର ଭାବାନ୍ତର ତଥା ମାଳ ଅପା ପ୍ରତି ପୁତ୍ରୋପମ ଶ୍ରଦ୍ଧା ଅର୍ପଣ ଗଳ୍ପଟିକୁ ପ୍ରାଣବନ୍ତ କରିଦେଇଛି । ମାଳଅପା ତ୍ୟାଗଦୀପ୍ତ ମାତୃସୁଲଭ ବ୍ୟକ୍ତିତ୍ୱରେ ହୋଇଉଠିଛି ଦୀପ୍ତିମନ୍ତ । ଏହି ଗଳ୍ପଟି ମାଳ ଅପା ପରି ଜଣେ ନାରୀର ତ୍ୟାଗ, ପିତୃହୀନ ହୋଇ ଯାଇଥିବା ପୁତ୍ର କନ୍ୟାଙ୍କୁ ମଣିଷ କରିବାର ସଂକଳ୍ପ, ନିଜର ପ୍ରେମକୁ ଭିତରେ ଚାପି ଦେଇ ଅନ୍ୟର ମଙ୍ଗଳ ପାଇଁ ନିଜକୁ ଉତ୍ସର୍ଗ କରିଦେବାର ବ୍ୟକ୍ତିତ୍ୱ ବାସ୍ତବିକ ତାକୁ ଏକ ଶ୍ୱେତ ପବିତ୍ର ତମାଳରେ ପରିଣତ କରିଦେଇଛି । ଏହି ଫୁଲକୁ ପ୍ରତୀକ ଭାବରେ ନେଇ ତାହାରି ଭିତରେ ରାଧା ଓ କୃଷ୍ଣଙ୍କ ମିଥ୍‌କୁ ମିଶାଇ ଦେଇ ଶାଶ୍ୱତ ପ୍ରେମର ଦୀପ୍ତିକୁ ଯେପରି ପ୍ରକଟ କରି ଦେଇଛନ୍ତି ତାହା ହୃଦୟସ୍ପର୍ଶୀ ହୋଇଛି । ମଡ଼ାଚଣ୍ଡିଆର ସମ୍ବେଦନଶୀଳ ଚରିତ୍ର ଭିତରେ ସଚ୍ଚିଦାନନ୍ଦ ରାଉତରାୟଙ୍କ 'ମଶାଣିର ଫୁଲ' ଗଳ୍ପର ମଡ଼ାଚଣ୍ଡିଆ ଜଗୁଡିଆଡ଼ି ସ୍ୱତଃ ମନ ଭିତରକୁ ଆସିଯାଏ ।

'ଅମୃତକନ୍ୟା' ଗଳ୍ପଟି ପୁରୁଷ ସମାଜର ନାରୀ ପ୍ରତି ରୂଢ଼ିବାଦୀ ଚିନ୍ତାଧାରା ପ୍ରତି ଏକ ତୀବ୍ର କଟାକ୍ଷ । ଯୁବତୀ କନ୍ୟାର ମନ ଓ ହୃଦୟକୁ ବୁଝିବାର ଶକ୍ତି ନ ଥାଏ ସେମାନଙ୍କର । ଅଥଚ ଯୁବତୀଟିଏ ବିବାହ କରିଗଲା ପରେ ଶାଶୁଘରେ କିପରି ନିର୍ଯାତିତ ହୁଏ ଓ ଶେଷରେ ଫେରିଆସେ ନିଜ ଘରକୁ ତାହାର କରୁଣ ଚିତ୍ର ଏହି ଗଳ୍ପରେ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ନାରୀକୁ ପାଠ ପଢ଼ି ନିଜ ଗୋଡ଼ରେ ଆତ୍ମନିର୍ଭରଶୀଳ ହୋଇ ଛିଡ଼ା ହେବାକୁ ଦିଆଯାଇଛି ପ୍ରେରଣା । ଏହି ଗଳ୍ପରେ ମା' ରମାଦେବୀଙ୍କର ନାରୀମାନଙ୍କୁ ଆହ୍ୱାନ, କୁସଂସ୍କାର ବିରୋଧରେ ଅଣ୍ଟାଭିଡ଼ି ସଂଗ୍ରାମ କରିବାର ଶକ୍ତି ସଂଚୟ, ପଶ୍ଚିମୀ ସଭ୍ୟତା ପ୍ରତି ମୋହଗ୍ରସ୍ତ ହେଉଥିବା ନାରୀ ଓ ପୁରୁଷଙ୍କ ପ୍ରତି ଚେତାବନୀ, ନାରୀ ମୁକ୍ତି ପାଇଁ ବଡ଼ ବଡ଼ ଭାଷଣ ଦେଉଥିବା ନେତା ଓ ବୁଦ୍ଧିଜୀବୀଙ୍କ

ପ୍ରତି ବ୍ୟଙ୍ଗ, କର୍ମଜୀବୀ ଓ ଅସହାୟା ନାରୀମାନଙ୍କ ପାଇଁ ଗଢ଼ି ଉଠିଥିବା ଆଶ୍ରୟ ଅନୁଷ୍ଠାନର ମହତ୍ତ୍ୱକୁ ଲେଖିକା ଯେପରି ବର୍ଣ୍ଣନା କରିଛନ୍ତି ତାହା ଯେମିତି ଭାବଦ୍ୟୋତକ ହୋଇଛି ସେହିପରି ଏହି ଗଳ୍ପର ଶୁଭ୍ରା, ଅଭ୍ରା, ବେଦମତୀ ପ୍ରମୁଖ ନାରୀ ଚରିତ୍ର ହୋଇ ଉଠିଛନ୍ତି ବେଶ୍ ପ୍ରଭାବଶାଳୀ । ଏକ ଆଦର୍ଶ ସମାଜ ଗଠନ ଓ ସେଥିରେ ନାରୀର ସ୍ୱାଭିମାନ ସହିତ ଆଦର୍ଶ ପରିବାର ନିର୍ମାଣ ଏହି ଗଳ୍ପରେ ମାର୍ମିକ ହୋଇଉଠିଛି । 'ବେଦମତୀ ବୋହୂ' ଗଳ୍ପରେ ଉତ୍ସର୍ଗୀକୃତା ଭଲ ବୋହୂର ସ୍ୱଭାବ ଯେପରି ବ୍ୟଞ୍ଜିତ, ତାହା ସ୍ୱୟଂ ଲେଖିକାଙ୍କ ବୋହୂପଣିଆକୁ ସୂଚାଇ ଦିଏ । 'ନୀଡ଼' ଗଳ୍ପରେ ମାନବେତର ଚରିତ୍ରଙ୍କ ପ୍ରତି ପ୍ରକାଶ ପାଇଛି ଗଭୀର ମମତ୍ୱବୋଧ । ଏହି ଗଳ୍ପରେ ପକ୍ଷୀ ଓ କୁକୁର ପରି ଚରିତ୍ର, ଯାହାଙ୍କର ନିଜର କିଛି ଘର ନ ଥାଏ, କିଛି ସମୟ ପାଇଁ ଅନ୍ୟ କାହାର ଘରେ ଆଶ୍ରୟ ନିଅନ୍ତି, ଛୁଆ ଜନ୍ମ ଦିଅନ୍ତି, ପୁଣି ଚାଲି ଯାଆନ୍ତି, ସେହିମାନେ ଗୁରୁତ୍ୱ ଲାଭ କରିଛନ୍ତି ଓ ପୁଅ ଝିଅ ସ୍ୱାମୀ ସମସ୍ତେ ବିଦେଶରେ ରହୁଥିଲା ବେଳେ ଘରେ ଏକାକିନୀ ରହୁଥିବା ନାରୀ ଅସୀମା ଆପଣା ଅନ୍ତରର ମମତାକୁ ଅଜାଡ଼ି ଦେଇଛି ପକ୍ଷୀ ଓ କୁକୁର ପ୍ରତି । ସେମାନେ ଘରେ ଆବର୍ଜନା ସୃଷ୍ଟି କଲେ ମଧ୍ୟ ମାତୃହୃଦୟ ମମତାରେ ପୂର୍ଣ୍ଣ ହୋଇଉଠିଛି । ଶୂନ୍ୟ ନୀଡ଼ ଆଉ ତାକୁ ଶୂନ୍ୟ ମନେ ହୋଇନାହିଁ । ଏପରିକି କାମବାଲୀ ସ୍ତ୍ରୀଲୋକ ସୁମତି ପ୍ରତି ମଧ୍ୟ ତା'ର ମମତା ସୃଷ୍ଟି ହୋଇଛି, କାରଣ ତା' ପାଖରେ ତା'ର ଝିଅ ଓ ଅନ୍ୟମାନେ ଅଛନ୍ତି । ତା' ନୀଡ଼ ଶୂନ୍ୟ ନୁହେଁ । ଏହି ଗଳ୍ପଟି ଏକ ତିର୍ଯ୍ୟକ୍ ବ୍ୟଙ୍ଗ ଆଧୁନିକ ବସ୍ତୁବାଦୀ ମଣିଷମାନଙ୍କ ପ୍ରତି, ଯେଉଁମାନେ ମା'କୁ ଘରେ ଏକୁଟିଆ ଛାଡ଼ି ବିଦେଶରେ ରହିଯାଆନ୍ତି, ଘରକୁ ଫେରନ୍ତି ନାହିଁ । ଏକାକିନୀ ଘରେ ରହୁଥିବା ନାରୀର ଶୂନ୍ୟତାବୋଧ ଭିତରେ ମାନବେତର ଚରିତ୍ରମାନଙ୍କର ଆଗମନ ଓ ପ୍ରତ୍ୟାଗମନ ତାଙ୍କ ଭିତରେ ଭରିଦେଇଛି ଅବଶିଷ୍ଟ ଜୀବନ ବିତେଇବା ପାଇଁ ପ୍ରେରଣା ।

'ହଜିଲା ଅତୀତର ଛାଇ' ଗଳ୍ପରେ ନାରୀର ଦୁଃଖ ଓ ଅସହାୟତା ଭିତରେ ତା'ର ତ୍ୟାଗ ଓ ପ୍ରେମର ମହତ୍ତ୍ୱ ଯେପରି ଫୁଟି ଉଠିଛି 'ଅନୁଭବର ଫ୍ରେମ୍‌ରେ ବୟସ ଅଠାବନ' ଗଳ୍ପରେ ସ୍ୱାଧୀନ ଭାରତରେ ଚାକିରିଜୀବୀର ସଙ୍କଟ ଓ ସଂଘର୍ଷ, ଅବସର ଗ୍ରହଣ ସମୟରେ ଅସହାୟତା, ଶୂନ୍ୟତା ଅନୁଭବ ବେଶ୍ ମାର୍ମିକ ହୋଇଉଠିଛି । 'ଭାଇଭାଗ ଓ ପାରିବାରିକ ସମ୍ପର୍କ' ଗଳ୍ପରେ ଲେଖିକା ଆଜିର ସମାଜରେ ଯୌଥ ପରିବାର ଭାଙ୍ଗି ପଡୁଥିବାର କାରଣ, ଏକକ ପରିବାର ପ୍ରତି ମୋହଗ୍ରସ୍ତତା, ଭାଇ ଭାଇ ମଧ୍ୟରେ ତିକ୍ତତା ଓ ଭିନ୍ନେ ହୋଇଯିବାର ମନୋଭାବ ପ୍ରତି ତିର୍ଯ୍ୟକ୍ ଦୃଷ୍ଟିପାତ କରିଛନ୍ତି । 'ସ୍ୱାମୀ-ଯୋଗ୍ୟ, ଅଯୋଗ୍ୟ' ଗଳ୍ପରେ ଲେଖିକା ଦର୍ଶାଇ ଦେଇଚନ୍ତି ସ୍ୱାମୀ ଯୋଗ୍ୟ ଓ ସମର୍ଥ ହେଲେ ପରିବାର ଠିକ୍ ରହେ । ସ୍ୱାମୀ ଅଯୋଗ୍ୟ ହେଲେ ପରିବାର ହୋଇଯାଏ ନରକ । ମାଇପବୋଲକରା ସ୍ୱାମୀ ନିଜର ନିଜତ୍ୱ ହରାଇଦିଏ । ଚୋରି, ଠକେଇ, ଲାଂଚ ମିଛ ଆଦି ଦୁର୍ନୀତି କରୁଥିବା ସ୍ୱାମୀ ମଧ୍ୟ ଅଯୋଗ୍ୟ ସ୍ୱାମୀ । ଏହି ଗଳ୍ପଟି ଠିକ୍ ଗଳ୍ପ ନୁହେଁ; ଲେଖିକାଙ୍କ ବିଚାର-ବିମର୍ଶର ଏକ ପ୍ରବନ୍ଧାୟିତ ରୂପ । 'ନୀରବତା ବି

ଏକ ଭାଷା' ଗଳ୍ପ ମଧ୍ୟ ସେହିପରି ପ୍ରବନ୍ଧାୟିତ ଶୈଳୀରେ ରଚିତ । ନିରବତା ସମ୍ପର୍କରେ ଏକ ବୌଦ୍ଧିକ ବିଶ୍ଳେଷଣ । 'ସୁଲକ୍ଷଣାଙ୍କ ଭାଲେଣ୍ଟାଇନ୍ ଡେ' ଗଳ୍ପଟି ବିଦେଶାଗତ ଭାଲେଣ୍ଟାଇନ୍ ଡେ ପାଳନ ପ୍ରତି ଏକ ତିର୍ଯ୍ୟକ୍ ବ୍ୟଙ୍ଗ । ପ୍ରେମ ନୁହେଁ; ବରଂ ଦୈହିକ ଉପଭୋଗ ପ୍ରତି ଏହା କିପରି ମୁହାଁଇ ଯାଉଛି ତାହା ଏଥିରେ ବ୍ୟଞ୍ଜିତ । 'ଦିଗନ୍ତ ଓ ବିଷାଦଯୋଗ' ଗଳ୍ପରେ ଆଜିର ବସ୍ତୁବାଦୀ ଯୁଗରେ ନାରୀ ଓ ପୁରୁଷର ବିଚିତ୍ର ସମ୍ପର୍କ, ଯାହାକୁ ବୁଝିହୁଏ ନା ବା ବୁଝାଇ ହୁଏ ନା, ତାହାରି ଦ୍ୱନ୍ଦ୍ୱ ଭିତରେ ଅସହାୟ ପାଲଟି ଯାଉଥିବା ମଣିଷର ଶୂନ୍ୟତାବୋଧ ଯେପରି ଜୀବନ୍ତ ହୋଇଉଠିଛି ସେହିପରି 'ସମୟର ଛବି' ଗଳ୍ପରେ ସ୍ୱାଧୀନତାର ତେଷଠି ବର୍ଷ ଅର୍ଥାତ୍ ୨୦୧୦ ମସିହା ବେଳକୁ ଯେଉଁ ସଂରକ୍ଷଣ ବ୍ୟବସ୍ଥା ଭାରତ ବର୍ଷରେ ଯୁବକମାନଙ୍କୁ ବିକ୍ଷୁବ୍ଧ ଓ ବିଦ୍ରୋହୀ କରିଛି ତାହାର ଏକ ଯୁଗାନ୍ତକାରୀ ଚେତନାର ରୂପ । 'ଭୋକ ଭୂଗୋଳ' ଗଳ୍ପ ଅଭାବ ଅନଟନଗ୍ରସ୍ତ ମାନବାତ୍ମାର ଏକ କାରୁଣ୍ୟମୟ ରୂପଚିତ୍ର । 'ମେଘ କନ୍ୟା' ଗଳ୍ପ ମେଘମାଳା ଚରିତ୍ର ମଧ୍ୟ ଦେଇ ନାରୀର ସ୍ୱାଭିମାନୋଦୀପ୍ତ ବ୍ୟକ୍ତିତ୍ୱର ଏକ ଚମତ୍କାର ଆଲେଖ୍ୟ ।

ବାସ୍ତବିକ ଡକ୍ଟର ସ୍ୱରାଜଲକ୍ଷ୍ମୀ ମିଶ୍ରଙ୍କର 'ଅନ୍ଧାରର ମୁହଁ' ନାରୀ ଜୀବନର ବ୍ୟଥା ଓ ବ୍ୟର୍ଥତାର ଏକ ରୂପ ଚିତ୍ର ନୁହେଁ, ନାରୀର ସ୍ୱାଭିମାନ, ତ୍ୟାଗ, ସଂକଳ୍ପ ତଥା ପରିବାରକୁ ଓ ସମାଜକୁ ଠିକଣା ମାର୍ଗରେ ଆଗେଇ ନେବା ପାଇଁ ଏକ ଆହ୍ୱାନ । ଗାଳ୍ପିକା ନାରୀକୁ କେତେ ବାଗରେ, କେତେ ଢଙ୍ଗରେ ଅନୁଭବିଛନ୍ତି । କେତେବେଳେ ସେ କନ୍ୟାଟିଏ, ବାପା ମା ଓ ସମାଜ ହାତରେ ଖେଳନାଟିଏ । କେତେବେଳେ ସେ ବିଦ୍ରୋହିଣୀ ଓ ଅନ୍ତର୍ନିହିତ ନାରୀତ୍ୱର ଦୀପ୍ତିରେ ଦୀପ୍ତିମୟୀ । କେତେବେଳେ ସେ ଶୂନ୍ୟତା ଭିତରେ ଅସହାୟା ତ କେତେବେଳେ ସମାଜ ସଂସ୍କାର ପାଇଁ ଆଗଭରା । କେତେବେଳେ ଦିବ୍ୟ ପ୍ରେମରେ ଭାସ୍ୱର ତ କେତେବେଳେ ପରିବାରକୁ ମଧୁମୟ କରିବାରେ ଉତ୍ସର୍ଗୀକୃତା । ନାରୀ, ପୁରୁଷ ନିର୍ବିଶେଷରେ ଲେଖିକା ଦର୍ଶାଇ ଦେଇଛନ୍ତି ଅନ୍ଧାର ଭିତରେ ତଥାପି ମୁହଁଟିଏ ଫୁଟି ଉଠୁଥାଏ, ସବୁ ରହସ୍ୟକୁ ଭେଦ କରି ସତ୍ୟର ଜ୍ୟୋତିଟିଏ ପ୍ରକାଶ ପାଉଥାଏ, ଯାହା ମଣିଷକୁ ବାଟ ଦେଖାଏ ଜୀବନକୁ ଠିକଣା ମାର୍ଗରେ ନେବା ପାଇଁ । ତେଣୁ 'ଅନ୍ଧାରର ମୁହଁ' ଡକ୍ଟର ମିଶ୍ରଙ୍କର ଅନ୍ୟାନ୍ୟ ଅନେକ ଗଳ୍ପ ପୁସ୍ତକ ପରି ପାଠକୀୟ ଶ୍ରଦ୍ଧା ଅର୍ଜନ କରିବ ବୋଲି ମୋର ଦୃଢ଼ ବିଶ୍ୱାସ

ଅବସରପ୍ରାପ୍ତ ପ୍ରଫେସର
ବିଶ୍ୱଭାରତୀ, ଶାନ୍ତିନିକେତନ

# ସୂଚିପତ୍ର


ଅନ୍ଧାରର ମୁହଁ ॥ ୧୧

ତମାଳ ॥ ୨୪

ଅମୃତସ୍ୟ କନ୍ୟା ॥ ୩୬

ବେଦମତୀର ବୋହୂ ॥ ୫୯

ନୀଡ଼ ॥ ୬୭

ହଜିଲା ଅତୀତର ଛାଇ ॥ ୮୧

ଅନୁଭବର ଫ୍ରେମ୍‌ରେ ବୟସ 'ଅଠାବନ' ॥ ୯୨

ସୁଲକ୍ଷଣାଙ୍କ ଭାଲେଣ୍ଟାଇନ୍ ଡ଼େ ॥ ୧୦୭

ଦିଗନ୍ତ ଏବଂ ବିଷାଦଯୋଗ ॥ ୧୨୩

ସମୟର ଛବି ॥ ୧୪୩

ଭୋକ ଭୂଗୋଳ ॥ ୧୬୬

ମେଘକନ୍ୟା ॥ ୧୮୨




# ଅନ୍ଧାରର ମୁହଁ

"ଏବେ ସେଇ ଲାଇଟରକୁ ତମେ ଫୋପାଡ଼ିବ, ନା ମୋତେ ହିଁ ସେଇ କାମଟା କରିବାକୁ ପଡ଼ିବ" ବିରକ୍ତିସୂଚକ କଣ୍ଠସ୍ୱର ସୁଖମୟଙ୍କର । "ସକାଳୁ ସକାଳୁ ଲଗେଇଛି ଗୋଟାଏ ଖଟରଖାଟର । ବଡ଼ ଇରିଟେଟିଂ ।"

ରୋଷେଇ ଘରେ ଟିକିଏ ଗରମପାଣି ପାଇଁ ଗ୍ୟାସ୍‌ଷ୍ଟୋଭ୍ ଜଳେଇବାକୁ ଯାଇ ଲାଇଟର୍ ମାରୁମାରୁ କାନରେ ପଡ଼ିଲା ସୁଖମୟଙ୍କର ଚିଡ଼୍‌ଚିଡ଼ା ଟିପ୍‌ପଣୀ ।

ହସି ପକେଇଲା କଲ୍ୟାଣୀ । ମନକୁ ମନ କହିଲା, ସକାଳୁ ସକାଳୁ ମୁଡ୍ ଅଫ୍ ହୋଇଗଲାଣି ବାବୁଙ୍କର । କ'ଣ ହେଇଛି କେଜାଣି, ଆଜିକାଲି ଟିକିଏ ଟିକିଏ କଥାରେ ଏମିତି ବିରକ୍ତି ହେଇପଡୁଛନ୍ତି । ତେବେ ତାକୁ ଆଉ କଷ୍ଟ ଲାଗୁନି ସୁଖମୟଙ୍କର ଏମିତିକା କଟୁକ୍ତି । ହସି ଦେଉଛି । ହସିବା ଅଭ୍ୟାସ କରିଛି କହିବାକୁ ଗଲେ । ପ୍ରଥମେ ପ୍ରଥମେ ଖୁବ୍ ଅପମାନିତ ଲାଗୁଥିଲା । ଏଥିପାଇଁ କାରଣ ବି ଥିଲା । ସୁଖମୟ ଖୁବ୍ ଶାନ୍ତ ନରମ ସ୍ୱଭାବର । ନାଁକୁ ଋହିଁ ଗୁଣବି । ନିଜ ପାଇଁ କେବଳ ନୁହେଁ, ସମସ୍ତଙ୍କ ପାଇଁ ସେ ସୁଖମୟ । କାହାକୁ କେବେ ଉଚ୍ଚ ସ୍ୱରରେ ପୁରୁଷାଳି କଣ୍ଠରେ କଥା କହିବା ସେ ଶୁଣିନି । ଆଶ୍ଚର୍ଯ୍ୟ ।

ଆଉ ସେ ନିଜେ ବି ତ ସ୍ନେହ ଆଦରରେ ବଢ଼ି ଆସିଥିଲା ବାପ ଘରେ । କୌଣସି କଥାରେ କେହି ତାକୁ ଆଖି ଉଠେଇ ଋହିଁନି । ଶୃଙ୍ଖଳିତ ନିଜ ଭିତରେ । ସମସ୍ତଙ୍କର ସ୍ନେହର ପିତୁଳା । ସବୁ ଭାଇଭଉଣୀଙ୍କଠୁ ଅଲଗା । ଥରକୁ ଦି'ଥର କହିବା ଦରକାର ପଡ଼େନି । କହିବାକୁ ଗଲେ, ଜୀବନ ସଙ୍ଗୀତର ସ୍ୱର, ତାଳ, ଛନ୍ଦ, ଲୟ ତା' ପାଇଁ ଗୋଟିଏ ସୁଲଳିତ ସ୍କେଲ ।

ଅଥଚ ଘର ଛାଡ଼ି ଆସିଲା ପରେ, ସେଇ ସ୍ୱରଗ୍ରାମର ଉଚ୍ଚାନିଚା ତାଳଛନ୍ଦ ସତରେ ତାକୁ ବିସ୍ମୟରେ ପକେଇ ଦେଇଥିଲା । ଆଗରୁ କେବେ ଏପ୍ରକାର ଧ୍ୱନି ସେ ଶୁଣି ନ ଥିଲା ତ । ଏବଂ ସେଇ ଥିଲା ସଂସାର ସଙ୍ଗୀତ ସହିତ ତା'ର ପ୍ରଥମ ପରିଚୟ । ସଜଡ଼ା ସଙ୍ଗୀତ ବି ଏମିତି ବେତାଳିଆ ଧରେ କେବେ କେମିତି !!

ତେବେ ସୁଖମୟଙ୍କ ସହିତ ତା'ର ଜୀବନ ସଙ୍ଗୀତ ସବୁବେଳେ ସୁଖକର, ଛାନ୍ଦସିକ ଏବଂ ଶ୍ରୁତିମଧୁର ଏଥିରେ ଦ୍ୱିରୁକ୍ତି ନାହିଁ । ସେଥିପାଇଁ ସେ ନିଜକୁ ଭାଗ୍ୟବତୀ ମନେ କରେ । ଅନ୍ୟମାନେ ବି ଈର୍ଷା କରନ୍ତି । ତା'ର ଅଖଣ୍ଡ ଆଶ୍ୱାସନା ଯେ, ଅଳସୁଆ ମଣିଷଟାର ଅନ୍ୟର ମନକୁ କିଣିନେଲା ଭଳି ଅନେକ ଭଲ ଗୁଣ ଅଛି । ସେଥିପାଇଁ ଘରେ ବାହାରେ ତାଙ୍କର ଅନେକ ପ୍ରଶସ୍ତି, ଗର୍ବ ଲାଗେ । ଅଥଚ ଏଭଳି ମାର୍ଜିତ ରୁଚି ସଂପନ୍ନ ମଣିଷଙ୍କର ମନୋଭାବରେ ଏଭଳି ଅପ୍ରତ୍ୟାଶିତ ପରିବର୍ତ୍ତନ ଘଟିବାର କାରଣ କ'ଣ ହେଇପାରେ । ସାମାନ୍ୟ କଥାରେ ଅଧୈର୍ଯ୍ୟ ଏବଂ ଅସ୍ଥିର । ଭାରି ରିଆକ୍ଟିଭ୍ । ଜମା ତାଙ୍କ ସ୍ୱଭାବ ଆଉ ଚେହେରାକୁ ଖାପ ଖାଉନି । ଦିନେ କେବେ ପଦୁଟିଏ ଟାଣ କଥା ଶୁଣି ନଥିବା କଲ୍ୟାଣୀକୁ କେମିତି ଆଘାତ ନ ଲାଗିବ ଯେ ! ଲାଗେ । ସ୍ତବ୍ଧ ହୋଇଯାଏ ନିଜ ଭିତରେ । ହିମ ଶୀତଳ ମଣିଷଟା । କ'ଣ ହେଲା ଯେ ଏମିତି । ତା' ଜାଣତରେ କିଛି ତ ଭୁଲ୍‌ଭଟକା କରିନି, ଘଟନା ବି ସେମିତି କିଛି ଘଟିନି । ଅଥଚ ଏମିତି ଅଦିନିଆ ମେଘ ଭଳି କାହିଁକି ବର୍ଷି ଯାଉଛନ୍ତି !

ସେ ତ ସେଇ ମଣିଷ, ସେଇ କଲ୍ୟାଣୀ ସବୁଦିନର । କିଛି ନୂଆ ନୁହେଁ । ଦିନରାତି ସମସ୍ତଙ୍କର ସୁଖ ସୁବିଧା ପାଇଁ କୌଣସି ଅଭିମାନ ନ ରଖି ଆପ୍ରାଣ ପ୍ରୟାସ କରି ଚାଲିଛି । ସୁଖମୟଙ୍କର ଯେମିତି କୌଣସି ଅସୁବିଧା ନହୁଏ । କେବଳ ସୁଖମୟ କାହିଁକି, ଏଇ ପରିବାରକୁ ସନ୍ତୁଷ୍ଟ ରଖିବା ପାଇଁ କାୟମନୋବାକ୍ୟରେ ନିଜକୁ ଉତ୍ସର୍ଗ କରିଦେଇଛି । ସେମାନଙ୍କ ଚାଲିରେ ଚାଲି ମିଶେଇଛି, କଥା କହିଛି, ଖାଉଛି, ପିନ୍ଧିଛି, କାନ୍ଦିଛି - ଏମିତି କି ନିଜ ଇଚ୍ଛା ଅନିଚ୍ଛା, ରୁଚି ଅରୁଚି ସବୁ ଭୁଲିଯାଉଛି । ଏଥିରେ ବି ତା'ର କୌଣସି ଛଳନା ନାହିଁ । ତଥାପି ବି କ'ଣ ତା'ର ଭୁଲ୍ ରହିଯାଉଛି ?

ଦୁଃଖ ଲାଗେ ଭାବିଲେ । ଜୀବନଯାତ୍ରାକୁ ସୁଧାର ସହଜ କରିବା ପାଇଁ କେବଳ ସେ ହିଁ ନିଜ ଭୁଲ୍ ଖୋଜି ଚାଲିଥିବ ଅହରହ । ଭୁଲ ଠିକ୍ ଜାଣି ନ ପାରିଲା ଭଳି ଅଜ୍ଞ, ଅବିବେକୀ ତ ସେ ନୁହେଁ ଅନ୍ତତଃ । ତଥାପି ସେ ଭାବେ । ଦରାଣ୍ଡି ହୁଏ ସବୁ ଦିଗରୁ ।
ତା'ର ସଂସ୍କାରଶୀଳ ସଂଭ୍ରାନ୍ତ ମନ ଅବଶ୍ୟ ପ୍ରତିବାଦ କରିପାରେନା, କି କରିବାକୁ ଚାହେଁନା । ଦୋଷ ଦେଖେଇ ପାରେନା, ସେଥିପାଇଁ ତା' ଭିତରର ସ୍ୱାଭିମାନୀ ନାରୀଟିକୁ ସେ ଯଥାସମ୍ଭବ ଶାସନ କରି ରଖିଛି, ବାପା ବୋଉଙ୍କ କହିବା ମୁତାବକ । ତା' ସତ୍ତ୍ୱେ କଥାର ଅଙ୍କୁଶ ମନପ୍ରାଣକୁ ବେଳେବେଳେ ଖୁବ୍ ଯନ୍ତ୍ରଣା ଦେଉଛି । ଯନ୍ତ୍ରଣା ଦେଉଛି ବୋଲି ହିଁ ତ ସେ ଏତେ ଭାବି ହେଉଚି, କାରଣ ଖୋଜୁଛି, କ'ଣ ଏମିତି ହେଲା, କୋଉଠି ଆଘାତ ଲାଗିଛି କି ଆଉ । ନହେଲେ ଏଡ଼େ ସୁନ୍ଦର ଦରଦି ମଣିଷ ଏମିତି କଠୋର ବ୍ୟବହାର କରୁଛନ୍ତି କାହିଁକି ।

କାରଣ ଖୋଜୁଖୋଜୁ ଅଚିହ୍ନା ଦୁଃଖରେ ଆଉଟୁପାଉଟୁ ହୁଏ । ଅନ୍ଧାରରେ ମୁହଁ ଦିଶେନା । ଭାବମୂର୍ତ୍ତିରେ ଦାଗ ଲାଗିଯିବା ଭୟରେ ଖୋଲାଖୋଲି କିଛି ପଚାରି ପାରେନା । ପଚାରିଲେ ବି କ'ଣ କିଛି କହିବେ କି ସୁଖମୟ । ନା, ଆହୁରି ଗୁମ୍ ହୋଇଯିବେ । ମେଘ ଜମିଯିବ, ଯେମିତି ସମୁଦ୍ରେ ପାଣିକୁ ତା' ପେଟରେ ଧରିଛି ।

ଭୟଙ୍କର ଆତ୍ମସମ୍ମାନବୋଧ । ସାହସ ହୁଏନା ପଚାରିବାକୁ ଯେ କୁହ, କୋଉଠି ଆଘାତ ଲାଗିଛି ତୁମର- ଦୁହେଁ ମିଶି ଭାଗ କରିନେବା । ନା, ପଚାରି ପାରେନା । ଖାଲି ଭାବେ । ଭାବନା ଭିତରେ କେବେ ହାତୀଟା ପିମ୍ପୁଡ଼ି ଭଳି ଦିଶେ ତ, ପିମ୍ପୁଡ଼ିଟା କେବେ ହାତୀ ଭଳି । ନହେଲେ ବାଟ ପାଉ ନ ଥିବା ଅଗ୍ନାଗ୍ନି ବନସ୍ତ । ବ୍ୟସ୍ତ ହେଇପଡ଼େ ନିଜ ଭିତରେ । ପ୍ରଶ୍ନ ଉଠେ ମନରେ, ନାରୀ ଜାତିଟା ପାଇଁ ଈଶ୍ୱର ଏତେ କଟକଣା ଖଞ୍ଜିଛନ୍ତି କାହିଁକି ଯେ ? ସମସ୍ତଙ୍କ ପାଇଁ ସବୁକଥା ଭାବିବ । ଘରର ମାନସମ୍ମାନ, ବଂଶମର୍ଯ୍ୟାଦା କଥା ଚିନ୍ତା କରିବ, ସୁଖସୁବିଧା ଦେଖିବ ଏବଂ ଶେଷରେ ସବୁଥିପାଇଁ ନିଜେ ହେବ ଉତ୍ତରଦାୟୀ - କେହି ନଥିବେ ପାଖରେ, ସବୁ ଏକୁଟିଆ ସମ୍ଭାଳିବ । ଘା'ର ଯନ୍ତ୍ରଣା, ଲୁହର ତାତି, ଝଡ଼ର ପ୍ରକୋପ ସବୁ ତା'ର ଏକାନ୍ତ ଭାବେ ନିଜର । ନିଜ ଭିତରେ ଏମିତି ଯୁଦ୍ଧ କରୁକରୁ, କେତେବେଳେ ଭୁଲିଯାଏ ଘା'ର ଦରଜ । ସଂସାର କରିବା ନିଶାରେ, ଉଲ୍ଲାସରେ । ଯେମିତି କିଛି ଘଟିନି କି ଘଟି ନଥିଲା - ପୁଣି କେବେ ଗୋଟାଏ କିଛି ଖେଞ୍ଚି ହେଲା ପର୍ଯ୍ୟନ୍ତ ।

ଅବଶ୍ୟ ଏସବୁ ତା'ର ନୂଆ ସଂସାର ଭିତରେ ପ୍ରବେଶ କଲାବେଳର କଥା । ଯେତେବେଳେ ବିଶେଷ କୌଣସି ଚାପ ନ ଥିଲା । ଘଟନା ଦୁର୍ଘଟଣା ବି ସେମିତି କିଛି ଘଟୁ ନଥିଲା । ମୁଣ୍ଡ ଉପରକୁ ବାପା ବୋଉ, ଶାଶୂଶ୍ୱଶୁର ଥିଲେ । ହେଲେ ସମୟର ତ କିଛି ଗୋଟାଏ ଦାବି ଅଛି । ସମୟର ହାତ ଧରି ସଂସାର ଜଞ୍ଜାଳ ଭିତରକୁ ଅନୁପ୍ରବେଶ କରୁ କରୁ ଅକ୍ଟୋପାସ୍ ଭଳି ଛନ୍ଦି ପକେଇଲା ସେଇ ପ୍ରିୟ ସଂସାର । ପ୍ରକାର ପ୍ରକାରର ସଙ୍କଟକୁ ସାମ୍ନା କରିବାକୁ ହେଲା ।

ସେତିକିବେଳେ ହିଁ କଲ୍ୟାଣୀ ନିଜେ ଆରମ୍ଭ କରିଥିଲା ଏଇ ଖୋଜ । ପରିସ୍ଥିତିର ଚାପରେ ମଣିଷ ବଦଳେନା, ମଣିଷର ମନ ବଦଳେ ବୋଲି ପରିସ୍ଥିତି ତାକୁ ଅନୁସରଣ କରେ ? କିଏ କାହାର ନିୟନ୍ତକ ?

ବୋଉ ମନେପଡ଼େ । ବୋଉ ତ ଆଉ ନାହିଁ । ଥିଲେ ପଚାରିଥା'ନ୍ତା - କାହିଁକି ସେ ଆଗରୁ ଏସବୁ ସ୍ଥିତି ସଂପର୍କରେ ସତର୍କ ନ କଲା । ଖାଲି ସ୍ୱପ୍ନ ଦେଖେଇଲା, ସଂସାରଟା ଖୁବ୍ ସୁନ୍ଦର । ମନୋଲୋଭା । କେହି ମନେ ପଡ଼ିବେନି ଆଉ- ଏମିତିକି ବୋଉ ବି । ସବୁ ମିଛ । ବଡ଼ ବିଷମ ଏଇ ସଂସାର । ଖାଲି ସଜାଡୁ ସଜାଡୁ ବେଳ ଗଡ଼ିଯାଏ । ଛାଡ଼ ।.

ଏଇ ଯେ, ଭିତରମୁହାଁ ମଣିଷ ସହିତ ବୋଉ ତାକୁ ଛନ୍ଦି ଦେଇଛି - ସେ ତ ଧନ୍ଦି ହେଇଗଲାଣି ତା' ମନକଥା ବୁଝୁ ବୁଝୁ । ବର୍ତ୍ତମାନ ଏସବୁ ତର୍ଜମା କରିବାକୁ ତା'ର ବେଳ

ନାହିଁ । ଗରମ ପାଣି ଟିକିଏ ନିହାତି ଦରକାର ଏବେ । ଏତିକିବେଳକୁ ଦାଉ ସାଧୁଛି ଲାଇଟର୍ । ଜଳୁନି । ହେଲେ ଦିଆସିଲିଟା ମିଳନ୍ତା । ସିଏ ବି ଦିଶିବାକୁ ନାହିଁ । ତରବର ହୋଇ ଦିଆସିଲି ଖୋଜିଲା ।

ପ୍ରାୟତଃ ଯୋଉଠି ସେ ଦିଆସିଲି ରଖିଥାଏ, ସେଇଠି ହାତ ମାରିଲା- କାହିଁ, ନାହିଁ ତ । କି ଆଶ୍ଚର୍ଯ୍ୟ ! ଏଇ ତ ଯାଇଛି ଦୀପାବଳି । ଡଜନେ ଦିଆସିଲି ଆସିଥିଲା । ଥିବା କଥା । ସରିବନି ନିଶ୍ଚୟ । ସିଗାରେଟ୍ ଖାଇବା ମଣିଷ ତ କେହି ନାହାନ୍ତି ଯେ ଦିଆସିଲି ପୋଡ଼ିବ । ଅବଶ୍ୟ ଦିଆସିଲି ଉପରେ କାହାର ଏତେ ନିର୍ଭର ନାହିଁ ଏବେ ।

ଦରକାର ବେଳେ ଲାଇଟର୍ ମାରିଦେଲେ ହିଁ କାମ ଚଳିଯାଏ । ତଥାପି ଟିକିଏ ଉହୁଙ୍କି ଦେଖିନେଲା ଥାକ ଉପର । କାଳେ ରହିଯାଇଥିବ । ନାହିଁ ।

ଇଯେ ବି କେମିର୍ତି ସମୟର ଜିଦ୍ । ଠିକଣାବେଳକୁ କିଛି ଦିଶିବନି । ତମକୁ ନେଇଁ ଠିଆ କରେଇଦେବ କାଠଗଡ଼ାରେ ପଛକେ ।

ଘରକରଣା ଜିନିଷ ସବୁ ହିଁ ଏମିତି । ଏତେ ଟିକେ ଟିକେ ଦରବ । ନହେଲେ କିନ୍ତୁ ନ ଚଳେ । ଅଥଚ ତମେ କେବେ ତାଙ୍କୁ ଗୁରୁତ୍ୱ ଦେଇ ଭାବି ନଥିବ । ଥିବ ତ, ଥାଏ ସବୁବେଳେ । କୋଉ ନାମୀଦାମୀ ଲକ୍ଷେ ଟଙ୍କାର ଜିନିଷ ଯେ, ଏତେ ଗୁରୁତ୍ୱ ଦେଇ ଭାବିବ ତା' ପାଇଁ । ହେଇ ହେଇ କି ଛୁଞ୍ଚିଟାଏ କି କଣ୍ଟାଟିଏ, ସେଫ୍‌ଟିପିନ୍‌ଟାଏ କି ଫିତା ଖଣ୍ଡେ, ଅଦା ଖଣ୍ଡେ କି ଜିରା ଚିମୁଟାଏ । ମିଳିବନି ଖୋଜିଲାବେଳକୁ । କି ଚଳିବନି ବି ନହେଲେ । ଲଣ୍ଡଭଣ୍ଡ ହୋଇଯିବ ମଣିଷ ପଛେ । ମୁହଁ ଲୁଚେଇ ଦେଇ ଜଣେଇଦେବ ନିଜ ଗୁରୁତ୍ୱ – 'ଦେଖିଲ ତ, ତମ ସଂସାରରେ ମୋ ଓଜନ କେତେ । ମୁଁ ନଥିଲେ ଯେ ନହୁଏ ।'

ସେଇମିତି ଏଇ ଦିଆସିଲି, ମହମବତି ଅଥବା ଛତା । ସେ ବ୍ୟସ୍ତ ହୋଇଗଲା । ଏଇଠି କୋଉଠି ଥିବା କଥା । ରୋଷେଇ ଘରେ ଥାକ, ଡ୍ର, ଡବା ସବୁଥିରେ ହାତ ମାରି ମାରି ଖୋଜିନେଲା ।

ଏତିକିବେଳକୁ ଲାଇଟର୍ ବି ଆଜି ହଇରାଣ କରୁଛି ତାକୁ । ପୁଣିଥରେ ଜାଳିବାକୁ ଚେଷ୍ଟା କରି ଲାଇଟର୍‌ଟାକୁ ମାରିଲା ଖଟ୍‌ଖଟ୍ କରି ଥରକୁ ଥର । ତିନି ତିନିଟା ଲାଇଟର୍ କିଣାହେଇ ଆସିଛି ଏଇ ଦି'ମାସ ଭିତରେ କୋଉଟାବି ଜଳିବାକୁ ନାହିଁ । ନା, କେହି ଜଳୁନାହାନ୍ତି । ବିରକ୍ତ ଲାଗିଲା ସ୍ୱାଭାବିକ ଢଙ୍ଗରେ ।

ଆଜିକାଲି ତ ସବୁ ଜିନିଷ ନକଲି – କେବଳ ପଇସାକୁ ଛାଡ଼ି । କିଏ ବି ପଶିଛି କାହା ଭିତରେ । ଯାହା ବିଶ୍ୱାସ କରିବା କଥା । କ'ଣ ଆଉ କରାଯାଇପାରେ । ବ୍ୟସ୍ତ ହୋଇ କଲ୍ୟାଣୀ ବାଲିକାଗଜ ଟିକେ ଧରି ସଫା କରିବା ଉଦ୍ଦେଶ୍ୟରେ ନିଷ୍ଫଳ ପ୍ରୟାସ କରି ରଗଡ଼ିଲା ଲାଇଟରକୁ । କାଳେ ଟିକିଏ ନିଆଁ ଧରିଯିବ କି !

ଗରମ ପାଣି ଟିକିଏ ହେଇଗଲେ ହର୍ଲିକ୍ସ ଗୋଳେଇ ଦିଅନ୍ତା ଗିଲାସେ ହେଲେ । ଇଚ୍ଛା

ଥିଲା, ଦି'ଖଣ୍ଡ ପରଟା ସହିତ ଆଳୁ ଦି'ଟା ଭାଜି ଦେଲେ ସାଙ୍ଗରେ ନେଇଯାଆନ୍ତେ ସୁଖମୟ । ପହଞ୍ଚିଲାବେଳକୁ ଅନେକ ଡେରି ହୋଇଯିବ । ଛୋଟିଆ ଗାଁ, ହୋଟେଲ୍ ବୋଲି ଯାହା ଗୋଟେ ଦି'ଟା ଅଛି ସିଏ ବନ୍ଦ ହୋଇଯାଇଥିବ । ସଞ୍ଜ ପର୍ଯ୍ୟନ୍ତ ଭୋକରେ ରହିବାକୁ ହେବ । ନହେଲେ ବାଟଘାଟରୁ ଜଳଖିଆ ଖାଇ ଯିବା କଥା । ସେଇଥିପାଇଁ ଯାହା ବିକଳ ହେଉଛି ସିଏ । ଏତେ ସକାଳୁ ବି ଜଳଖିଆ ଖାଇବେନି ସୁଖମୟ । ଚ'କଫିର ଅଭ୍ୟାସ ନାହିଁ । ସେଥିରେ କ'ଣ ହେଇଛି କେଜାଣି, ଆସିଲାଠୁ ମୁହଁ ଏଡ଼େକରି ରଖିଛନ୍ତି ଯେ, କିଛି କହିବାକୁ କି ପଚାରିବାକୁ ଡର ମାଡୁଛି । ଚିଡ଼ି ଉଠିବେନି ତ ଖାଲି, ତା' ଦୋଷଗୁଣ ବି ଖୋଜାପଡ଼ିବ ଏଇ ମଉକାରେ । ଯାହା ମନେପଡ଼ିଲା । ଯଦି ମନେ ନ ପଡୁଛି ତ, ସେଇ କେଇପଦ ପୁରୁଣା କଥାକୁ କଟୁକ୍ତି ବୋଲି ଛିଗୁଲେଇବେ, ଆକ୍ଷେପ କରିବେ । ତେଣିକି ତା'ର ସହନଶୀଳତା, କର୍ମକୁଶଳତା, ଉଦାରତା, ପାରଙ୍ଗମପଣ ସବୁ ଲିଭିଯିବ । ସେଇ ଜାଗାରେ ସେ ହେଇଯିବ ଲୋଭୀ, ଅହଂକାରୀ, ଗର୍ବୀ । କ୍ଷୁଦ୍ରମନା ଭଳି ଶବ୍ଦସବୁ ଆପେଆପେ ଲେଖିହେଇଯିବ । ଅଯଥା ନିଜେ ଇରିଟେଟ୍ ହେବେ; ତାକୁ ବି ଇରିଟେଟ୍ କରିବେ । ତା'ର ଇଚ୍ଛା ନଥାଇ ବି ପଦେ ଅଧେ ପାଟି ଖୋଲିବାକୁ ବାଧ୍ୟ ହେବ ଏବଂ ପରିଣତିରେ ଯାହା ହେବା କଥା ହେବ । ନା, ସେ କିଛି ପଚାରିଲାନି କି ପଚାରିବନି ।

ସେଇ ଅବାଞ୍ଛିତ ପରିସ୍ଥିତିକୁ ଏଡ଼େଇବା ପାଇଁ ପ୍ରାଣପଣେ ସେ ଚେଷ୍ଟା କରୁଥିଲା ଓ ନିଜ ମନକୁ ବୁଝେଇବାକୁ ଯାଇ ଗିଲାସେ ହର୍ଲିକ୍ସ ଗୋଳେଇ ଜବରଦସ୍ତ ହାତକୁ ବଢ଼େଇ ଦେବାକୁ ଚାହୁଁଥିଲା । ଖରାଦିନ ହେଇଥିଲେ ତ କଥା ନଥିଲା । ଶୀତ ବେଶ୍ ପଡ଼ିଛି । ଥଣ୍ଡା କିଛି ଚଳିବନି । ଅଥଚ କିଛି ଟିକେ ପାଟିରେ ନଦେଇ ଘରକୁ କେମିତି ଯିବେ ଯେ । ମନଟା ଜମା ଭଲ ଲାଗିବନି । ତା'ଛଡ଼ା ପେଟରେ ଟିକିଏ ଦାନା ପଡ଼ିଥିଲେ ମନ ସ୍ଥିର ରହିବ । ଘରେ ଥିଲେ ଅଲଗା କଥା । ଭଲମନ୍ଦ ବୁଝିବାକୁ ସେ ଅଛି ।

ମା' ଭଳି, କଲ୍ୟାଣୀ ଭଳି ଭାବିବାକୁ ଯାଇ ବ୍ୟସ୍ତ ହେଇଯାଉଥିଲା । ଖାସ୍ ସେଇଥିପାଇଁ ଦାନ୍ତରେ ବ୍ରସ୍ ମାରି ମୁହଁ ଧୋଇ ଗ୍ୟାସ୍‌ଷ୍ଟୋଭ୍ ଜଳେଇବାକୁ ଯାଇ ଏଇ ସଙ୍କଟରେ ପଡ଼ିଛି । ପୁଣି ଚେଷ୍ଟା କଲା ଲାଇଟର୍ ଜଳେଇବାକୁ ଯାଇ ଏଇ ସଙ୍କଟରେ ପଡ଼ିଛି । ପୁଣି ଚେଷ୍ଟା କଲା ଲାଇଟର୍ ଜଳେଇବାକୁ । ନା, ଏତେ ସକାଳୁ କୌଣସି ଦୋକାନ ବି ଖୋଲି ନ ଥିବ ଆଖପାଖରେ ନହେଲେ ସେ ତ ନିଜେ କିଣି ଆଣନ୍ତା ଦିଆସିଲିଟେ । ଛକ ଟିକିଏ ଦୂରରେ । ଯାଇପାରିବନି; ସୁଖମୟଙ୍କୁ ସେ କହିବନି । ଅଡ଼ିଶା ପଡ଼ିଶା ବି କାହାକୁ ମାଗିବ, ଛୋଟ କଥା ଲାଜ ମାଡ଼ିବ । ଇୟେ ରାଜଧାନୀ, ସମସ୍ତେ ମିଜାଜୀ । ହେ ପ୍ରଭୁ, ଧରିଯାଉ ନିଆଁ । ଖଟ୍ ଖଟ୍‌ର ।

ଏଥର ସୁଖମୟଙ୍କୁ ସମ୍ଭାଳେ କିଏ । ସ୍ୱର ଟିକିଏ ଉଚ୍ଚା ଶୁଭିଲା । ଶବ୍ଦଗୁଡ଼ାକୁ ଘେବେଇ ଘେବେଇ କହିଲେ – "ମୁଁ ବୋଧେ ଆଉ ଖାତିରିକୁ ଆସୁନି, ନା, ମୋ କଥା ଆସୁନି ଖାତିରିକୁ । କହିଲି ପରା ଥରେ, ଫୋପାଡ଼ ସେଇ ଲାଇଟରକୁ । ମୋତେ ବିରକ୍ତ ଲାଗିଲାଣି ସେଇ ଖଟରଖଟର ଶବ୍ଦ ।" ... କହୁ କହୁ ସିଧା ଆସି ଠିଆହେଲେ ରୋଷେଇ ଘର ଦୁଆର ମୁହଁରେ ।

ସେତେବେଳକୁ କଲ୍ୟାଣୀ ତିନିଟିଯାକ ଲାଇଟର୍‌କୁ ଥୋଇ ଚେଷ୍ଟା କରୁଥିଲା ଜଳେଇବାକୁ । ବାସ୍ ପଡ଼ିଗଲା ଆଖିରେ । ସମ୍ଭାଳେ କିଏ । ଗୋଟେ ଛୋଟକାଟର ବିସ୍ଫୋରଣ । ଲାଇଟର୍ ଉପରୁ ମୁହଁ ଉଠେଇ କଲ୍ୟାଣୀ ସୁଖମୟଙ୍କ ଆଡ଼କୁ ଋହିଁଲା । ମୁହଁ ନାଲି ଋ' ଦିଶିଲା । ତମ୍ଭାଳିଆ, ସତେ କି ନିଆଁ ଧରି ଆସୁଛି । ରାଗରେ ତମତମ ହୋଇ କହିଲେ- "ମୁଁ କ'ଣ ତମ ମାପର କି, ତମେ ହେଲ ଗୃହକର୍ତ୍ତ୍ରୀ, ସର୍ବେସର୍ବା । ମୁଁ କେବଳ ତୁମ ହୁକୁମ ମାନିବି । ମୋ କଥାର ଓଜନ କାହିଁ ? ତମେ ଯେତେବେଳେ ନିଜେ ରୋଜଗାରିଆ ." ଗରଗର ହେଲେ ସୁଖମୟ ।

ମନେମନେ ସଙ୍କଟ ଗଣିଲା କଲ୍ୟାଣୀ । ଯୋଉଥିପାଇଁ ଡରୁଥିଲା, ସେଇକଥା ହିଁ ହେଲା । ମଣିଷଟା ବଙ୍କାବାଟ ଧରିଲାଣି । କୋଉଠି କ'ଣ ବିଗିଡ଼ି ଯାଇଛି କେଜାଣି ! ଲମ୍ବା ନିଃଶ୍ୱାସ ନେଇ ଭାବିଲା, ଯାହା ବି ହେଉ, ପରିସ୍ଥିତିକୁ ସମ୍ଭାଳିବାକୁ ହେବ । ଆଉ ଟିକିଏ ପରେ ଘରୁ ବାହାରିବେ, ଅଶାନ୍ତି କରିବ କାହିଁକି । କଥାକୁ ସହଜ କରିବାକୁ ଯାଇ କହିଲା "ନାଇଁ ମ, ଦି' ତିନିଟା ଲାଇଟର୍ ଥିଲା ତ- ଦେଖୁଥିଲି କାମ ଦେଉଛି କି ନାହିଁ ।"

"ଦେଖୁଛ ବୋଲି ତ ଦେଖୁଛି... ।" ମୁହଁ ଆଉ ଆଖିରେ ବ୍ୟଞ୍ଜନା ଫୁଟେଇ କହିଲେ ସୁଖମୟ- "ମୁଁ କ'ଣ ଚିହ୍ନିନି ତମକୁ, ତମଠୁ କିଏ ଲୋଭୀ ଅଛି ଏ ସଂସାରରେ ? କେତେଜନ୍ମର ଏଇ ସବୁ ଲାଇଟର୍ ସାଇତି ରଖିଛ ?"

"ସାଇତିଛି କୋଉଠି ? ତମେ ପରା ନିଜେ, ପୁରୁଣାଟା ଖରାପ ହୋଇଗଲା ବୋଲି, ଏକାଥରେ ଦୁଇଟା କିଣି ଆଣିଥିଲ - ମନେ ନାହିଁ ?"

"ହଁ, ମୋର ହିଁ ମନେରଖିବା କଥା ନା, ... ଭୁଲ୍ ହୋଇଗଲା । ମୋ ମଗଜରେ କିଛି ନାହିଁ - ଏଣିକି ତମ କାମ ମୁଁ କରିବି, ମୋ କାମ ତମେ କରିବ, ଖୁସି ତ ?"

କଲ୍ୟାଣୀକୁ ଯଦିଓ ଆଶ୍ଚର୍ଯ୍ୟ ଲାଗିଲାନି ସୁଖମୟଙ୍କର ଏପ୍ରକାର ଅବାନ୍ତର ପ୍ରଶ୍ନ, ତଥାପି ମୁହୂର୍ତ୍ତେ ଋହିଁଲା ତାଙ୍କ ମୁହଁକୁ । ଓଲଟା ପ୍ରଶ୍ନ କରି ସାମ୍ନାର ମଣିଷକୁ ଦବେଇ ଦେବା ଆଜିକାଲି ଗୋଟାଏ ଅଭ୍ୟାସ ହେଇଯାଇଛି ସୁଖମୟଙ୍କର । ଏଇ ଗୋଟାଏ ଅଭିନବ ଉପାୟ ହାରି ନ ଯିବାର । ସେଲ୍‌ଫ୍ ଡିଫେନ୍‌ସ । ଓକିଲାତିର କ ଖ ଗ ମାଡ଼ି ନଥିବା ସୁଖମୟଙ୍କର ଏସବୁ ସ୍ଥଳେ ସଂସାରୀପଣର ଅପାରଗତା ସହଜରେ ଧରା ପଡ଼ିଯାଏ; ବିଶେଷକରି ତା' ଆଖିରେ ।

ଅବଶ୍ୟ ଆଗରୁ ସିଏ ଜାଣି ପାରୁ ନଥିଲା । କାନ୍ଦି ପକାଉଥିଲା । ଭାଙ୍ଗି ପଡୁଥିଲା । ଆଉ ସେ କାନ୍ଦିବା ଦେଖିଲେ ଓଲଟି ଆକ୍ଷେପ କରୁଥିଲେ ସୁଖମୟ- "ଭାବିଛ ଲୁହ ଗଡ଼େଇ ନିଜକୁ ଇନୋସେଣ୍ଟ ପ୍ରମାଣ କରିବ । ମୁଁ ଖାତିର କରିନି ତମ ଲୁହକୁ ।" ଭାରି କଷ୍ଟ ଲାଗୁଥିଲା ମନକୁ । ଭାବୁଥିଲା, କି ସଂସାର ଇଏ, ନିଜ ଇଚ୍ଛାରେ ହସି କାନ୍ଦି ପାରିବନି ବି । ତଥାପି ରୁଷ୍ଟ ହେଇପାରୁ ନଥିଲା ସୁଖମୟଙ୍କ ଉପରେ । ସଫେଇ ଦେବାକୁ ଯାଇ କେବଳ ଆଘାତ ହିଁ ପାଉଥିଲା । କଥା କଟାକଟି, ଅଭିମାନ ଭିତରେ ଅଗତ୍ୟା ନିଜେ ପରୋକ୍ଷରେ ଦୋଷ ସ୍ୱୀକାର

କରୁଥିଲା ଓ ଭାଗ୍ୟକୁ ହିଁ ଦାୟୀ କରୁଥିଲା । ତାକୁ କିନ୍ତୁ ଖୁସି ଲାଗୁନଥିଲା, ଏମିତି ଭାବିଲାବେଳକୁ । ବରଂ ତା' ଭିତରର ସ୍ୱାଭିମାନୀ ନାରୀଟା ଗୁମୁରି ଉଠୁଥିଲା । ଭାଗ୍ୟକୁ କାହିଁକି ସେ ଦାୟୀ କରିବ ସବୁବେଳେ ଯେ । ବରଂ କାରଣ ଖୋଜିବ । ମଝିରେ ମଝିରେ ସେ ଏମିତି ପ୍ରତିକ୍ରିୟାଶୀଳ ହୋଇଉଠିବାର କାରଣ କ'ଣ ହୋଇପାରେ ? ସୁଖମୟଙ୍କ ସ୍ୱଭାବ ତ ତାକୁ ଅଜଣା ନୁହେଁ । ଅବଶ୍ୟ ଏସବୁ ପ୍ରଥମେ ପ୍ରଥମେ ଅସ୍ୱାଭାବିକ ବ୍ୟବହାରକୁ ସାମ୍ନା କଲାବେଳେ ଭାବୁଥିଲା । ହେଲେ ଏବେ ... । ସାମ୍ନାରେ ଠିଆହେଇ ସୁଖମୟ ପ୍ରଶ୍ନ କରୁଥିଲେ – "କ'ଣ ହେଲା ଗୁମ୍ ହେଇ ରହିଲ କାହିଁକି – କିଛି ବୁଦ୍ଧି ଜୁଟୁନି ମଗଜକୁ ନା – ମୁଁ ପରା କ'ଣ ପଗେରୁଛି । ମନେମନେ ଯୋଜନା କରୁଥିବ କେମିତି ମୋତେ ଆଘାତ ଦେବ ? ସୁଖମୟ ହସିଲେ, ହସଟା ତାଙ୍କ ମୁହଁକୁ କେମିତି ଅସୁନ୍ଦର ଦିଶିଲା ।

"କି କଥା, ତମେ କ'ଣ ମୋର ପର ଯେ, ତମକୁ ଆଘାତ କରି ମୁଁ ଖୁସି ହେବି – କ'ଣ ଯେ କୁହ ତମେ – ମୁହଁରେ ବିରକ୍ତିଭାବ ଫୁଟେଇ କହିଲା କଲ୍ୟାଣୀ । ଅଦ୍ଭୁତ ମଣିଷ ସତରେ । ଲାଇଟରଟା ଜଳୁନି । ରାତିରେ ତ ଜଳୁଥିଲା । ମୁଁ କ'ଣ ଜାଣିଥିଲି ଏବେ ଜଳିବନି ବୋଲି । ଚେଷ୍ଟା କରୁଛି ଥରେ ଅଧେ । ଏଇ କିଛିଦିନ ତଳେ ତମେ ଆଣିଥିଲ । ପୁରୁଣା ବି ହେଇନି ।"

"ହଁ, ମୁଁ ଜାଣିଛି । ସାଙ୍ଗେ ସାଙ୍ଗେ ମୋ ଦୋଷ ଦିଶିଯିବ ତମ ଆଖିକୁ । ଦୋଷ ଖୋଜିବା ବି ତମର ଆଜିକାଲି ଗୋଟାଏ ଅଭ୍ୟାସ । ନିଆଁ ଜଳିଲେ ଦୋଷ, ନିଆଁ ନ ଜଳିଲେ ବି ଦୋଷ । କଥା କହିଲେ ଦୋଷ, ନ କହିଲେ ବି ଦୋଷ ।"

ହେ ଭଗବାନ । ଏଇ ଅବୁଝା ଏକମୁହାଁ ମଣିଷକୁ ସେ କେମିତି ଥଣ୍ଡା କରିବ । କିଛି ନକହି ଚୁପ୍ ରହିଲେବି ଚଳିବନି । କ'ଣ ଗୋଟାଏ ଖେଞ୍ଚା ମାରିବେ । ଖେଞ୍ଚାଗୁଡ଼ାକୁ ଶୁଣିବାକୁ ସବୁବେଳେ କ'ଣ ଭଲ ଲାଗୁଛି । ବରଂ ତମେ ନିଜ ଲୁଗାପଟା ଦି'ଖଣ୍ଡ ସଜାଡ଼ିନିଅ । ଟ୍ରେନ୍ ଟାଇମ୍ ହୋଇଯାଉଛି । ସବୁ ସଫା କରି ଆଲମିରା ଭିତରେ ସଜାଡ଼ି ରଖିଛି । ଯାହା ନେବା କଥା ବାଛିନେବ, ପ୍ଲିଜ୍ ... ପରିସ୍ଥିତି ଟାଳିବାକୁ କଥାକୁ ତରଳାଇ କହିଲା କଲ୍ୟାଣୀ ।

"ବାସ୍, ଜାରି ହୋଇଗଲା ଆଉ ଗୋଟାଏ ନିର୍ଦ୍ଦେଶନାମା । ସଜାଡ଼ିନିଅ ଲୁଗାପଟା । ନେଇଥା'ନ୍ତି, ଆଦେଶକୁ ଶିରୋଧାର୍ଯ୍ୟ କରି । ହେଲେ ସିଏ କ'ଣ ଆଲମିରା ହେଇଛି । ଗୋଟାଏ ମାଲ୍‌ଗୋଦାମ୍ । ସାର୍ଟପ୍ୟାଣ୍ଟ, ଶାଢ଼ି, ପାଇଜାମାଠୁ ଆରମ୍ଭ କରି ଯାବତୀୟ ଜିନିଷ । ପ୍ରକାର ପ୍ରକାରର । କାହାର କାହାର ସବୁ । ସେଥିରୁ କିଏ ମରିହଜି ବି ଗଲେଣି । ତଥାପି ଥୁଆ ହେଇଛି ତାଙ୍କ ଜିନିଷ । କୋଉ ମଣିଷ ପାଗଳ ନହେଇ ବାଛିବ ତା' ଭିତରୁ ।

"ହଜାରେ ଥର କହିଥିବି ଫୋପାଡ଼ ସେସବୁ ଅନାବଶ୍ୟକ ଜିନିଷ । କିଛି ନହେଲେ ଦେଇଦିଅ କାହାକୁ । ହେଲାନି । ମୋ କଥାର କ'ଣ ମୂଲ୍ୟ ଅଛି ? ତମେ ମୋ'ଠୁ ଧାପେ ଅଧିକ ନା, କାହିଁକି ମାନିବ । ଥୁଆ ହେଇଛି ସବୁ । ଦେଇଦେଲେ ସରିଯିବ ତ । ଲୋଭ ।

ଖାଲି ଲୋଭ । ତମକୁ ଚିହ୍ନିବାରେ ଆଉ ବାକି ଅଛି ମୋର । କିଏ ଦେଲେ କିନ୍ତୁ ଭାରି ଖୁସି ।" ସତରେ ବିରକ୍ତ ଲାଗିଲା କଲ୍ୟାଣୀକୁ । ଧୈର୍ଯ୍ୟ ବନ୍ଧ ଭାଙ୍ଗିଲା ଭଳି କଥା ସବୁ । କେତେ ସହିବ । ଏଣେ ଉତ୍ତର ନଦେଲେ ବି ନ ଚଳେ । ଗଳାକୁ ଟିକିଏ ନିଚା କରି ଉତ୍ତର ଦେବାକୁ ଯାଇ କହିଲା- "ଏଠି ତ ସବୁ ପୁରୁଣା । ଏମିତିକି ମୁଁ ନିଜେ ବି । କାହାକୁ କାହାକୁ ଫୋପାଡ଼ିବ; କେତେ ଫୋପାଡ଼ିବ ଶୁଣେ ।" କହିଦେଇ ଟିକିଏ ବୁଲି ରହିଁଲା ଜିଭ କାମୁଡ଼ି । ଭାଗ୍ୟ ଭଲ । ଶୁଣିପାରି ନାହାନ୍ତି କଥାଗୁଡ଼ାକ ସୁଖମୟ । ଫେରିଯାଉଛନ୍ତି ଟେବୁଲ୍ ପାଖକୁ । ରେଡ଼ିଓଟା ବାଜୁଛି । ଶୁଣିଥିଲେ ଆଉ ରକ୍ଷା ନଥିଲା । ଆହୁରି ବଢ଼ିଥା'ନ୍ତା ବିରକ୍ତି । ନିଜକୁ ସୁଧାରି ନେଲା ସେ । କ'ଣ ଆଉ କରିବ । ଗୋଟାଏ ପ୍ରକାରର ଆକ୍ଷେପ ଶୁଣି ଶୁଣି ପଦେ ଅଧେ ପାଟିରୁ ଖସିଯାଉଛି । ନହେଲେ ଜାଣିଶୁଣି ସେ କ'ଣ କହୁଛି, ପୁଣି ସୁଖମୟଙ୍କୁ । ଯାହାର ସୁଖ ଆଉ ଆନନ୍ଦ ପାଇଁ ଜୀବନର ସବୁ ଦିନରାତିକୁ ସେ ଅଜାଡ଼ି ଦେଇଛି ।

ଏଇମାତ୍ର ଦି'ଟା ଦିନ ହେଲା ଆସିଛନ୍ତି ଘରକୁ । ଆସିଲାଠୁ ଦେଖୁଛି ମିଜାଜଟା କେମିତି ବିଗିଡ଼ିଯାଇଛି । ଖାଲି ଚିଡ଼ଚିଡ଼ ହେଉଛନ୍ତି ସବୁ କଥାରେ । ସେ ଜାଣିପାରୁଛି; ନିଶ୍ଚୟ କୋଉଠି ଗୋଟାଏ ଆଘାତ ଲାଗିଛି; ନିଜକୁ ଅପମାନିତ, ଅଥବା ଅସମ୍ମାନିତ ମନେ କରିଛନ୍ତି । ପରିସ୍ଥିତିର ଚାପରେ କିମ୍ବା କୌଣସି ଉପୁଜୁଥିବା କାରଣ ଯୋଗୁଁ ହେଉ, ତାଙ୍କ ଭିତରର ସଚେତନ 'ମୁଁ'ଟା ସେଇ ହାରକୁ ସହଜ ଭାବେ ଗ୍ରହଣ କରି ପାରିନି । ଫଳରେ ଭୟଙ୍କର ଭାବେ ପ୍ରତିକ୍ରିୟାଶୀଳ ହେଇ ଉଠିଛି । ତା'ରି ପ୍ରଭାବ ଏଇଟା । କିଛି କାରଣ ନଥାଇ ତାକୁ ଆଘାତ କରି, ତା' ଦୁର୍ବଳତା ଉପରେ ଆକ୍ଷେପ କରି ସେଇ ହାରପଣରୁ ଉପୁଜିଥିବା ରାଗ ଘୃଣାତକ ହିଁ ବୁଝଉଛନ୍ତି ।

ସେ ଜାଣନ୍ତି, ତା'ର ପୁରୁଣା ଜିନିଷ ପ୍ରତି ବେଶି ଟିକିଏ ଦୁର୍ବଳତା । ପୁରୁଣା ଜିନିଷ, ପୁରୁଣା ସ୍ମୃତି, ଏମିତିକି ପୁରୁଣା ବିଛଣକୁ ବି ସେ ସାଇତି ରଖିଛି ଯତ୍ନରେ । ଯଦିଓ ସେ ଜାଣେ ଉତ୍ତର ପୁରୁଷଙ୍କ ପାଇଁ ଏଇ ପୁରୁଣାର ମୂଲ୍ୟ କିଛି ନାହିଁ । ତଥାପି ନିଜ ଅଭ୍ୟାସକୁ ସେ ଛାଡ଼ି ପାରିନି । ଅନ୍ୟମାନେ ଭାବନ୍ତି ସେ ପୁରୁଣାକଳିଆ, ତା'ର ମିଡ଼ିଲ୍‌କ୍ଲାସ୍ ମେଣ୍ଟାଲିଟି ଯାଇନି, ଏତେ ପାଠ ପଢ଼ିଲେ କ'ଣ ହେଲା । ଅଥବା ଆଉ କେହି କେହି ଭାବନ୍ତି ସେ ଲୋଭୀ - କିଛି ମୂର୍ଚ୍ଛି ପାରୁନି । ଦେଇଦେଲେ ସରିଯିବ । ସୁଖମୟ ଏଇ ଶ୍ରେଣୀର ହୁଏତ ।

ସତରେ ବିଡ଼ମ୍ବନାର କଥା । କେହି ବୁଝି ପାରନ୍ତି ନାହିଁ, କି ସେ ବୁଝେଇପାରେନା । ନିଜ ଭିତରେ ହିଁ କଷ୍ଟ ପାଏ । କେମିତି ବି ବୁଝେଇବ, ତା'ର ପ୍ରବଣତା କୋଉଠି । ସେ କ'ଣ ରହେଁ, କାହିଁକି ରହେଁ । ତା' ନିଜ ଅନୁଭବର କଥା ନା ! ଖୁବ୍ ଛୋଟ ଛୋଟ କଥା । ସ୍ନେହ, ପ୍ରେମ, ଭଲ ପାଇବାକୁ ମାପିବା ପାଇଁ କୋଉ ମାପ ଅଛି ପୃଥିବୀରେ ? ଥରେ ମନରେ ମାପରେ ମାପିବାକୁ ଚେଷ୍ଟା କଲେ, ଯେ କେହି ବୁଝିପାରିବ, ମନକୁ ଆଧାର କରି ବଞ୍ଚୁଥିବା ଯେକୌଣସି ମଣିଷକୁ ଆଘାତ କଲେ, ନିନ୍ଦା ଦେଲେ କେତେ କଷ୍ଟ ନ ଲାଗିବ !

ହେଲେ କେହି ମାପନ୍ତିନି । କାହାର ସମୟ ଅଛି ତମ ବୋଧଭୂଇଁ ଉପରେ ଠିଆ ହେଇ

ତମକୁ ଭାବିବ, ତମକୁ ମାପିବ । ଆଗ ଆଘାତଟେ କରିଦେଲେ ଆଉ କିଛି ହେଉ କି ନହେଉ, ମନର ଓରମାନ ତ ମେଣ୍ଟିଯିବ । ଲାଗିବ ମତେ ଜିତିଗଲ ।

ତେବେ ଅନ୍ୟମାନଙ୍କ କଥା ଅଲଗା । ସେମାନଙ୍କ ସଂପର୍କ ତ ଦେ' ଆଉ ନେ'ର । ସବୁ ହିସାବ କିତାବ । ହେଲେ ସୁଖମୟ !

ସୁଖମୟ ନିଜ ଭିତରର ତୀବ୍ର ଦ୍ୱନ୍ଦ୍ୱ ଅଥବା ସଙ୍କଟ, କିମ୍ବା କିଛି କରି ନପାରିବାର ଅସହାୟତାକୁ ସାମ୍ନା କରି ନ ପାରିଲେ, ଏଇ ସହଜ ଅସ୍ତ୍ରଟିକୁ ଧରି ଯୁଦ୍ଧଂଦେହିର ଡାକରା ଦିଅନ୍ତି । ନିଜର ଏହି ଆବେଶ ଭିତରେ ବୁଝିପାରନ୍ତିନି ଯେ, ପୁରୁଣା ଭିତରେ କେତେ ସ୍ମୃତି, କେତେ ଦରଦ, ମାନ ଅଭିମାନ, ଭଲ ପାଇବା, ଈର୍ଷା ଆଉ ଘୃଣାର ଇତିହାସ ସାଇତା ହେଇ ରହିଛି ପ୍ରତି ମୁହୂର୍ତ୍ତକୁ ଉଜ୍ଜୀବିତ କଲାଭଳି ସୁଖ ହେଉ କି ଦୁଃଖ, ସ୍ନେହ ହେଉ କି ଘୃଣା ଜୀବନକୁ ଦେଖିବାରେ, ଶିଖିବାରେ, ଅନୁଭବିବାରେ ତା'ର ଭୂମିକା କିଛି କମ୍ ନୁହେଁ । ସେସବୁର ମାପ ନାହିଁ । ମୂଲତଉଲ ନାହିଁ କି ହିସାବ ନାହିଁ । ବରଂ ତାକୁ ଦେଖୁଥିଲେ ରଖିଥିଲେ କି ବ୍ୟବହାର କରୁଥିଲେ, ତାକୁ ଲାଗେ ସେ ସୁରକ୍ଷିତ । ବିଚରଣ କରୁଛି ସେମାନଙ୍କ ମେଳରେ । ଅଛନ୍ତି ସେମାନେ ଏଇଠି କୋଉଠି ।

ଇଏ ଏକ ପ୍ରକାରର ଦମ୍ଭ । ଗର୍ବ ବି ଲାଗେ, ସେଇ ପଦାର୍ଥର, ସ୍ମୃତିର ଅଧିକାରୀମାନଙ୍କ ଉତ୍ତରଦାୟାଦ ବୋଲି । ପୁରୁଣାର ସଂରକ୍ଷା ଭିତରେ ନିଜକୁ ନିଜ ଦାୟିତ୍ୱକୁ ସେ ଅନୁଭବ କରେ । ଫୋପାଡ଼ିଦେଇ ପାରେନି ତେଣୁ । ଫୋପାଡ଼ିଲେ ଲାଗେ, ଯେମିତି କୌଣସି ଆତ୍ମୀୟକୁ ସେ ଆଡ଼େଇ ଦେଉଛି ଏବଂ ସେମାନେ ଅଭିମାନ ଭରା ଆଖିରେ ତାକୁ ଉହିଁ ପଚାରୁଛନ୍ତି, ଆମେ ପୁରୁଣା ହେଲୁ ବୋଲି ଫୋପାଡ଼ି ଦେଉଛୁ ଅଦରକାରୀ ଭାବି ?

ହେଇପାରେ ଏହା ତା'ର ଭାବପ୍ରବଣତା । କିନ୍ତୁ ରକ୍ଷଣଶୀଳତା ନୁହେଁ କଦାପି । ସୁଖମୟଙ୍କ ଆଖିରେ ଏକପ୍ରକାର ପାଗଳାମି, ସେ ଲୋଭୀ । ଅନ୍ୟମାନଙ୍କ ପାଇଁ ସେ ବିକାରଗ୍ରସ୍ତ । କିନ୍ତୁ ସେ ଜାଣେ, ପୁରୁଣା ପାଇଁ ତା'ର ଶ୍ରଦ୍ଧା ଆଉ ସମ୍ମାନବୋଧ ଏଇଟା । ଏବଂ ସୁଖମୟ ଏଇ ଦୁର୍ବଳତାକୁ ଆବଶ୍ୟକ ବେଳେ ବ୍ୟବହାର କରି ତାକୁ ଖେଣ୍ଟା ମାରନ୍ତି । କ୍ଷତବିକ୍ଷତ କରନ୍ତି । ତାଙ୍କ ପାଇ ଏଇ ସହଜ ଉପାୟ । ଏକଥା କିନ୍ତୁ ସେ ଆଗରୁ ବୁଝିପାରୁ ନଥିଲା । କଷ୍ଟ ପାଉଥିଲା । ଅଭିମାନ ଲାଗୁଥିଲା । ଏବେ ସେ ବୁଝିପାରିଲାଣି, କଥାର ମଞ୍ଜି କୋଉଠି ।

ତେବେ ଏକଥା ବୁଝିପାରୁନି ଯେ, ସେ ଆଘାତ ପାଇଲେ, ସୁଖମୟଙ୍କର ଆତ୍ମସନ୍ତୋଷ କ'ଣ ଆସୁଛି ? ପରୋକ୍ଷରେ ନିଜେ କଷ୍ଟ ପାଉନାହାନ୍ତି ? ତଥାପି ନିଜକୁ କଷ୍ଟ ଦେବା ପାଇଁ ଏ ପ୍ରକାର ପନ୍ଥାକୁ ସେ ଆପଣେଇଛନ୍ତି ।

କଲ୍ୟାଣୀ ଭାବି ଭାବି ଏଇ ନିଷ୍କର୍ଷରେ ହିଁ ପହଞ୍ଚିଛି ଯେ, ସୁଖମୟ ଭାରି ସ୍ୱାଭିମାନୀ । କୋଉଠି ଟିକିଏ ଦାଗ ଲାଗିବନି, କି ଛିଟା ପଡ଼ିବନି ତାଙ୍କ ଆତ୍ମସମ୍ମାନରେ । କାଳେ କିଏ କେତେବେଳେ ଆଙ୍ଗୁଠି ଦେଖାଇଦେବ ଭାବି ଆଗତୁରା ହଡ଼ବଡ଼େଇ ଯାଆନ୍ତି । ତାଙ୍କ କଥା

ଆଉ କାର୍ଯ୍ୟରେ ନିଜସ୍ୱ ଗୋଟିଏ ଧାରା ଅଛି । ସେ ଚାହାନ୍ତି ସମସ୍ତେ ତାଙ୍କ ଭଳି ସ୍ୱଚ୍ଛ, ତ୍ରୁଟିହୀନ, ଶୃଙ୍ଖଳିତ ହୁଅନ୍ତୁ । ହେଲେ ସଂସାର ତ ତାଙ୍କ କଥାରେ ନାହିଁ । ମଣିଷ ଗୋଟାକେ ପ୍ରକୃତି ଗୋଟାଏ । ମଣିଷ ସ୍ୱାର୍ଥସର୍ବସ୍ୱ । ଏକଥା ଗ୍ରହଣ କରିପାରନ୍ତିନି ସୁଖମୟ । ଏହା ହିଁ ତାଙ୍କ କ୍ଷେତ୍ରରେ ବିଡ଼ମ୍ବନା ।

ଭାବନା ଭିତରେ ବୁଡ଼ି କଲ୍ୟାଣୀ ଅନ୍ୟମନସ୍କ ଭାବେ ଭାବିଲା ଏବଂ ଆହୁରି ଦି' ଚାରିଥର ଲାଇଟର୍‌କୁ ଖଟରଖଟର କରି ମାରିବାକୁ ଯାଇ ଭୁଲ୍ କଲା । ଘର ଭିତରେ ନିଜ ଲୁଗାପଟା ସଜାଡୁଥିଲେ ସୁଖମୟ । ସତକୁ ସତ ଏଥର ଖୁବ୍ ବିରକ୍ତ ହେଲେ, "ତମର ବୋଧେ ସେଇ ଗୋଟିଏ ଜିଦ୍, ମୋତେ ଯେକୌଣସି ପ୍ରକାରେ ଇରିଟେଟ୍ କରିବ । କ'ଣ ଭାବୁଛ ନିଜକୁ, ଏଁ... ?"

ଅନ୍ୟମନସ୍କ କଲ୍ୟାଣୀ ନିଜ ଭିତରେ ଚମକିପଡ଼ି ସାଙ୍କୁଡ଼ିଗଲା । ସିଏ ବି କେମିତି ଏଇ ଲାଇଟର୍ ଶବ୍ଦଟାକୁ ହିଁ କାନେଇଛନ୍ତି, ଚାରିପଟେ ଏତେପ୍ରକାର ଶବ୍ଦ ଥିବା ସତ୍ତ୍ୱେ । ମନମୁନ ଚୈତନ୍ୟ କେବଳ ନୁହେଁ, ଅବଚେତନ ଭିତରେ ବି ଶବ୍ଦଟା ଯେମିତି ବସା ବାନ୍ଧି ରହିଛି । ହେ ଭଗବାନ ! କ'ଣ କରିବ ସିଏ ଏବେ !

"କାଲିଠୁ କହି ରଖିଥିଲି ନା, ସାର୍ଟଟାକୁ ଆଇରନ୍ କରିଦେବ, ହେଇଛି ? ସେତିକିବେଳୁ ଖୋଜୁଛି, ନାଲି କଲମଟା ... ସିଏ ବି ନାହିଁ । ରୁମାଲ୍ ସବୁ କିଏ କୁଆଡ଼େ ନେଲେଣି । ଏସବୁକୁ ଧ୍ୟାନ ନାହିଁ । ଅଥଚ ଲଗେଇଛ ଗୋଟାଏ ଖଟର ଖଟର ସେତିକିବେଳୁ ।" ସୁଖମୟଙ୍କର ବିରକ୍ତିସୂଚକ ଶବ୍ଦବାଣ କଲ୍ୟାଣୀର ଅନ୍ୟମନସ୍କତାକୁ ଛିନ୍ନଛତ୍ର କରି ପକେଇଲା । ତଥାପି ପରିସ୍ଥିତିକୁ କିଛି ସହଜ କରିବାକୁ ଯାଇ କହିଲା - "କୁଆଡ଼େ ଆଉ ଯିବ, ସବୁ ଥିବ ସେଇଠି । ତମେ ନିଜେ ଅସ୍ଥିର ବୋଲି ଖୋଜି ପାଉନ । ସ୍ଥିର ହୋଇ ଟିକିଏ ଖୋଜିଲ ।" ରୋଷେଇ ଘର ଭିତରୁ ସେ ଉତ୍ତର ଦେଲା ।

"ମୁଁ ତାକୁ ହିଁ ତ ଖୋଜୁଛି । ସନ୍ଧ୍ୟାବେଳେ କାଲି କ୍ୟାଣ୍ଡେଲ୍ ଜଳେଇ ଏଇଠି ରଖିଥିଲି - ଏବେ ଦିଶୁନି, କିଏ କୁଆଡ଼େ ନେଲା... ।"

"କିଏ କୁଆଡ଼େ ନେଲା ମାନେ, ଚୋରି କରି ନେଇଗଲା ? ଘରେ ତ ମୋ ଛଡ଼ା କେହି ନାହିଁ ।" ସୁଖମୟଙ୍କ ବିରକ୍ତି ଚରମ ଛୁଇଁଲା । କାହାକୁ ତମେ କ'ଣ କହୁଛ ଭାବିପାରୁଛ ?

ଏଥର କଲ୍ୟାଣୀର ଧୈର୍ଯ୍ୟ ବନ୍ଧ ଭାଙ୍ଗିଲା ସତକୁ ସତ । ଟିକିଏ ଗମ୍ଭୀର ଗଳାରେ କହିଲା- "କ'ଣ ହେଇଛି କି ଆଜି ତମର ? ଏଇ ଟିକକ ଆଗରୁ ପରା ତମେ ରୁମାଲ୍ ଖୋଜୁଥିଲ, କଲମ ଖୋଜୁଥିଲ ମୋତେ ତ କାହିଁ କିଛି ବଙ୍କାଟେଢ଼ା ଶୁଭିଲାନି । ଜାଣିଲି ଜିନିଷଗୁଡ଼ାକ ନିର୍ଦ୍ଦିଷ୍ଟ ଜାଗାରେ ନାହିଁ, ଏଣେତେଣେ ହେଇଯାଇଛି । ଅଥଚ ମୁଁ ଯେତେବେଳେ ଦିଆସିଲି ଖୋଜି ପାଉନି ବୋଲି କହିଲି, ତମକୁ କେମିତି ବଙ୍କା ଶୁଭିଲା, ନିଜ ଉପରକୁ କଥା ନେଇଗଲ ? ଏଇଟା କ'ଣ ତମକୁ, ତମ ବୟସର ମଣିଷଙ୍କୁ ଶୋଭା ପାଏ, ନା, ତମଠୁ ଏ

ପ୍ରକାର ବ୍ୟବହାର ଆଶା କରାଯାଏ ? ଭାଗ୍ୟ ଭଲ, ଘରେ ଆମ ଦୁହିଁଙ୍କ ଛଡ଼ା ଆଉ କେହି ନାହିଁ – ଥିଲେ, କ'ଣ ଭାବିଥା'ନ୍ତେ ? ଯଦି ସାକେତ ବି ଥାଆନ୍ତା କ'ଣ ଧାରଣା ହୋଇଥା'ନ୍ତା ତା'ର ? ବାପାଙ୍କ ଚେହେରାର ଏଇ ଅନ୍ଧାରୁଆ ଦିଗଟା ତାକୁ ବିସ୍ମୟରେ ପକେଇ ଦେଇଥା'ନ୍ତା ନିଶ୍ଚୟ । ମୁଁ ସିନା ତମର ଧର୍ମପତ୍ନୀ, ଯାହା କହିଲେ ବି ଶୁଣିବାକୁ ବାଧ୍ୟ । ଏଇ ରାଗ, ବିରକ୍ତି, ଚିଡ଼ିଚିଡ଼ାପଣ ଯଦି ବାହାରେ ଅନ୍ୟମାନଙ୍କ ଉପରେ .... କହୁ କହୁ ଅଧାବାଟରେ ଅଟକିଗଲା କଲ୍ୟାଣୀ । ଭାବିଲା, ଅସୁବିଧାଟି ତ ଏଇଠି । ଅନ୍ୟମାନଙ୍କୁ ସେ କେବେ କିଛି କହିପାରନ୍ତିନି, କି ସହିପାରନ୍ତିନି ସେମାନଙ୍କ ଅବିଚାର । ଏଇ ଅପମାନଜନିତ ମାନସିକ ଚାପକୁ ରିଲିଜ୍ କରିବା ପାଇଁ ଝଡ଼େଇ ହୁଅନ୍ତି ତା' ଉପରେ । ସେ ପାଲଟି ଯାଏ ମାଧ୍ୟମ । ଏବେ ବି ସେଭଳି କିଛି ଘଟଣା ଘଟିଥିବ ଅଫିସ୍‌ରେ ।

କ'ଣ ଆଉ କହିବ ? ଅଗତ୍ୟା ନିଜ ପ୍ରତିକ୍ରିୟାକୁ ନିଜ ଭିତରେ ସମ୍ଭାଳିନେଲା । ସୁଖମୟ ଗରଗର ହେଇ ଟେବୁଲ୍ ପାଖକୁ ଫେରି କ'ଣ ସବୁ କାଗଜପତ୍ର ସଜାଡ଼ିବାରେ ଲାଗିଲେ । ମଣିଷଟା ଏମିତି ଭିତରମୁହାଁ । ସବୁ ଠିକ୍‌ଠାକ୍ ହେବା ଦରକାର ସବୁ ନିର୍ଦ୍ଦିଷ୍ଟ । କିଛି ଏପାଖ ସେପାଖ ହେବନି । ସବୁଥିରେ ଗୋଟିଏ ଶୃଙ୍ଖଳିତ ଛନ୍ଦ ଅଛି । ତା'ର ଏଇ ଛୋଟିଆ ସଂସାରର କାନ୍ଥରେ ଏଇସବୁ ଅନୁଶାସନର ନିୟମାବଳୀ ଅଲିଖିତ ଭାବେ ଲିପିବଦ୍ଧ ହୋଇ ଅଛି । କେହି ବାଧ୍ୟ ନ କଲେ ବି ସେ ମାନି ଆସିଛି, କାର୍ଯ୍ୟକାରୀ କରି ଆସିଛି ।

ହେଲେ ଏଇ ଅନୁଶାସନ ଅନ୍ୟମାନଙ୍କୁ ଦିଶିବ କାହିଁକି ? ସମସ୍ତେ ତ କଲ୍ୟାଣୀ ନୁହନ୍ତି । ଏତେ ବୁଦ୍ଧିମାନ ମଣିଷ ହେଇ ସୁଖମୟ ଏଇ ସାଧାରଣ କଥାଟାକୁ କାହିଁକି ଯେ ବୁଝି ପାରନ୍ତିନି କେଜାଣି । ଏମିତିକି ଅବଚେତନ ସ୍ତରରେ ମଧ୍ୟ ଗ୍ରହଣ କରିପାରନ୍ତିନି ।

ଏଇ ନାପସନ୍ଦ ଭାବରେ ପ୍ରତିକ୍ରିୟା ପରୋକ୍ଷ ଭାବେ କଲ୍ୟାଣୀ ଉପରେ ଝଡ଼ିପଡ଼ି ବେଳେବେଳେ ଅବାଞ୍ଛିତ ଅଭାବନୀୟ ପରିସ୍ଥିତି ସୃଷ୍ଟି କରେ । ସୁଖମୟ ବି ନିଜେ ସ୍ୱୀକାର କରନ୍ତି, ଏ ପ୍ରକାର ଶୃଙ୍ଖଳିତ ଅଭ୍ୟାସ / ବଦଭ୍ୟାସ ମୂଳରେ ନିଜେ କଲ୍ୟାଣୀ ହିଁ ଦାୟୀ । ଅନ୍ୟ ପ୍ରକାରେ କହିଲେ, ତାଙ୍କୁ ସେ ଅଧିକ ନିୟମିତ ଓ ନିର୍ଭରଶୀଳ କରେଇ ଦେଇଛି ।

ଭାବୁଭାବୁ ହସିଦେଲା କଲ୍ୟାଣୀ ଓ ରୋଷେଇ ଘରୁ ଆସି ସୁଖମୟଙ୍କ ଲୁଗାପଟା ସଜାଡ଼ିବାକୁ ଲାଗିଲା । ସାର୍ଟ ଉପରେ ଆଇରନ୍ ଚଳଉଚଳଉ ଭାବନା ବି ଚାଲିଲା ତା' ବାଟରେ ତାତି ତାତି ।

ସେ ଜଣେ ବଶମ୍ବଦା ପତ୍ନୀ ଓ ଶୃଙ୍ଖଳିତ ଗୃହିଣୀ, ଠିକ୍ କଥା । ସେ ତ ସେଇକଥା ଶିଖିଆସିଛି ବୋଉଠୁ, ଶାଶୂଙ୍କଠୁ । ସେମାନଙ୍କ ବେଳର ବ୍ୟବସ୍ଥା ଯଦିଓ ଏବେ ଆଉ ନାହିଁ । ପୁରୁଷ, ସ୍ତ୍ରୀ ଉଭୟେ ସମାନ ଓ ସମକକ୍ଷ । ଏଇ ପରିବର୍ତ୍ତନ ସମୟ ହିଁ ଆଣି ଦେଇଛି । ଏଠି ଊଣାପଣର ସ୍ଥାନ ନାହିଁ । ମୁକ୍ତ ଭାବେ ବିଚାର କରିପାରିବାର ସାମର୍ଥ୍ୟ ଅଛି । ତଥାପି ପାରିବାରିକ ଶୃଙ୍ଖଳା ଏବଂ ଏକ ସୁସ୍ଥ ସମାଜବୋଧ ପାଇଁ ଏ ପ୍ରକାର ବଶମ୍ବଦତାର ଗୋଟାଏ ମାଧୁର୍ଯ୍ୟ

ଅଛି । ଯଦିଓ ଅପରିହାର୍ଯ୍ୟ ନୁହେଁ, ତେବେ ଏହା ପାରିବାରିକ ବନ୍ଧନକୁ ଟାଣ କରେ । ଅବଶ୍ୟ ପରିବାରର ପ୍ରତ୍ୟେକ ସଦସ୍ୟଙ୍କର ନିଜ ନିଜ ଭୂମିକା ରହିଛି । ଇଏ ଆମର ପ୍ରାଚ୍ୟ ସଂସ୍କୃତିର ଏକ ସୁନ୍ଦର ବୁଝାମଣା ମାତ୍ର ।

ଏହା ବି ସତ ଯେ, ଆମ ବ୍ୟବହାରିକ ବ୍ୟବସ୍ଥାରେ ପୁରୁଷ କିଛି ଅଧିକା ସମ୍ମାନ ଏବଂ ଅଧିକାର ଭୋଗ କରି ଆସିଛି । ପ୍ରକୃତି ଜଗତରେ ବି ଏଇ ନିୟମ ଊଣାଅଧିକେ ରହିଆସିଛି । ଅଭ୍ୟାସଗତ ଚଳଣି । ଏଇ ଚଳଣି ଅଧିକାରରେ ପରିଣତ ହେଲେ, ସଙ୍କଟ ଉପୁଜେ । ସଙ୍କଟରୁ ସଂଘାତ । ଭୁଲ୍ ବୁଝାମଣା । ଏଥିପାଇଁ ଉଭୟେ ନିଜ ନିଜ ସୀମା ପ୍ରତି ସଚେତନ ରହିବା ନିହାତି ଆବଶ୍ୟକ । ଏଇ ସୀମା ସଚେତନତାର ସୂଚନା ଆମ ବିବାହ ପଦ୍ଧତିର 'ସପ୍ତପଦୀ' ହିଁ ଦେଇ ଆସିଛି । ହେଲେ ଆମ ଆଖପାଖରେ ଶିଖିବା ପାଇଁ, ଅନୁଭବ କରିବା ପାଇଁ, ବୁଝିବା ପାଇଁ ଉଦାର ତଥା ସଂଭ୍ରାନ୍ତ, ଶିକ୍ଷିତ ମନଟିଏ ଯେ ନିହାତି ଦରକାର । ଜଣେ ଜଣକର ମନ ଭିତରେ ପଶିପାରିବାର ଯୋଗ୍ୟତା ହାସଲ ନକଲେ ଏହା ସମ୍ଭବ ହେବ କେମିତି ? ଅଧିକାରପଣ ମଣିଷକୁ ସଙ୍କୁଚିତ କରିଦିଏ । ଆଜିକାଲି ପିଲାଙ୍କ ପାଖରେ ଏଇ ବଶମ୍ବଦପଣ ନାହିଁ ।

ଭାବୁ ଭାବୁ କଲ୍ୟାଣୀର ହାତ ଅଟକିଗଲା । ସାର୍ଟକୁ ବ୍ରିଫ୍‌କେସ୍‌ରେ ଥୋଇ ଭାବିଲା, ଆଉ ବ୍ୟସ୍ତ ହେବନି ଦିଆସିଲ୍ ପାଇଁ । ପଡ଼ିଶା ଘର ଝରକା ଖୋଲିଲାଣି । ଲିଚୁ ପାଟି ଶୁଭୁଛି – ଉଠିଲେଣି ସବୁ । ଆଉ ପାଞ୍ଚ ଦଶ ମିନିଟ୍ ପରେ ଲାଇଟର୍, କିମ୍ବା ଦିଆସିଲ ମାଗି ଆଣିବ ଲିଚୁ ଘରୁ । ବରଂ ମଇଦା ଟିକେ ଚକଟି ଦେଲେ ଲୁଚି ଦି'ଖଣ୍ଡ ଛାଣି ଟିଫିନ୍ ବକ୍ସରେ ଦେଇଦେବ ଚୁପ୍‌ଚାପ୍ ।

ଆଇରନ୍ ଥୋଇ ତରବରରେ ଉଠିଗଲା କଲ୍ୟାଣୀ ମଇଦା ଚକଟିବାକୁ । ସୁଖମୟ ବି ଟେବୁଲ୍ ପାଖରେ ବସି ଲେଖାଲେଖି କରୁଛନ୍ତି ମନ ବୋଧେ ସେଇଥିରେ ଲାଗିଯାଇଛି । କିଛି ଗୋଟାଏ ଘଟିଛି ନିଶ୍ଚୟ ଅଫିସ୍‌ରେ, ବିବ୍ରତ ଜଣା ପଡ଼ୁଛନ୍ତି ।

ହେଲେ କ'ଣ ହେବ ? ସହାନୁଭୂତିର ପଦେ କଥା କହିବାକୁ ମନ ହେଉଥିଲେ ବି ସେ କହିପାରିବନି କିଛି । କୌଣସି ସୁଖଦୁଃଖକୁ ସେ ଭାଗ କରିବେନି କାହା ସହିତ । ଏହା ଏକା ସହିନେବାକୁ ଚେଷ୍ଟା କରିବେ । ଏସବୁ ଦୃଷ୍ଟିରୁ ଖୁବ୍ ରକ୍ଷଣଶୀଳ । ଯେହେତୁ ସେ ଗୃହକର୍ତ୍ତା, ଘର ଏବଂ ପରିବାରର ସବୁ ଦାୟିତ୍ୱ ମଧ୍ୟ ତାଙ୍କର । ଅଥଚ ଅଣାୟତ୍ତ ପରିସ୍ଥିତିର ଚାପ କୌଣସି କାରଣରୁ ସମ୍ଭାଳି ନ ପାରିଲେ ଏମିତି ପ୍ରତିକ୍ରିୟାଶୀଳ ବି ହେଇ ଉଠନ୍ତି । ପୁରୁଷୋଚିତ ଅହଂପଣ ଏଠି ବାଧକ ସାଜେ । ନିଜ ଭିତରର ଯୁଦ୍ଧରେ କ୍ଷତବିକ୍ଷତ ମନ ଉତ୍‌କ୍ଷିପ୍ତ ହେଇଉଠେ ନିୟନ୍ତ୍ରଣ ହରାଇ । ଅବଚେତନ ସ୍ତରରେ ତା'ର ପ୍ରତିକ୍ରିୟା ବିଭିନ୍ନ ବାଟରେ ଫୁଟିଉଠେ । ଏଇ ସଙ୍କଟର ପ୍ରଭାବ ସବୁ ଆଡ଼କୁ ସଂକ୍ରମିତ ହୁଏ । ଏମିତିକି ତା' ଭିତରର ମର୍ଯ୍ୟାଦାବନ୍ତ ସମର୍ପିତା ନାରୀଟା ବି ଦୋହଲିଯାଏ । ସ୍ତବ୍ଧ ହୋଇଯାଏ ଚେତନା । ଏଇ ମାତ୍ର କଥା । ଏଥିରେ ଆଉକିଛିର ଯୋଗ ସଂଯୋଗ ନାହିଁ । ମାନବିକ ଗୁଣାବଳୀର ଏଇ ଦୁର୍ବଳତାକୁ ମାତୃସୁଲଭ ଗୁଣରେ ସହ୍ୟ କରିନେଲେ, ସଙ୍କଟ ଆପେ ଟଳିଯାଏ ଏଇଟା କଲ୍ୟାଣୀର ନିଜ ଆବିଷ୍କାର ।

ମଇଦା ଚକଟି ସାରି ହାତଧୋଇ ଲିତୁ ଘରକୁ ଯିବାକୁ ବାହାରିଲା କଲ୍ୟାଣୀ । କାନ୍ଥ ଘଣ୍ଟାକୁ ଆଖି ପକେଇଲା ଅଛି କିଛି ସମୟ । ଦିଆସିଲିଟା ଆଣିଲେ ହିଁ ଛାଣିଦେବ ଦି'ଖଣ୍ଡ ଲୁଚି । ଆଳୁଭଜା ନହେଲା ଏବେ, ମିଠା ଦେଇଦେବ ।

'କଲ୍ୟାଣୀ ... ଶୁଣୁଛ ।' ସୁଖମୟ ଡାକ ପକେଇଲେ ଟେବୁଲ୍ ପାଖରୁ ।

'ଯାଉଛି ।' ଟେବୁଲ୍ ଆଡ଼କୁ ଫେରୁ ଫେରୁ ପ୍ରମାଦ ଗଣିଲା କଲ୍ୟାଣୀ, ପୁଣି କ'ଣ ଅସୁବିଧା ହେଲା ଯେ ! ପଚ୍ଚରିଲା ଆଖିରେ ଯାଇ ପାଖରେ ଠିଆ ହେଲା ।

"ଦିଆସିଲଟା ଏଇ ଟେବୁଲ୍ ଡ୍ରରେ ହିଁ ଅଛି, ନିଅ - ମହମବତି ସହିତ ଦିଆସିଲିକୁ ହାତରେ ଧରି ସୁଖମୟ ତା' ହାତକୁ ବଢ଼େଇ କହିଲେ, "ମନେ ନଥିଲା, ଲଫାପା ସିଲ୍ କରିବା ପାଇଁ ତମ ରୋଷେଇ ଘରୁ ଆଣିଥିଲି, ରହିଯାଇଛି ଡ୍ର'ରେ । ଏଥର ଶୀଘ୍ର ତମ କାମ ସାର । ଟ୍ରେନ୍ ଟାଇମ୍ ହେଇଯାଉଛି, ବାହାରିଲି ମୁଁ ଗାଧୋଇବାକୁ ।"

ମନେ ମନେ ହସିଦେଲା କଲ୍ୟାଣୀ । ସୁଖମୟଙ୍କ ଆଖିରେ ନ ପଡ଼ିଲା ଭଳି । ଦିଆସିଲି ନେଇ ରୋଷେଇ ଘରକୁ ଫେରିଯାଉଥିଲା ସେ । ପଛରୁ କହିଲେ ସୁଖମୟ- "ତମର ସେଇ ଆଣ୍ଟିକ୍ସଗୁଡ଼ାକୁ କିନ୍ତୁ ଦୟାକରି ଫୋପାଡ଼ିଦିଅ । ଆସନ୍ତା ସପ୍ତାହରେ ଘରକୁ ଆସିଲାବେଳକୁ ନୂଆ ଲାଇଟର୍ କିଣି ଆଣିଥିବ । ହଁ, ଆବଶ୍ୟକ ଜିନିଷ ଆଗରୁ କିଣି ରଖିବାକୁ, ଏତେଦିନ ସଂସାର ଚଳେଇ ମଧ୍ୟ, ତମ ମଗଜରେ ପଶିଲାନି । ରାତି ବିକାଳି ହଇରାଣ ହେଲେ ଜାଣିବ, ମୋ କଥାର ଗୁରୁତ୍ୱ କେତେ !"

କିଛି ଉତ୍ତର ଦେଲାନି କଲ୍ୟାଣୀ । କେବଳ ମନକୁ ମନ କହିଲା, "ମୁଁ ଜାଣିଛି ସଂସାରୀପଣରେ ତମେ କେତେ ପାରଙ୍ଗମ ।" କାନ୍ଥଘଣ୍ଟାକୁ ଚାହିଁ ତରବର ହୋଇ ରୋଷେଇ ଘର ଭିତରେ ପଶିଲା । ଭାବନାମାନେ ଯାହା ସମୟକୁ ଡେଇଁ ଅନେକ ଆଗକୁ ଧାଇଁ ଚାଲିଥିଲେ ।



# ତମାଳ

ଜୁଈ ଜଳୁଛି ... ହୁତୁହୁତୁ ହୋଇ ଜଳୁଛି ମାଳଅପା ... ତା'ର ତିନି କାଳକୁ ନେଇ । ସମୁଦ୍ର ପବନ ବିଞ୍ଚିବିଞ୍ଚି ଦେଉଛି ଚିତାଗ୍ନିକୁ । ତେଜି ଉଠୁଛି ଶିଖା । ଏଇତ ଗଲା ସୁବୋଧ ମାଳଅପା ମୁହଁରେ ମୁଖାଗ୍ନି ଦେଇ । କାନ୍ଦି କାନ୍ଦି ଅଥୟ ହୋଇଯାଉଥିଲା ପିଲାଟା । ଓଃ ! ହୃଦୟ ବିଦାରକ ଦୃଶ୍ୟ ଥିଲା ତାଙ୍କ ପାଇଁ ନିଶ୍ଚୟ । ଯଦିଓ ସେ ନିତିଦିନ ମୃତ୍ୟୁର ଏଇ କରୁଣ ଦୃଶ୍ୟ ଦେଖି ଆସୁଛନ୍ତି ବାରଂବାର ମୃତ୍ୟୁ ସହିତ ତାଙ୍କର ଭେଟ ହେଉଛି ... ତଥାପି କାହିଁକି କେଜାଣି ସେ ଏତେମାତ୍ରାରେ ଅଥୟ ହୋଇ ପଡ଼ିଲେ ନିଜ ଭିତରେ ! ଅସହାୟ ଲାଗିଲା, ମନେହେଲା ପୃଥିବୀର ସବୁ ଆଲୁଅ ହଠାତ୍ ଲିଭିଗଲା ତାଙ୍କ ପାଇଁ ... ହେଉପଛେ ମୁହୂର୍ତ୍ତକ ପାଇଁ । ଅବୋଧ ବୟସରେ ମା'ଙ୍କୁ ହରେଇଥିଲେ, ମନେନାହିଁ ସେଇ ଦୁଃଖର ତୀବ୍ରତାବେଳେ ମାଳଅପା ଥିଲା କୋଳେଇ ନେବାକୁ । ଅପା ଚାଲିଗଲା ବେଳକୁ ସେ ଡାକ୍ତର ହୋଇ ସାରିଥିଲେ । ଜୀବନ ମରଣର ସଂଜ୍ଞା ସହିତ ପରିଚିତି ଥିଲା ତାଙ୍କର ସେଇ ସମୟରେ । ଅଥଚ ଆଜି, ମାଳଅପାର ଅବର୍ତ୍ତମାନକୁ ସେ ସହ୍ୟ କରି ପାରୁନାହାନ୍ତି ନିଜ ଚେତନା ଭିତରେ । ଆଉ ପ୍ରକାରେ ଅସହାୟ ଲାଗୁଛି ତାଙ୍କୁ । କାହିଁକି ??

ମଣିଷ ଜୀବନର ଶେଷଟା ଏମିତି କରୁଣ, ଏତେ ଜଟିଳ ହୋଇପାରେ ! ଛାର ଏଇ ମୁଖାଗ୍ନି ପ୍ରସଙ୍ଗଟା, ମାଳଅପାର ମୃତ୍ୟୁ ଅପେକ୍ଷା, ଏତେ ଅଧିକ ଗୁରୁତ୍ୱପୂର୍ଣ୍ଣ ମନେହେଲା ଯେ, 'ମାଳଅପା ଆଉ ଆମ ଭିତରେ ନାହିଁ, ଏ ଜୀବନ ପାଇଁ ମାଳଅପା ହଜିଗଲା'ର ଭାବନା ସହିତ ଛାତି ଭିତରର ଅଭାବବୋଧଟା ଏକାବେଳକେ ପବନ ହୋଇ ସମୁଦ୍ର ପବନରେ ମିଶିଗଲା ! ଏ ପର୍ଯ୍ୟନ୍ତ ତାଙ୍କର ଧାରଣା ଥିଲା, ସେ ମଣିଷର ଜୀବନ ମରଣ ଉଭୟ ଅବସ୍ଥା ସହିତ ପରିଚିତ ।

ଜୀବନକୁ ଯେମିତି ସେ ଖୁବ୍ ନିକଟରୁ ଦେଖିଛନ୍ତି ଠିକ୍ ସେମିତି ମରଣକୁ । ହେଲେ ଆଜି ମାଳଅପାର ମୃତ୍ୟୁ ତାଙ୍କର ଏଇ ଧାରଣାକୁ ବଦଳେଇ ଦେଲା । ସେ କୋଉଟାକୁ ବି ପୂର୍ଣ୍ଣରୂପରେ ଦେଖିନାହାନ୍ତି । ଜୀବନଟା ଆନନ୍ଦମୟ ବୋଲି ଅନେକ କୁହନ୍ତି; ହେଲେ ଏଇ ଟିକକ ଆଗରୁ ତାଙ୍କର ମନେହେଲା ଜୀବନଟା ବଡ଼ ଜଟିଳ । ମଲାପରେ ବି ତା'ର ମୁକ୍ତି ନାହିଁ ।

ନହେଲେ, ମୁଖାଗ୍ନିକୁ ନେଇଁ ଏତେ ବାକ୍‌ବିତଣ୍ଡା । ଟଣାଓଟରା, କଥା କଟାକଟି, ଅଧିକାର ପଣର ଘୋଷରାଘୋଷରି ଚାଲିଥାନ୍ତା କାହିଁକି ? ମାଳଅପାର ମୃତ୍ୟୁ କାହାକୁ କେତେ ଦୁଃଖ ଦେଲା କି ନ ଦେଲା କେଜାଣି, ହେଲେ ତାର ଯତ୍‌କିଞ୍ଚିତ ସଂଚୟ ଏବଂ ଦି'ବଖରା ଘର ଉପରେ ଅନେକଙ୍କ ଆଖି ନିବଦ୍ଧ ଥିଲା । ସେଇଥିପାଇଁ ମୁଖାଗ୍ନି ପ୍ରସଙ୍ଗଟା ଏତେ ମାନେ ରଖିଲା । ମାଳଅପା ପ୍ରତି ଶ୍ରଦ୍ଧା ନିବେଦନ ନୁହେଁ କେବେ । ଏତେଦିନ ଧରି କୁଆଡ଼େ ଥିଲେ ଏଇ ଗାଁ ଭାଇ, କୁଟୁମ୍ବ ଅଥବା ମାଳଅପାର ଭାଇ, ସାବତ ଭାଇ ସୁରଥ ? ଦିନେ କେବେ ଖୋଜିଛନ୍ତି ଭଉଣୀକୁ । ଏଇ ସତୁରି ବର୍ଷ ଭିତରେ । ଏତେବେଳକୁ ସମସ୍ତେ ପହଞ୍ଚିଯାଇଛନ୍ତି ନିଜ ରକ୍ତସଂପର୍କର ପରିଚୟପତ୍ର ଧରି ଅଧିକାର ଦାବୀ କରି । ଛି ଛି, ମଣିଷ କେତେ ସ୍ୱାର୍ଥପର । ମାଳଅପା କିନ୍ତୁ ଦିନେ ବି ଖୋଜିନି ସେମାନଙ୍କୁ । ଅଥଚ ସୁରଥ ଖୁବ୍ ଜୋରଦେଇ ନିଜ ଅଧିକାର ଏବଂ ଉତ୍ତରାଧିକାରୀ ଭାବେ ଦାବୀ ଜଣେଇଲା ଯେ, ମାଳଅପାର ଭବିଷ୍ୟତ ବଂଶଧର ଭାବେ ସେ ଏଇ ଘରର ମାଲିକ । ସେ ହିଁ ମୁଖାଗ୍ନି ଦେବ । ସୁଖେନ୍ଦୁ ପ୍ରତିବାଦ କଲା । ଅନେକ ସମୟ ଧରି ଯୁକ୍ତିତର୍କ ଚାଲିଥିଲା । ସେଇ ସ୍ଥିତି ଭିତରେ ହିଁ ମାଳଅପାକୁ ସେମାନେ ଶବବାହକ ଆମ୍ବୁଲେନ୍‌ସରେ ଉଠେଇ ଆଣିଥିଲେ ସ୍ୱର୍ଗଦ୍ୱାରକୁ । ଭାବନା ନିଃଶ୍ୱାସ ନେଲା, ସଜଳେନ୍ଦୁଙ୍କ ଦୃଷ୍ଟି ଚିତାଗ୍ନି ଆଡ଼କୁ ମୁହାଁଇଲା ।

ଜୁଇ ଜଳୁଛି ... ଶୋଇଯାଇଛି ମାଳଅପା କ୍ଳାନ୍ତ ହୋଇ । ନିଆଁ ଭିତରୁ ଦିଶୁଛି ତା'ର ଶରୀରଟା । ସତେ ଯେମିତି ଅଗ୍ନିକନ୍ୟା । ତା'ର କର୍ମଚଂଚଳ ହାତ ଦି'ଟା ଝୁଲିପଡ଼ିଛି ନିସ୍ତେଜ ହୋଇ ଦି'ପଟକୁ । ଆକାଶ ଆଡ଼କୁ ମୁହଁ । ବିଛଣାରେ ଶୋଇଥିଲେ ବି ଏମିତି ଶୁଏ, ଶୂନ୍ୟକୁ ଚାହିଁ ସେ । କ'ଣସବୁ କହୁଥାଏ ଗୁଣୁଗୁଣୁ ହୋଇ । ପଚାରିଲେ, ହସିଦିଏ, କୁହେନା କିଛି । ଆଜି କିନ୍ତୁ କହୁଥିବ- କିଛି ନଉନିରେ ଭାଇ, ଦେଖୁନୁ ଖାଲି ହାତକୁ... ଯିମିତି ଆସିଥିଲି ସେମିତି ଯାଉଛି । ତମମାନଙ୍କ ସ୍ନେହ, ଭଲପାଇବାର ମଣିମୁକ୍ତାକୁ ସାଇତି ରଖିଛି ଛାତିରେ । ସେତିକି ଜାଣ ମୋ ପାଉଣା ।

ହଁ ପାଉଣା, ଅଶିବର୍ଷର ସଂଚିତ ପାଉଣା ତା'ର । କ'ଣ ଭାବୁଛି କେଜାଣି । ପଢ଼ି ହେଉନି ଆଉ ତା' ମୁହଁର ଭାବକୁ । ନିର୍ଲିପ୍ତ ନିର୍ବିକାର ଭାବେ ଆଖି ବୁଜିଦେଇଛି । ସବୁ ମୋହ କାଟି ଦେଇଛି ଏ ସଂସାରରୁ । ବଡ଼ ନିର୍ଦ୍ଦୟ ଏଇ ସର୍ବଗ୍ରାସୀ କାଳ । କାହାକୁ ରିହାତି ଦେଇନି । ଆଉ କିଛି ସମୟ ପରେ ମୁଠାଏ ପାଉଁଶରେ ପରିଣତ ହୋଇଯିବ ମାଳଅପା । ଝୁରୁଝୁରୁ ହୋଇ ଝରିଯିବ, ମାଟିରେ ମିଶିଯିବ, ପବନରେ ଉଡ଼ିଯିବ, ପାଣିରେ ଭାସିଯିବ ।

କିଛି ରହିବନି ଚିହ୍ନବର୍ଣ୍ଣ । ପଞ୍ଚଭୂତ ଭିତରେ ଲୀନ ହୋଇଯିବ । ସମସ୍ତ ରକ୍ତମାଂସଧାରୀ ମଣିଷ ଜୀବନର ଏଇ ଶେଷ ପରିଣତି ।

ଅଥଚ ମାଳଅପା ସାଧାରଣ ନ ଥିଲା । ତାଙ୍କ ଆଖିରେ ତ ସେ ସମସ୍ତଙ୍କଠୁ ଭିନ୍ନ, ଅଲଗା ଥିଲା । ଚେହେରାରେ ନୁହେଁ ଗୁଣରେ, ବିଋରରେ । ତା' ଭିତରେ ଲୁଚି ରହିଥିବା ଅସାଧାରଣ ବ୍ୟକ୍ତିତ୍ୱ ହିଁ ଥିଲା ତା' ନିଜ ପରିଚୟ । ସଂସାର ତାକୁ ଯୋଉ ଆଖିରେ ଦେଖୁ ଯାହା ବି କହୁ ତାଙ୍କ ଆଖିରେ କିନ୍ତୁ ସେ ମା' ନ ହୋଇ ବି ମା'ଟିଏ ଥିଲା - ବସୁଧା ଭଳି । ବଡ଼ମାପର । ସଜଳେନ୍ଦୁଙ୍କ ଆଖି ଆଗରେ ନାଚିଉଠିଲା ମାଳଅପାର ଦୁର୍ବଳ ପାଞ୍ଚଫୁଟ ତିନିଇଞ୍ଚର ଚେହେରାଟିଏ । ଗୋରା ନୁହେଁ କଳା ନୁହେଁ, ସ୍ନିଗ୍ଧ ମିଠାରଂଗ, ପାନପତ୍ର ଭଳି ମୁହଁ, ଲମ୍ୱା ନାକ ଲହଡ଼ି ଖେଳିଲା ଭଳି ମୁକ୍ତବାଳ । ଆଉ ଆଖି ଦି'ଟା, ଦେବୀ ସରସ୍ୱତୀଙ୍କ ଭଳି ନମ୍ର, ଶାନ୍ତ, ସଂଗୀତମୟ, ଭାବବିଭୋର ନୀଳକଇଁଟିଏ ସତେକି !

ଅଥଚ ସେଇ ଆଖିରେ ଅଖଣ୍ଡ ଆତ୍ମବିଶ୍ୱାସର ସ୍ଥିରତା, ସମସ୍ତଙ୍କ ପାଇଁ ଅଭୟପଣ - କିଛି ଚିନ୍ତା ନାହିଁ ମୁଁ ତ ଅଛି ତମ ପାଖେପାଖେ ସମ୍ଭାଳି ନେବିନି... ଆଉ ଏ ପାଖରେ ଠିଆ ହେଇଥିବା ବିକଳବ୍ୟସ୍ତ ମଣିଷମନରେ ଦମ୍ଭ ଆଣ୍ଟ ବାନ୍ଧୁଥିବ । ସାହସ ଜମି ଆସୁଥିବ ନିଶ୍ଚିନ୍ତପଣଟିଏ ପଦ୍ମାସନ ପକେଇ ବସିଯିବାକୁ ସଜାଡ଼ି ହେଉଥିବ ... "ଅଛି ତ ମାଳଅପା ମୋର, ସେ ବୁଝିବନି କି ।" ସେତିକିରେ ପ୍ରସନ୍ନତା ଚହଟି ଯାଉଥିବ ମାଳଅପା ମୁହଁରେ ଦିଗୁଣ ଉତ୍ସାହରେ ସେ ଲାଗିପଡ଼ିବ କାମରେ ଏଭାରେଡ଼ି ବ୍ୟାଟେରୀ ଭଳି । ମାଳଅପା ମୁହଁଟା କ୍ରମଶଃ ଅସ୍ପଷ୍ଟ ହୋଇଯାଉଛି, କିମିତି ବିବର୍ଣ୍ଣ ଅଙ୍ଗାରିଆ ... ଆହା, କି ସୁନ୍ଦର ତା' ମୁହଁର ମିଠାହସ, ସବୁବେଳେ ଯିମିତି ଲାଖି ରହିଥାଏ । ତା'ର ଦୁଃଖ ବୋଲି ଯିମିତି କିଛି ନାହିଁ । ସଭିଙ୍କ ମନକୁ କିଣିନେଲା ଭଳି ହସ ଖଣ୍ଡେ ।

ମୋଟାମୋଟି ଭାବେ କହିଲେ ବାଡ଼ିଅଗଣାରେ ଲଟେଇ ପଡ଼ିଥିବା ତମାଳ ଲତାରେ ଫୁଟିଥିବା ଶ୍ୱେତ ତମାଳଟିଏ, ଦିବ୍ୟଚେତନାର ପ୍ରତୀକ ! ନ ହେଲେ ଏଡ଼େଟିକିଏ ମଣିଷର ଏତେବଡ଼ ହୃଦୟ କିମିତ ହୁଅନ୍ତା । ସଭିଙ୍କର ପ୍ରିୟପାତ୍ର ହୁଅନ୍ତା କିମିତି ! କୃଷ୍ଣାପିଇସୀ ବାଛି ବାଛି ନାଁ ଦେଇଥିଲେ ସତେ । "ରାଧା ତମାଳ... ଅର୍ଥାତ ସମସ୍ତଙ୍କ ମାଳ ଅପା ଆଉ ନାହିଁ ଦମ୍ଭ ଦେବାକୁ, ସାହସ ବାଣ୍ଟିବାକୁ, ବିପଦ ଆପଦରେ ଛାତି ପତେଇବାକୁ, ସୁଖଦୁଃଖରେ ଭାଗ ନେବାକୁ, ଆଖି ଲୁହ ପାଇଁ ପଣତ ବଢ଼େଇବାକୁ । ପାଞ୍ଚବର୍ଷ ହୋଇଯିବ, ବିଛଣା ଧରିଥିଲା, ପକ୍ଷାଘାତ ତାକୁ କାବୁ କରି ନେଇଥିଲା । ଆଉ ଏଇ କିଛି ମାସ ଧରି ସେ ମହାନିଦ୍ରାରେ ଶୋଇ ଯାଇଥିଲା । ସମସ୍ତେ ଜାଣିବାକୁ ସେ ବଞ୍ଚିଥିଲା ... ନିଃଶ୍ୱାସ ନେଉଥିଲା 'ବର୍ତ୍ତମାନ' ହୋଇ । ଅଥଚ ସେଇ ବଂଚିବାର ମାନେ କିଛି ନଥିଲା । ସମଗ୍ର ଶରୀର କତରାଲଗା ହୋଇ ଘା'ରେ ସଡ଼ି ଆସୁଥିଲା । ସ୍ନାୟୁମାନେ ନିଷ୍କ୍ରିୟ ଅଥର୍ବ ପାଲଟି ଯାଇଥିଲେ ବୋଲି, ନହେଲେ ଯନ୍ତ୍ରଣା ଭିତରେ ଛଟପଟ ହେଉଥାନ୍ତା ମାଳଅପା । ଏହା ତା'ପାଇଁ ଈଶ୍ୱରୀୟ କରୁଣା ବୋଲି ହିଁ ସେ

ଭାବୁଥିଲେ । ହେଲେ ଏଇ ଯନ୍ତ୍ରଣାକ୍ଲିଷ୍ଟ ଦିନମାନଙ୍କରେ ସେମାନେ କେହି ମାଳଅପା ପାଖରେ ନଥିଲେ - ସେବା କରିବାକୁ, ଋଣମୁକ୍ତ ହେବାକୁ । ସବୁ କର୍ତ୍ତବ୍ୟ, ଦାୟିତ୍ୱ ସେବାର ଭାର ସୁବୋଧ ହିଁ ତୁଲାଇ ଥିଲା ।

ସଜଳେନ୍ଦୁ ଦୀର୍ଘଶ୍ୱାସ ଛାଡ଼ିଲେ । ହୁଏତ ମାଳଅପାର ଯନ୍ତ୍ରଣାକୁ ନିଜ ଭିତରେ ଅନୁଭବ କରି ଅସ୍ଥିର ହୋଇ ଉଠୁଥିଲେ ସେ । ଏଥର ତାଙ୍କ ଆଖି ସ୍ୱର୍ଗଦ୍ୱାରର ଚତୁଃପାର୍ଶ୍ୱକୁ ବୁଲିଗଲା । ଆହୁରି ଦି'ତିନିଟା ଜୁଇ ଜଳୁଥିଲା ଏପାଖ ସେପାଖରେ । ଉଷ୍ଣ ହୋଇ ଉଠିଥିଲା ବାତାବରଣ । ତା' ସହିତ ସମୁଦ୍ରପବନ ସେଇ ପୋଡ଼ା ମାଉଁସର ଆଇଁଷିଣିଆ ଗନ୍ଧକୁ ଆଖପାଖରେ ବାଣ୍ଟି ଚାଲିଥିଲା । ଶୋକସନ୍ତପ୍ତ ଆତ୍ମୀୟସ୍ୱଜନ ଚିତାଗ୍ନିଠାରୁ ଦୂରତ୍ୱ ରକ୍ଷାକରି ଗପ ଜମେଇଥିଲେ । ହୁଏତ ଜଳୁଥିବା ଆତ୍ମାମାନଙ୍କ ସଂପର୍କରେ ଗୁଣ ଅବିଗୁଣକୁ ନିଜନିଜ ଢଙ୍ଗରେ ପରସ୍ପର ମଧ୍ୟରେ ବାଣ୍ଟି ନେଉଥିଲେ ଚିରାଚରିତ ରୀତିରେ ଅଥବା ନିଜ ନିଜର ପାରିଲାପଣର ବାହାଦୁରି ଗାଉଥିଲେ, କେଜାଣି, ପଢ଼ି ମଧ୍ୟ ପଢ଼ିହେଉ ନଥିଲା । ସେଇ ସବୁ ମୁହଁର ଭାଷା ଭାବକୁ । ଆଉ ସମୁଦ୍ର ତାର ଅସୀମତାକୁ ଜାହିର କରି 'ସବୁ ମିଛ, ସବୁ ଅନିତ୍ୟ'ର ଉଦ୍‌ଘୋଷଣା କରି ମୁଣ୍ଡ ପିଟୁଥିଲା ଅହରହ ବାଲୁକାବେଳାରେ ।

ସଜଳେନ୍ଦୁ ଚାହିଁଥିଲେ ନିର୍ନିମେଷ ନୟନରେ ଭସ୍ମୀଭୂତ ହୋଇ ଯାଉଥିବା ମାଳଅପାର ଚିତାଗ୍ନିକୁ । ହଠାତ୍ ତାଙ୍କ ଆଖି ନିର୍ମମ ଦୃଶ୍ୟଟିଏ ଦେଖି ସ୍ଥିର ହୋଇଗଲା । ଟିକିଏ ଦୂରରେ ଠିଆ ହୋଇଥିବା ମଡ଼ାଚଣ୍ଡିଆ ନବଘନ ହାତରେ ମୋଟା ବାଉଁଶଟିଏ ଧରି ଆଗେଇ ଆସିଲା ଜୁଇ ପାଖକୁ । ଅଂଗାର ପାଲଟି ଯାଉଥିବା ମାଳଅପାର ଶରୀର ଉପରେ ଦି'ଚାରିଥର କେଞ୍ଚାମାରି ଆଘାତ କଲା ଏବଂ ସେଇ ପ୍ରକ୍ରିୟା ବାରଂବାର ଚାଲିଲା । ଥରି ଉଠିଲେ ସଜଳେନ୍ଦୁ । ଆହା ! କେତେ ଆଦରର ମାଳଅପା ତାଙ୍କର - କେତେ ସ୍ନେହର ଆଉଁଶା ବାଣ୍ଟିଛି ତା'ର ଏଇ ହାତ ଦି'ଟା, କେତେ ଆଖିରୁ ଲୁହ ପୋଛିଛି । ଅଥଚ ଆଜି ସେ ଆଖି ବୁଜି କିଛି ଦେଖୁନି ବୋଲି, ଲୋକଟା ଆଘାତ ପରେ ଆଘାତ କରିଚାଲିଛି । ବଞ୍ଚିଥିଲା ବେଳେ ବି ସେ କେବେ କିଛି ପ୍ରତିବାଦ କରିପାରୁନଥିଲା, ଆଉ ଆଜି ... ସଜଳେନ୍ଦୁ ସହିପାରିଲେନି ଏଇଦୃଶ୍ୟକୁ, ଧାଇଁଗଲେ ଜୁଇପାଖକୁ । ନବଘନ ହାତର ବାଉଁଶକୁ ଧରି ଅଟକେଇ ଦେଇ କହିଲେ, ଏତିକି ଥାଉ ଭାଇ... ମୋ' ମାଳଅପାକୁ ଖୁବ୍ କଷ୍ଟହେବ - ଏତେ ନିଷ୍ଠୁର ହୁଅନା..., ଆଖିରୁ ଲୁହ ଝରି ଆସୁଥାଏ, କଣ୍ଠ ରୁଦ୍ଧ ଅବସ୍ଥା, ତଥାପି କହୁଥାନ୍ତି, କ'ଣ ଅଛି ଏଇ ଦେହଟାରେ ଆଉ, ସବୁ ତ ସାରି ଦେଇଛି ଆମମାନଙ୍କ ପାଇଁ ... ବାକି ଯାହା ଥିଲା ତାହା ତ ଅଗ୍ନି ଗ୍ରାସି ଦେଲାଣି... ।

ହଠାତ୍ ନବଘନ ଚମକି ପଡ଼ିଲା ନିଜ ଭିତରେ, ଇଏ କି ବିଚିତ୍ର କଥା ! ଖେଞ୍ଚିବା ଛାଡ଼ି ଠିଆ ହୋଇଗଲା, ଆଶ୍ଚର୍ଯ୍ୟ ହୋଇ ଚାହିଁଲା ମୁହୂର୍ତ୍ତେ ବାବୁଙ୍କ ମୁହଁକୁ । ଭାବିଲା, ବାବୁଜଣକ କ'ଣ ପାଗଳ ! କୌଣସି ପୁରୁଷ ଏମିତି ଅଥୟ ହେବା ତ ଦେଖିନି । ଦୁଃଖ ତ ଅଛି, ଯିଏ ଆପଣାମଣିଷକୁ ହରେଇଛି... ଦୁଃଖ ତ ଅଛି । ହେଲେ ଏତେ ଦରଦ, ଏତେ ଯନ୍ତ୍ରଣାର ଲୁହ

ତ ସେ ଦେଖିନି । କେତେ ମଡ଼ା ପୋଡ଼ିଛି, ହେଲେ ଏଇ ପ୍ରଥମ ଘଟଣା ଯିଏ ପାଉଁଶ ହୋଇ ଯାଉଥିବା ମଲା ମଣିଷ ପାଇଁ ନିଜ ଭିତରେ ଏତେ କଷ୍ଟକୁ ଅନୁଭବ କରି ଛଟପଟ ହେଉଥିବା ମଣିଷ ।

ଅଥଚ ସେ ଦେଖିଛି, ମଡ଼ା ପୋଡ଼ି ଆସିଥିବା ମଣିଷଙ୍କୁ କେତେ ନିଃସ୍ପୃହ ତାଙ୍କ ବିଷୟରେ । ଯିଏ ମଲା ସିଏ ଗଲା । ତା' ପାଇଁ ସ୍ନେହ ଗଡ଼େଇ ଲାଭ ନାହିଁ । କାମ ସାରିବାକୁ ହେବ । ଟିକିଏ ବିଳମ୍ବ ହେଲେ କହିବେ, ଦିଅହେ ଆଉ ଟିକିଏ ଘିଅ ଢାଳି ଦେଉନା । 'ଶୀଘ୍ର ନିଆଁ ଧରିବ ହୁତୁହୁତୁ ହୋଇ କାମ ସରିଲେ ଶୀଘ୍ର ଯିବା ।' ଉତ୍ତର ଦେଇଛି ସେ, ଏତେ ଅଥୟ କାହିଁକି ଆଜ୍ଞା । ଜୀବନଟା ଯାକର ଖରା କାକରରେ ପାକଳ ହେଇ ଶକ୍ତ ହୋଇଛି - ଏଇ ଦେହ ଝଡ଼ ବତାସକୁ ଛାତି ପତେଇ ପରା ଲୁହା ଠୁ ଟାଣ ହୋଇଛି, ଏଡ଼େ ଶୀଘ୍ର ଭସ୍ମ ହୋଇଯିବ । ଆତ୍ମାଟା ସିନା ପବନ ହୋଇ ଆଖି ପିଛୁଳାକେ ଫୁର୍ ହୋଇ ଉଡ଼ିଗଲା, ହେଲେ ତାକୁ ଯିଏ ସାଇତି ସଜାଡ଼ି ରଖିଥିଲା, ସିଏ କ'ଣ ଏମିତି ସେମିତି । ଆତ୍ମାପୁରୁଷର ଘର ପରା ସମୟ ଲାଗିବ ପାଉଁଶ ହେବାକୁ, ମାଟିରେ ମିଶିବାକୁ... ଏଡ଼େ ସହଜ ନୁହେଁ ଆଜ୍ଞା । ମନକୁ ମନ କୁହେ, ବଞ୍ଚିଥିଲା ବେଳେ ମଣିଷଟା କେତେ କଷ୍ଟ କରିଥିବ ପିଲାଙ୍କ ପାଇଁ ପରିବାର ପାଇଁ ... ଏଇ ତ ଶେଷ କର୍ତ୍ତବ୍ୟ ତମର ... ଅପେକ୍ଷା ଟିକେ କରିପାରୁନ । ବାଧା ଲାଗୁଛି ... କ'ଣ ନା କାମ ସାରିବା । ଧନ୍ୟ ମଣିଷ ! ହେଲେ ପାଟିଖୋଲି କହି ପାରେନା, କ'ଣ ଭାବିବେ କାଳେ... କିନ୍ତୁ ଏ' ମଣିଷଟା ନିଆରା । ଭାବୁଭାବୁ ନବଘନ ସଜଳେନ୍ଦୁଙ୍କ ମୁହଁକୁ ଏକା ଲୟରେ ଚାହିଁଲା । କେତେ ଦରଦ ବୋଳି ହୋଇଥିଲା ସେଇ ମୁହଁରେ ଯେ ତା' ଭଳି ପଥର ମନକୁ ବି ତରଳେଇ ଦେଲା । ଭାବାନ୍ତର ଆଣିଦେଲା ମନରେ ତା'ର ।

କାନ୍ଧ ଗାମୁଛାରେ ଦେହ ମୁହଁରୁ ଝାଳ ପୋଛୁ ପୋଛୁ କହିଲା– ମୁଁ ଜାଣୁଛି ବାବୁ, ବୁଝିପାରୁଛି ଆପଣଙ୍କ ମନକୁ, ଛାତି ଭିତରେ ଅନେକ କଷ୍ଟ ଜମି ରହିଛି । ପ୍ରିୟ ମଣିଷକୁ ହରେଇବାର ଯନ୍ତ୍ରଣାକୁ କେହି ମାପି ପାରେନା । ହେଲେ ବାବୁ, ମୁଁ ତ ମୂର୍ଖ ମଣିଷ କ'ଣ ବୁଝେଇବି ଆପଣଙ୍କ ଭଳି ଜ୍ଞାନୀମାନଙ୍କୁ । ମୋ କାମ ହିଁ ଏଇୟା । ଏଇ ପ୍ରାଣହୀନ ଶରୀରକୁ ପାଉଁଶ କରି, ପଞ୍ଚଭୂତରେ ମିଶେଇଦେବା । ମୁଁ ବି ମଣିଷଟିଏ, ନିଷ୍ଠୁର ନୁହେଁ । ମୋର ହୃଦୟ ଅଛି ବାବୁ । ମଲା ମଣିଷ ପାଇଁ ମୋର ସମ୍ମାନ ଅଛି ମଧ୍ୟ । ଈଶ୍ୱରଙ୍କ ଅନୁମତି ଲୋଡ଼ି ମୁଁ ଏଇ କର୍ତ୍ତବ୍ୟ କରୁଛି । ତା' ଛଡ଼ା ଇଏ ତ ମାଟିର ଶରୀର । ଆତ୍ମାପୁରୁଷ ଆଉ ଅଛି ଯେ, କଷ୍ଟ ହେବ ତାକୁ । ବଞ୍ଚିଥିଲା ବେଳେ ତାକୁ ଯେତିକି ଶ୍ରଦ୍ଧାର ସହିତ ସୁରକ୍ଷା ଦେବାକୁ ହୁଏ, ସେବା କରିବାକୁ ହୁଏ, ମଲାପରେ ବି ତାକୁ ସମ୍ମାନର ସହିତ ପଞ୍ଚଭୂତରେ ମିଶେଇବାକୁ ହୁଏ । ପାଉଁଶ କରିବାକୁ ପଡ଼େ ।

"ମୁଁ ଜାଣୁଛି ଭାଇ, ମୁଁ ବି ତ ଜଣେ ଡାକ୍ତର । ମଣିଷ ଶରୀର ସହିତ ଜଡ଼ିତ । ତଥାପି ସହିପାରୁନି, କଷ୍ଟ ଲାଗୁଛି । ଆମ ଦେହରେ ଫୁଲ ପଡ଼ିଲେ ତା'ଦେହରେ ପଥର ପଡୁଥିଲା ।

ପଣତ ତଳେ ଘୋଡ଼େଇ ରଖିଥିଲା ଆମକୁ ମା' ଭଳି, ଆଉ ଆଜି ..." କଣ୍ଠରୁଦ୍ଧ ହୋଇଆସିଲା ତାଙ୍କର । ସେତେବେଳକୁ ଗପ ଜମେଇଥିବା ଦି'ତିନିଜଣ ଆତ୍ମୀୟ ଆସି ପହଞ୍ଚି ଯାଇଥିଲେ ପାଖରେ । ସେମାନଙ୍କ ଆଖିରେ ବି ବିସ୍ମୟ ! କ'ଣ ହେଲାରେ ସଜଳ ? କିଛି ଅସୁବିଧା ହେଲା ?

ନବଘନ ଉତ୍ତର ଦେଲା, "ନାହିଁ ବାବୁ... ଦୁଃଖରେ ଭାଙ୍ଗି ପଡୁଛନ୍ତି ବାବୁ ତ... ।" "ଆରେ ସଜଳ... ତୁ ପରା ଡାକ୍ତର । ମଣିଷ ଜୀବନର ଶେଷ ପରିଣତି ସଂପର୍କରେ ତୋ ଠୁ କିଏ ବେଶି ଜାଣେ । ଦୁଃଖ କରନା - ମାଳଅପା ଯିବାର ଦୁଃଖ ତ ଆମ ସମସ୍ତଙ୍କ ପାଇଁ ଅଛି । ନବଘନକୁ ତା' କାମ କରିବାକୁ ଦେ... ଅନେକ ଡେରି ହେଲାଣି, ସଂଜ ହୋଇଯିବନା... ।" କହି ପୁଣି ନିଜ ଗପରେ ମଜ୍ଜିଗଲେ ଘଲ୍ ଘଲ୍ ହୋଇ ।

ସଜଳେନ୍ଦୁ ଛାତିକୁ ପଥର କଲେ । ମନକୁ ବୁଝେଇଲେ ଲମ୍ବା ଲମ୍ବା ନିଃଶ୍ୱାସ ନେଇ । ଭାବିଲେ କେତେ ବଡ଼ବଡ଼ ଅପରେସନ ସେ କରିଛନ୍ତି । ମଣିଷ ଜୀବନକୁ ଦେଖିଛନ୍ତି ନିକଟରୁ, ମୃତ୍ୟୁକୁ ଭେଟିଛନ୍ତି ବାରଂବାର । ଆତ୍ମୀୟମାନଙ୍କୁ ଆଶ୍ୱାସ ବାଣୀ ଶୁଣେଇଛନ୍ତି ଅଥଚ ଆଜି ମାଳଅପା ପାଇଁ ସେ ଏମିତି ଦୁର୍ବଳ ହେଇଗଲେ କିମିତି କେଜାଣି । ନବଘନ ମଡ଼ାଚଣ୍ଡିଆ କ'ଣ ଭାବିଥିବ ! ପିଲାଙ୍କ ଭଳି ବ୍ୟବହାର ଦେଖି ସେ ହସିଥିବ ମନେମନେ ।

ସତରେ ବି ସେ ପିଲାଟିଏ ମାଳଅପା ଆଗରେ । ଏଥର ଦୃଷ୍ଟି ସମୁଦ୍ର ଉପରେ ସ୍ଥିର ହେଲା । ସୂର୍ଯ୍ୟଙ୍କର ପଶ୍ଚିମାଗତି ଆରମ୍ଭ ହେଲାଣି - ତେଜ କମି ଆସୁଛି । ତରଙ୍ଗ ଦୋଳିରେ ଦୋହଲି ଉଠୁଥିଲା ସୂର୍ଯ୍ୟକିରଣ । ଚେତନା ଫେରି ଯାଉଥିଲା ପଛକୁ... ପିଲାଦିନର ... ସେଇ ଛୋଟ ସହରକୁ... ସେଠି ଛୋଟ ଦିବଖୁରିଆ ଘର-ଆଜବେଷ୍ଟସ୍‌ର । ବାପା ବିମଳେନ୍ଦୁ ରାୟ ଚୌଧୁରୀଙ୍କ ଛୋଟ ପରିବାର । ପୁଅ ସୁଖେନ୍ଦୁ ଓ ସଜଳେନ୍ଦୁ, ଝିଅ ଶୁଭଦା । ଶୁଭଦାର ଜନ୍ମ ପରେ ପରେ ମା'ଙ୍କର ଦେହାନ୍ତ ହୋଇ ଯାଇଥିଲା । ସେତେବେଳକୁ ତାଙ୍କ ନିଜ ବୟସ କେତେ ବା ହୋଇଥିବ । ସେ ଶୁଣିଛନ୍ତି ଏସବୁ ବାପାଙ୍କ ଠୁ-ସଂସାର ଚଳେଇବା ଅସମ୍ଭବ ହୋଇପଡ଼ିଲା ବାପାଙ୍କ ପାଇଁ । ଶୁଭଦା ଖୁବ୍ ଛୋଟ । ପରିବାର ଭିତରେ ସେଭଳି କେହି ନଥିଲେ ତାଙ୍କ ଘରକୁ ଚଳେଇନେବା ଭଳି । ବାପାଙ୍କର ଗୋଟିଏ ମାତ୍ର ଭଉଣୀ କୃଷ୍ଣା । ତାଙ୍କର ମଧ୍ୟ ଅକାଳ ମୃତ୍ୟୁ ଘଟିଥିଲା; ତାଙ୍କରି ଝିଅ ଏଇ ମାଳଅପା, ଗୋଟିଏ ବୋଲି ।

ପିଇସା ପୁଣି ଥରେ ଦ୍ୱିତୀୟ ବିବାହ ପାଇଁ ମନସ୍ଥ କଲେ । ସେଇ କାରଣରୁ ହୁଏତ ତାଙ୍କ ଘରେ ମାଳଅପାକୁ ନେଇ କିଛିଟା ଖୁଟ୍‌ଖାଟ୍ ଆରମ୍ଭ ହୋଇଥିଲା । ବାପା ଆଉ କିଛି ନ ଭାବି ଝିଆରୀ ତମାଳକୁ ଘରକୁ ନେଇ ଆସିଥିଲେ । ସେତେବେଳକୁ ତା'ର ବୟସ ବାରବର୍ଷ । ବାସ୍ - ସେଇଦିନରୁ ମାଳଅପା ଘରର ବଡ଼ଝିଅର ମାନ୍ୟତା ନେଇ ଆମ ଘରେ ଚଳି ଆସିଛି । ଘର ଚଳେଇବାରେ ବାପାଙ୍କୁ ସାହାଯ୍ୟ କରିଛି - ଆମକୁ ସମ୍ଭାଳିଛି । ତାଙ୍କର ହେତୁ ହେବା ଦିନୁ ମାଳଅପାକୁ ନିଜ ବଡ଼ ଭଉଣୀ ବୋଲି ଜାଣିଆସିଛନ୍ତି । କେବଳ ସେତକ ନୁହେଁ, ତାର

ନିଛକ ସ୍ନେହରେ ମା'ର ଅଭାବ ଭୁଲି ଯାଇଥିଲେ ମଧ ତିନି ଭାଇ ଭଉଣୀ ।

ସେଇସବୁ ଦିନମାନଙ୍କର ସ୍ମୃତି ଭୁଲିବାର ନୁହେଁ । ବୟସ ବଢ଼ିବା ସହିତ ତାଙ୍କ ଚେତନା ଭିତରେ ମାଳଅପା ବଡ଼ଭଉଣୀର ଆସନରେ ବସିଛି ଯେ ବସିଛି । ସେ ଓ ସୁଖେନ୍ଦୁ ସ୍କୁଲକୁ ଗଲେ, ମାଳଅପା ବି ଗଲା । ମାଳ ଅପା ସପ୍ତମଶ୍ରେଣୀରେ ବସିଲା, ସେତେବେଳକୁ ସେ ଶାଢ଼ି ପିନ୍ଧୁଥିଲା । ତା'ର ପଢ଼ିବାକୁ ଖୁବ୍ ଇଚ୍ଛା ଥିଲା । ହେଲେ ଘରଟା ଯାକର କାମ କରି ପଢ଼ାପଢ଼ି ପାଇଁ ସମୟ ହିଁ ପାଉନଥିଲା । ସିଲାଇ କରୁଥିଲା । କାହା ଦେହ ଖରାପ ହେଲେ ସେବାଯତ୍ନ କରୁଥିଲା । ଶୁଭଦା ତ ସାନ ଥିଲା, ଅଝଟିଆ ଥିଲା, ତାକୁ ସମ୍ଭାଳୁଥିଲା । ଯଦିଓ ବାହାର କାମ କରିବାକୁ ଜଣେ ସ୍ତ୍ରୀଲୋକ ଆସୁଥିଲା । ତେବେ ବି ଚରଖି ଭଳି ବୁଲୁଥିଲା ମାଳଅପା ସକାଳୁ ରାତି ପର୍ଯ୍ୟନ୍ତ । ଭାରି ନିରଳସ । ବାପା କ୍ରମଶଃ ନିଶ୍ଚିନ୍ତ ହୋଇଯାଇଥିଲେ । ଆଜି ଭାବିଲାବେଳକୁ ଚକିତ ଲାଗୁଥିଲା ସଜଳେନ୍ଦୁଙ୍କୁ ।

ସେଇ ଟାଣଟୁଣ ପରିସ୍ଥିତି ଭିତରେ ହିଁ ମାଳଅପା ମାଟ୍ରିକ୍ ପାସ୍ କରି ଘରେ ରହିଲା । ଆଉ ପଢ଼ିବାକୁ ଋହିଁଲାନି ତା'ଆଡୁ । କାରଣ ବାପା ଖୁବ୍ ବଡ଼ ଋକିରିଆ ନଥିଲେ । ବ୍ଲକ୍ ଅଫିସ୍‌ର କିରାଣୀ । ସେ ଓ ସୁଖେନ୍ଦୁ ସ୍କୁଲ ଛାଡ଼ି କଲେଜ ଗଲେ । ଶୁଭଦା ବି ପଢ଼ିଲା । ମାଳଅପା ଖୁବ୍ ବିବେକୀ ବିଋରବନ୍ତ ଝିଅ । ତା'ଛଡ଼ା ତା'ପାଇଁ କିଏ କେବେ ଗୁରୁତ୍ୱ ଦେଇ ଭାବିନି । ଘର ତ ଚଳୁଛି, ଘରଝିଅ ତ ଘରେ ଅଛି । ତା'ମନ କଥା ବୁଝିବାକୁ ବାପା ବି ହୁଏତ ଚିନ୍ତା କରି ନାହାନ୍ତି । ସେ ନିଜେ ଭଲ ପଢ଼ି ସ୍କଲାରସିପ୍ ପାଇଲେ, ମେଡ଼ିକାଲ ପଢ଼ିବାକୁ ଋହିଲେ । ସୁଖେନ୍ଦୁ ଏମ୍.ଏ. କଲା, ଶୁଭଦା ବି.ଏ. ପଢ଼ିଲା । ମାଳଅପା ସବୁଠୁ ବେଶି ଖୁସି ହେଲା । ଯୋଉଦିନ ଶୁଭଦା ୟୁ.ପି ସ୍କୁଲରେ ଟିଚର ହୋଇ ଯୋଗଦେଲା ତାଙ୍କର ମନେ ଅଛି; ମାଳଅପାର ଆନନ୍ଦ କହିଲେ ନସରେ, ସକାଳୁ ଉଠି ଗାଧେଇପାଧେଇ କାଳୀମନ୍ଦିରରେ ପେଡ଼ାକଦଳୀ ଭୋଗ ଲଗେଇ ଶୁଭଦାର ସଫଳତା ପାଇଁ ଶୁଭକାମନା କରିଥିଲା । ମିଠା ଖୁଆଇଥିଲା ସମସ୍ତଙ୍କୁ । ସତେ ଯେମିତି ତା'ର ସ୍ୱପ୍ନ ଫଳବତୀ ହୋଇଛି । ମାଳଅପାର ମନ ଖୁବ୍ ବଡ଼ । ସତ କହିଲେ ବଡ଼ମାପର ମଣିଷଟିଏ ଥିଲା । ତା' ଆଗରେ କେହି ପାସଙ୍ଗରେ ପଡୁନଥିଲେ ।

ସେ ଯେତେବେଳେ ମେଡ଼ିକାଲ ପଢ଼ିଲେ, ସୁଖେନ୍ଦୁ ଏମ୍.ଏ. କରିବାକୁ ଋହିଁଲା ଦୁହେଁ ରହିଲେ ହଷ୍ଟେଲରେ । ପଢ଼ାଖର୍ଚ୍ଚ ସହିତ ହଷ୍ଟେଲ ଖର୍ଚ୍ଚ ତୁଲେଇବା ପାଇଁ କଷ୍ଟ ହେଲା ବାପାଙ୍କୁ । ହେଲେ ମାଳଅପା ହାରିଲାନି । କହିଲା, ସେ ଘର ଖର୍ଚ୍ଚ ତୁଲେଇବ, ତମେ ଭାଇମାନଙ୍କ ଖର୍ଚ୍ଚ ତୁଲାଅ । ସେତିକିବେଳେ ମାଳଅପା ଆଗେଇ ଆସିଲା ସିଲେଇ କରିବ ବୋଲି । ପିଲାଙ୍କ ଜାମା ପୋଷାକ ତିଆରି କଲା । ଏମିତିକି ସଂଧ୍ୟାବେଳେ ଘଣ୍ଟାଏ ଦେଢ଼ଘଣ୍ଟା କରି ପ୍ରଥମରୁ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପିଲାଙ୍କୁ ଟ୍ୟୁସନ୍ ବି କଲା । ବାପାଙ୍କୁ କେବେକେବେ ମାଡ଼ିପଡ଼ିଲେ କୁହନ୍ତି 'ନିଜ ଖର୍ଚ୍ଚ ପାଇଁ କିଛି ସଂଚୟ କର ମାଳ ସବୁ କାହିଁକି ଘରେ ଲଗେଇ ଦେଉଛୁ ।'

ମାଳଅପା କିନ୍ତୁ ହସି ହସି ଆଡ଼େଇ ଦିଏ ତାଙ୍କ କଥାକୁ – ଦି'ଦିଟା ଭାଇ ମୋର ଅଛନ୍ତି ଯେତେବେଳେ, ସଂଚୟ କରିବି କାହିଁକି ନିଜ ପାଇଁ ? ଏକଥା ମନେ ପକେଇବାକୁ ଯାଇ ସଜଳେନ୍ଦୁଙ୍କୁ ମାଡ଼ି ପଡ଼ିଲା । ମାଳଅପାର ଅଖଣ୍ଡ ଭରସା ଥିଲା ତାଙ୍କ ଉପରେ ଅଥଚ ସେମାନେ ମାଳଅପାର ଭରସା ପ୍ରତି ସମ୍ମାନ ଦେଖାଇ ନାହାନ୍ତି କେବେ । ନିଜ ନିଜ ସ୍ୱାର୍ଥ ହିଁ ବଡ଼ ଦିଶିଛି । ମାଳଅପାର ଯେ ମନ ବୋଲି ଗୋଟାଏ କିଛି ଥିବ, ସେ କଥା କାହାର ମନେ ହିଁ ପଡ଼ିନି । ତା'ର ବାହା ହେବା ବୟସ ଉତ୍ତୀର୍ଣ୍ଣ ହୋଇଯାଉଥିଲା, ଅଥଚ ସେ ଓ ସୁଖେନ୍ଦୁଙ୍କ ଜୀବନ ଭିତରକୁ ଶ୍ରେୟା ଓ ସୁମନା ଆସି ସାରିଥିଲେ । ଶୁଭଦାର ବାହାଘର ପାଇଁ ବ୍ୟବସ୍ଥା ହେଉଥିଲା ଅଥଚ ମାଳଅପା କଥା କେହି ଭାବିନଥିଲେ । ଆଉ ମାଳଅପା ବି ଏ ସଂପର୍କରେ କେବେ କିଛି ସୁରାକ ବି ଦେଇନି, ଯେମିତି ସେ ମା'ଟିଏ – ସେ ଖାଲି ଆମପାଇଁ ଭାବିଛି । ଅବଶ୍ୟ ଶୁଭଦାର ବାହାଘର ହୋଇ ପାରିଲାନି । ବାପା ହଠାତ୍ ବିଛଣା ଧରିଲେ । ପାରାଲିସିସ୍ । ଅବସର ନେବାକୁ ବର୍ଷେ ଥିଲା, ବାପା ଚାଲିଗଲେ ଆରପାରିକୁ । ବହୁ ବିଳମ୍ବରେ ଶୁଭଦା ସଂସାର କଲା ।

ହେଲେ ମାଳଅପା... ଆମ ସମସ୍ତଙ୍କ ପାଇଁ ଧନ୍ଦି ହେଉ ହେଉ ନିଜ ଇଚ୍ଛା, ନିଜ ସ୍ୱପ୍ନ, ନିଜ ଭବିଷ୍ୟତ କଥା ଭୁଲିଗଲା । ସମୟ ତା' ତୂଳୀରେ ମାଳଅପା ମୁଣ୍ଡରେ ଧଳାରଂଗ ଛୁଆଁଇବାକୁ ଆରମ୍ଭ କଲା । ଆହା ! ସଜଳେନ୍ଦୁଙ୍କ ଛାତି ଭିତରଟା କୋରି ହୋଇଗଲା ଭାବୁ ଭାବୁ ଅପରାଧବୋଧର ଭାରରେ ଓଜନ ଲାଗିଲା ମୁଣ୍ଡ ଭିତରଟା ।

ସ୍ୱର୍ଗଦ୍ୱାର ଭିତରକୁ ନୂଆ ଶବ ଆସିଲା ବୋଧେ । 'ରାମନାମ ସତ୍ୟ ହୈ'ର ଚିରନ୍ତନ ଡାକ ଦେଇ ପଶିଆସିଲେ ଶବବାହକ ଦଳ । ଆର ପାଖକରେ କାହାର ପଥଶ୍ରାଦ୍ଧ ଚାଲିଥିଲା । ମନ୍ତ୍ରୋଚ୍ଚାରଣର ଗୁରୁଗମ୍ଭୀର ଧ୍ୱନି ପବନରେ ଭାସି ଆସୁଥିଲା । ସଜଳେନ୍ଦୁଙ୍କ ଆଖି ପହଁରିଗଲା ଚାରିଆଡ଼େ ।

ମାଳଅପାର ଜୁଇ ଜଳୁଥିଲା – ନବଘନ ଠିଆ ହୋଇ ମାଳଅପାର ଅଧାପୋଡ଼ା ନୀଳରଂଗର ଶାଢ଼ି ଟୁକୁରାକୁ ବାଉଁଶ ଅଗରେ ଉଠେଇ ନିଆଁ ଭିତରକୁ ଠେଲି ଦେଲା । ଜକେଇ ଆସିଲା ସଜଳେନ୍ଦୁଙ୍କ ଆଖି । ଭସ୍ମ ହୋଇଯାଉଛି ତାଙ୍କ ପ୍ରିୟ ମାଳଅପା ଓ ମାଳଅପାର ବର୍ତ୍ତମାନ / ଭବିଷ୍ୟତ ତ ନ ଥିଲା, ହେଲେ ଅତୀତ... ହଁ, ଅତୀତ ମାଳଅପା ପାଦତଳେ ନିରବରେ ଲୁହ ଢାଳୁଥିଲା – ରହିଁଲେ ସଜଳେନ୍ଦୁ ।

ନବଘନ ମାଳଅପାର ପାଦତଳକୁ ଥୁଆ ହୋଇଥିବା ସଜ ଲାଲ ଗୋଲାପର ଫୁଲ ତୋଡ଼ାଟିକୁ ଉଠେଇ ନେଇ ଜୁଇ ଭିତରକୁ ପକେଇ ଦେଉଛି । ହଠାତ୍ ସଜଳେନ୍ଦୁଙ୍କ ନିଃଶ୍ୱାସଟା ମୁହୂର୍ତ୍ତକ ପାଇଁ ଅଟକିଗଲା ଯେମିତି । ଏଥର ମାଳଅପାର ସଂଗୋପିତ ଅତୀତଟା ବି ଭସ୍ମୀଭୂତ ହୋଇଗଲା । ମାଳଅପାର ଅତୀତଟିଏ ଥିଲା – ଖୁବ୍ କ୍ଷୀଣ ହୋଇ ଅଥଚ ଥିଲା, ସେ କିମ୍ବା ସେମାନେ କେହି ଜାଣିନଥିଲେ । ମାଳଅପା କେତେ ଶାଳୀନ, କେତେ ସଂଯତ, ସତରେ !

ବିଭାସ ! ବିଭାସ ଶର୍ମାଙ୍କୁ ଆଜି ସ୍ୱଚକ୍ଷୁରେ ଦେଖିନଥିଲେ ସେ କେବେବି ବିଶ୍ୱାସ କରିନଥାନ୍ତେ ଯେ ମାଳଅପାର ଅତୀତ ବୋଲି କିଛି ଥିଲା ଏବଂ ସେଇ ଅତୀତର କେନ୍ଦ୍ରବିନ୍ଦୁ ଏଇ ବିଭାସ ଶର୍ମା । ମାଳଅପାର ଶବବାହକ ଗାଡ଼ି ସ୍ୱର୍ଗଦ୍ୱାର ଆଗରେ ପ୍ରବେଶ କଲାପରେ ଜଣେ ବୃଦ୍ଧ ଏଇ ଫୁଲତୋଡ଼ା ଧରି ପ୍ରବେଶ କରିଥିଲେ ଓ ଅନେକ ସମୟ ଧରି ପ୍ରତୀକ୍ଷା ବି କରିଥିଲେ - ଏକଥା ତାଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ହେଲେ ମାଳଅପାର ଅନ୍ତିମ କ୍ରିୟା ନେଇ ଆତ୍ମୀୟମାନଙ୍କ ଭିତରେ ଯୁକ୍ତିତର୍କ ବାକ୍ ବିତଣ୍ଡା ଲାଗିରହିଥିଲା ଅନେକ ସମୟ ଧରି । କିଏ ଦେବ ମୁଖାଗ୍ନି । ରକ୍ତସଂପର୍କ ତ ସବୁବେଳେ ସ୍ୱାର୍ଥପର ତାଙ୍କମନଟା ବିଷେଇ ଯାଉଥିଲା । ଆତ୍ମୀୟଙ୍କ ବିଚାର ବିଶ୍ଳେଷଣରେ । ସଂସ୍କାରର ଅନ୍ତିମ ପର୍ବ ଶେଷ ହେଲା ସେଇ ଲଢ଼େଇ ଭିତରେ । ମାଳଅପା କିଛି ଶୁଣୁନଥିଲା । ଶୁଣିଥିଲେ, ତାର କି ପ୍ରକାର ପ୍ରତିକ୍ରିୟା ହୋଇଥାନ୍ତା କେଜାଣି । ଲାଜରେ ମଣିଷର ଛୋଟପଣ ଦେଖି ଏମିତି ଆଖି ବୁଜି ଦେଇଥାନ୍ତା ନିଶ୍ଚେ ।

ସେ ଯା'ହେଉ ସମୟ ସମୁଦ୍ରକୁ ଆଡ଼େଇ ସେ ମାଳଅପାର ନିଷ୍ପ୍ରାଣ ଶରୀରକୁ ନେଇ ଶୁଆଇ ଦେଲେ ଜୁଇ ଉପରେ ଏବଂ ସେ ଘୋଷଣା କଲେ, ମୁଁ ବଡ଼ ହିସାବରେ ବିଚାରକରି କହୁଛି, ସୁବୋଧ ହିଁ ଦେବ ମୁଖାଗ୍ନି । ତା' ବ୍ୟତୀତ ଅନ୍ୟ କାହାର ମୁଖାଗ୍ନି ଦେବାର ଅଧିକାର ଥିଲେ ବି ଯୋଗ୍ୟତା ନାହିଁ । ଆମେ ସମସ୍ତେ ଆତ୍ମୀୟ, ରକ୍ତ ସଂପର୍କୀୟ ସତ, ହେଲେ କେହି ଆତ୍ମୀୟର କର୍ତ୍ତବ୍ୟ ସଂପର୍କର ଦାୟିତ୍ୱ ତୁଲେଇନୁ । ବର୍ଷବର୍ଷ ଧରି ମାଳଅପା ଏକୁଟିଆ ଅସହାୟ ଭଳି ଜୀବନ କଟେଇଛି । ରୋଗ ଯନ୍ତ୍ରଣା ଭିତରେ ସଢ଼ିଛି । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଆମେମାନେ କେହି ତା' ପାଖରେ ଠିଆ ହୋଇନୁ । ସେବାଯତ୍ନ ତ ଦୂରର କଥା, ଆମ ନିଜ ନିଜ ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟ ନୂଆ ପରିଚୟ ଭିତରେ, ସମୟ ଅଭାବର ଦ୍ୱାହିଦେଇ ନିଜକୁ ଆଡ଼େଇ ରଖିଛୁ । ମାଳଅପା କିନ୍ତୁ ତାର ତିନିକାଳକୁ ଆମପାଇଁ ଉତ୍ସର୍ଗ କରି ଦେଇଥିଲା ।

ସେଇ କୋଡ଼ିଏ ପଚିଶ ବର୍ଷର ଜୀବନରେ ଆମେ କେହି ନ ଥିଲୁ ତା' ପାଖରେ । ଅଥଚ ଏଇ ସୁବୋଧ ହିଁ ଥିଲା ତା'ର ଏକମାତ୍ର ଭରସା । ଏଇ ଅସହାୟ, ଅନାଥ ଶିଶୁଟିକୁ ଆଦର ଯତ୍ନରେ ପାଳିପୋଷି ମଣିଷ କରିଥିଲା ମାଳଅପା ଆଉ ସୁବୋଧ ବି ତା'ର ପ୍ରତିଦାନରେ ମାଳମା'ର ସେବା ଶୁଶ୍ରୂଷା କରିବାରେ କେବେ କୁଣ୍ଠିତ ହୋଇନି । ତା'ର କିଛି ଦାବୀ ବି ନାହିଁ, ସ୍ୱାର୍ଥ ନାହିଁ । ସୁବୋଧର ମା' ଥିଲା ମାଳଅପା । ସୁବୋଧ ତା'ର ସାହାରା ଥିଲା । ଆଜି ମାତୃହରା ହୋଇଗଲା ସେ । ତାକୁ ସାନ୍ତ୍ୱନା ଦେବାପାଇଁ କେହି ନାହିଁ ସଂସାରରେ । ଅତଏବ ସେ ହିଁ ଦେବ ମୁଖାଗ୍ନି । ଏବଂ ସେ ନିଜେ ନିଆଁ ବଳିତାକୁ ସୁବୋଧ ହାତକୁ ବଢ଼େଇ ଦେଇଥିଲେ ।

ଠିକ୍ ସେତିକିବେଳେ ଟିକିଏ ଦୂରରେ ଅପେକ୍ଷା କରିଥିବା ଭଦ୍ରଲୋକ ଜଣକ ଆଗେଇ ଆସି ଶେଷ ପ୍ରଣାମ ଜଣେଇ ଗୋଲାପର ତୋଡ଼ାଟିକୁ ସମର୍ପଣ କରିବା ପାଇଁ ଅନୁମତି ମାଗିଥିଲେ ସଜଳେନ୍ଦୁଙ୍କୁ । ଏବଂ ତୋଡ଼ାଟିକୁ ଦେଇସାରି ଫେରି ଯାଇଥିଲେ ଏକମୁହାଁ ହୋଇ ।

ଚକିତ ଲାଗିଥିଲା, ସଜଳେନ୍ଦୁଙ୍କୁ । ସୁବୋଧ ଆଗେଇ ଆସି ତାଙ୍କ କାନ ପାଖରେ

ବିଭାସ ଶର୍ମାଙ୍କ ପରିଚୟ ଦେବା ସଂଗେ ସଂଗେ ସଂକ୍ଷିପ୍ତ ଭାବେ ମାଳଅପାର ଅତୀତ ସଂପର୍କରେ ସୂଚନା ଦେଇଥିଲା । କିଛି ଆତ୍ମୀୟସ୍ୱଜନ ଥିଲେ ବୋଲି ବୋଧେ ଖୁବ୍ ସଂକ୍ଷିପ୍ତରେ କହିଥିଲା । ହୁଏତ ଚାହୁଁନଥିଲା ଏ ସଂପର୍କରେ କେହି କିଛି ପ୍ରଶ୍ନ କରୁ । ସଜଳେନ୍ଦୁ ଶୁଣିଥିଲେ, ନିଜ ଭିତରର ଅସ୍ଥିରତାକୁ ପୋଛି ଦେଇ ।

ବିଭାସ ଶର୍ମା, ଏଇ ସହରର ଜଣେ ବିଶିଷ୍ଟ ବ୍ୟବସାୟୀ । ତାଙ୍କର ବହୁମୁଖୀ ବ୍ୟବସାୟ । ଏଠି ତାଙ୍କର ଗାରମେଣ୍ଟର ବ୍ୟବସାୟ ଅଛି । ସେ ଜଣେ ଗାନ୍ଧିବାଦୀ - ସମାଜର ଜନହିତକର କାମରେ ତାଙ୍କର ଯୋଗଦାନ ରହିଛି । କେହି ତାଙ୍କ ପାଖରେ ହାତ ପତେଇ ଖାଲିହାତରେ ଫେରେନି ।

ମାଳଅପାର ସ୍କୁଲ୍‌ମେଟ୍ । ଉପର କ୍ଲାସ୍‌ରେ ପଢୁଥିଲେ । ସେଇ ଦିନରୁ ବନ୍ଧୁତା । ଏଇ ବନ୍ଧୁତା କ୍ରମଶଃ ଅନ୍ତରଂଗତାରେ ପରିଣତ ହୋଇଥିଲା କେବେ ଓ କେମିତି ସେ କଥା ସୁବୋଧ କହିନଥିଲା । ଅଥବା ସେ ଜାଣିନି ହୁଏତ । ବିଭାସ ଶର୍ମାଙ୍କ ଘର ଏଇ ସହରଠୁ ପନ୍ଦର କିଲୋମିଟର ଦୂରରେ । ଯିବା ଆସିବା କରନ୍ତି । ଭାଇଙ୍କ ପିଲାଏ ବ୍ୟବସାୟ ସମ୍ଭାଳନ୍ତି । ତାଙ୍କ ନିଜର ସଂସାର ନାହିଁ । ଅବିବାହିତ ଥିଲେ ।

ସେ ନିଜେ ଏ ଘରକୁ ଆସିଲା ଦିନୁ ବିଭାସ ମଉସାଙ୍କୁ ଦେଖିଆସିଛି - ସୁବୋଧ କହିଲା । ମଝିରେ ମଝିରେ ଆସନ୍ତି ଘରକୁ । ଭଲମନ୍ଦ, ସୁବିଧା ଅସୁବିଧା ବୁଝିଯାନ୍ତି । କିମ୍ବା କିଛି ଜରୁରୀ ଥିଲେ ନିଜେ ମାଳଅପା ଖବର ଦିଏ । ମାଳଅପାର ଶେଷ ଏକୁଟିଆ ଜୀବନଟା ଅନେକାଂଶରେ ବିଭାସ ଶର୍ମା ଏବଂ ସୁବୋଧ ପାଇଁ ସହଜ ହୋଇଯାଇଥିଲା ଟିକିଏ ନିଶ୍ଚୟ ।

ଅବଶ୍ୟ ଏକଥା କହିଲା ବେଳେ ସୁବୋଧ ଅନେକ କଥା କହିନଥିଲା, ସେଇସବୁ ଉହ୍ୟ ରହିଯାଇଥିବା କଥା ଭିତରେ ଯେ ସେମାନଙ୍କ ଅବହେଳା ଅନେକାଂଶରେ ଦାୟୀ – ଯୋଉଥିପାଇଁ ମାଳଅପାକୁ ଅନ୍ୟର ସାହାଯ୍ୟ ନେବାକୁ ପଡୁଥିଲା । ଏତିକି ବୁଝିବାରେ ସଜଳେନ୍ଦୁଙ୍କ ବିଶେଷ ଅସୁବିଧା ହୋଇନଥିଲା । ସେ ଓ ସୁଖେନ୍ଦୁ ନିଜ ସଂସାର ନିଜ ପରିଚୟ ନିଜ ପ୍ରତିଷ୍ଠା ପାଇଁ ବ୍ୟସ୍ତ ରହି ସତରେ ମାଳଅପା କଥା ଭୁଲିଯାଇଥିଲେ । ବିଚାରୀ କ'ଣ ବି କରନ୍ତା – ଅନ୍ୟର ସାହାଯ୍ୟ ଆବଶ୍ୟକ କରିବା ସ୍ୱାଭାବିକ ।

ତେବେ ସୁବୋଧ ଯୋଉ କଥା କହିଲା, ସେ ତ ଚମକି ପଡ଼ିଥିଲେ । "ଜାଣିଛ ଭାଇ, ବିଭାସ ମଉସା କୁଆଡ଼େ ଅନେକବର୍ଷ ତଳେ ମାଳମା'ଙ୍କ ଆଗରେ ବିବାହ ପ୍ରସ୍ତାବ ଦେଇଥିଲେ । ମାଳ ମା' କିନ୍ତୁ ରାଜି ହୋଇନଥିଲେ ସେତେବେଳେ ଅନେକ ଦାୟିତ୍ୱ ଥିଲା ତାଙ୍କର ।"

ସେ ପଚାରିଥିଲେ ସୁବୋଧକୁ, କିଏ କହିଲା ତୋତେ ଏକଥା ? ସତରେ ତାଙ୍କୁ ବିଶ୍ୱାସ ହୋଇନଥିଲା, ତେବେ ସୁବୋଧ କେବେ ମିଛ କହିବନି ସେ ଜାଣନ୍ତି ।

ସୁବୋଧ କହିଲା, ନିଜେ ମାଳ ମା ହିଁ କହିଥିଲେ କଥାପ୍ରସଙ୍ଗରେ ତାଙ୍କୁ । ବିଭାସମଉସା ଥରେ ଆକ୍ସିଡେଣ୍ଟ୍‌ରେ ପଡ଼ିଥିଲେ ... ଖୁବ୍ ବଡ଼ ଦୁର୍ଘଟଣା । ସେତିକିବେଳେ ମୁଁ ନିଜେ ମା'ଙ୍କୁ

ଡାକ୍ତରଖାନା ନେଇ ଯାଇଥିଲି । ଦୁଃଖରେ ଭାଙ୍ଗି ପଡ଼ିଥିଲେ ମା' । ସେଇ ଦୁର୍ବଳ ଉଦାସ ମୁହୂର୍ତ୍ତରେ ଏଇ ସତକଥାଟି ତାଙ୍କ ମୁହଁରୁ ବାହାରି ଯାଇଥିଲା । ସେ କିନ୍ତୁ କେବେ କାହା ଆଗରେ ଏକଥା ପ୍ରକାଶ କରିନି । ଯାହାହେଲେ ବି ମା'ତ, ସୁବୋଧ କହିଥିଲା । ସଜଳେନ୍ଦୁ ଭାବିଲେ, ସୁବୋଧ ଭାଗ୍ୟବାନ ଅନ୍ତତଃ ମାଳଅପାର ବିଶ୍ୱାସଭାଜନ ତ ହୋଇପାରିଲା । ସେ ତ ଭାଇର କର୍ତ୍ତବ୍ୟ ହିଁ କରିନାହାନ୍ତି । ତା' ସ୍ନେହର ମର୍ଯ୍ୟାଦା ରଖିପାରି ନାହାନ୍ତି । ସୁବୋଧ ନ କହିଥିଲେ ମାଳଅପା ଜୀବନର ଏଇ ଦିଗଟା ଅଂଧାର ଭିତରେ ହିଁ ରହିଯାଇଥାନ୍ତା ।

କୋଉ ଭାବର ଜଗତରେ ସେ ଦୁହେଁ ବାସ କରୁଥିଲେ କେଜାଣି ! କ'ଣ ଥିଲା ତାଙ୍କ ପ୍ରେମର ସ୍ୱରୂପ, ସେ ତ କଳ୍ପନା ବି କରିପାରୁ ନ ଥିଲେ । ଅଥଚ ତାଙ୍କ ନିଜ ଜୀବନ କେତେ ବିକ୍ଷୁବ୍ଧ । ଅବିଶ୍ୱାସ ଆହାପଣ ଭୁଲି ବୁଝାବୁଝି ଭିତରେ ପାରିବାରିକ ଜୀବନ କି ତିଷ୍ଠିପାରେ ? ତାଳି ପକା ଜୀବନ କେବଳ । ଦୀର୍ଘଶ୍ୱାସ ନେଲେ ସଜଳେନ୍ଦୁ ନିଜ ପ୍ରେମ ଜୀବନର ପରିଣତି ପାଇଁ ।

ଭାବନା ବାଟରେ ଚାଲୁ ଚାଲୁ ଆଖି ପହଁରିଗଲା ମାଳଅପାର ଜୁଇ ଆଡ଼କୁ । ଲିଭି ଲିଭି ଆସୁଛି । ହଠାତ୍ ତାଙ୍କର ମନହେଲା, ବିଭାସ ଶର୍ମାଙ୍କୁ ଥରେ ପ୍ରଣାମ କରନ୍ତେ ତାଙ୍କ ପାଦ ଛୁଇଁ । ଆଗରୁ ତ କେବେ ଦେଖିନାହାନ୍ତି ଭଦ୍ରଲୋକଙ୍କୁ । ଆଜି ହିଁ ସେ ପ୍ରଥମେ ଭେଟିଲେ ଗୁରୁଗମ୍ଭୀର ସଂଭ୍ରାନ୍ତ ଚେହେରାର ମଣିଷଟିକୁ । ହେଲେ ତାଙ୍କର ସେଇ ଭାଗ୍ୟ ନାହିଁ । ସମୟଟା ବି ଏଭଳି ସମ୍ବେଦନଶୀଳ ଯେ, ଭାବିବାକୁ ସମୟ ବି ସୁଯୋଗ ଦେଲାନି ।

ସଜଳେନ୍ଦୁ ଭାବିଥିଲେ, ମାଳଅପା ସଂସାରର ଆଉମାନଙ୍କ ଠୁ ଅଲଗା, ତା'ର ପ୍ରେମ ବି ଅସାଧାରଣ । ସେଠି ସ୍ୱାର୍ଥ ନାହିଁ, କାମନା ନାହିଁ, ଦେହ ନାହିଁ କି ଦାହ ନାହିଁ । କୋଉ ଧାତୁରେ କେଜାଣି ସେ ଗଢ଼ା ହୋଇଥିଲେ । ନାଁ ବି ତା'ର ସିମିତି ରାଧାତମାଳ । ସୁକୁମାର 'ନୀଳତମାଳ' ତ ରାଈବିନୋଦିନୀର ଅତିପ୍ରିୟ, କୃଷ୍ଣପ୍ରତୀମ ବୋଲି । ଆଉ ମାଳଅପା ପ୍ରେମ ପୂଜାରିଣୀ । ରୂପ, ଗୁଣ, ବାସ୍ନାରେ ତା' ପ୍ରିୟ ପୁରୁଷକୁ ମହକିତ କରି ସମଗ୍ର ଜୀବନକୁ ତପସ୍ୟାରେ ପରିଣତ କରିଦେଲା । ସେଇଭଳି ତ ବିଭାସ ଶର୍ମା, ଦାବୀ ନାହିଁ, ଅଧିକାରପଣ ନାହିଁ ଅଥଚ ସମର୍ପିତ ପ୍ରେମ ପାଇଁ ସମସ୍ତ ସୁବିଧା ସୁଯୋଗ ସମ୍ଭାବନା ସତ୍ତ୍ୱେ, ସାଧାରଣ ଝିଅ ମାଳଅପାର ଅପେକ୍ଷାରେ ସମଗ୍ର ଜୀବନଟାକୁ ଏକୁଟିଆ କଟେଇଦେଲେ- ! ମାଳଅପା ବିଭାସ ଶର୍ମାଙ୍କ ଜୀବନର ଚିରାକାଙ୍କ୍ଷିତ ସେଇ ସୁଗନ୍ଧିତା ରାଧାମୋଳ-କୃଷ୍ଣପ୍ରିୟା । ଭାବୁଭାବୁ ସଜଳେନ୍ଦୁ ରୋମାଂଚିତ ହୋଇ ଉଠିଲେ । ବିରଳ ଏଇ ପ୍ରେମ କାହାଣୀ । ସେ କେବେ ପଢ଼ାଇଥିଲେ, ଏଇ ଦେହାତୀତ ପ୍ରେମ ଅତିନ୍ଦ୍ରୀୟ ଭାବନା ଓ ଆତ୍ମିକବିଳାସ କେବଳ ବୈଷ୍ଣବୀୟ ଭାବଜଗତରେ ସମ୍ଭବ । ହେଲେ ମାଳଅପା ଜୀବନରେ ତାକୁ ସମ୍ଭବ କରି ଦେଖାଇଦେଲା !

ଭସ୍ମୀଭୂତ ହୋଇଗଲାଣି ମାଳଅପାର ପାର୍ଥିବ ଶରୀର ଏବଂ ତା' ସହିତ ତା'ର ମହକିତ ଅତୀତ ବି । କେହି ଜାଣିଲେନି ! କେହି କେବେ ପ୍ରଶ୍ନ ବି କରିନାହାନ୍ତି । କାହିଁକି ବା କରନ୍ତେ ।

ସ୍ୱାର୍ଥୀ ମଣିଷ ଏଇ ସୂକ୍ଷ୍ମାତିସୂକ୍ଷ୍ମ ଭାବଜଗତକୁ କେମିତି ଦେଖନ୍ତା- ସେଇ ଆଖି ତ ସଂସାରୀ ମଣିଷର ନାହିଁ । ଅଥଚ କେତେ ଗଭୀର ଥିଲା ସେମାନଙ୍କ ଆତ୍ମିକ ପ୍ରେମ ! ସତରେ ଦେହାତୀତ ।

ପ୍ରଣାମ ଜଣେଇଲେ ସଜଳେନ୍ଦୁ ଦୁଇ ମହାନ୍ ପ୍ରେମିକ ପ୍ରେମିକାଙ୍କୁ । ଏଇ ଉଚ୍ଚାଙ୍ଗ ପ୍ରେମ କାହାଣୀକୁ କେବଳ ସମୟ ହିଁ ଲିପିବଦ୍ଧ କରି ରଖିବ ନିଜ କଲମରେ । ଦିନାନ୍ତର ଶେଷ କିରଣ ବିଛେଇ ହୋଇ ପଡ଼ିଲା ସମୁଦ୍ର ଛାତିରେ । ଗୈରିକ ଆଭାରେ ଉଦ୍‌ଭାସିତ ସମୁଦ୍ର ଛାତି ସନ୍ନ୍ୟାସିନୀ ତମାଳଅପାର ଗେରୁଆ ମନ ଭଳି ଦିଶୁଥିଲା । 'ବାବୁ'... ନବଘନର ଡାକରେ ସଚେତନ ହେଲେ ସେ ... 'ଏଥର ଆପଣ ଅସ୍ଥି ସଂଗ୍ରହ କରିନିଅନ୍ତୁ ବାବୁ ।'



# ଅମୃତସ୍ୟ କନ୍ୟା

'ଆଶ୍ରୟ', ସହରର ଏକ ଜଣାଶୁଣା କର୍ମଜୀବୀ ମହିଳା ଆବାସ । ଜଣାଶୁଣା କାହିଁକି ବିଶିଷ୍ଟ ହିଁ କହିବାକୁ ହେବ । ସକାଳରୁ ରାତିଯାଏ ନିଜ ଅନ୍ତେବାସୀଙ୍କୁ ନେଇ ଚଳଚଂଚଳ । ଅତିଥି, ଅଭ୍ୟାଗତ ଭିନ୍ନ କିଛି ସାମୟିକ ଆଶ୍ରୟ ଖୋଜୁଥିବା ମହିଳାଙ୍କର ଯିବା ଆସିବା ତ ଚାଲିଥାଏ ଅନବରତ । ଅନ୍ୟାନ୍ୟ ସରକାରୀ ଅନୁଷ୍ଠାନ ଭଳି 'ଆଶ୍ରୟ'ର ସେଭଳି କୌଣସି ନିର୍ଦ୍ଦିଷ୍ଟ ସମୟ ନିର୍ଘଣ୍ଟ କି ନିୟମାବଳୀ ନାହିଁ । ଏଇ ଦୃଷ୍ଟିରୁ ଅନ୍ତେବାସିନୀଙ୍କର ଯଥେଷ୍ଟ ସ୍ୱାଧୀନତା ଅଛି । ତଥାପି ସମସ୍ତେ ଶୃଙ୍ଖଳିତ । ଶୃଙ୍ଖଳିତ ନିଜ ନିଜ ଆଚରଣରେ, ବିଚାରରେ, ଅଭ୍ୟାସରେ । ଜୀବନଚର୍ଯ୍ୟାର ଏଇ ଶୃଙ୍ଖଳିତ ନିୟମାବଳୀ ସତେଯେମିତି ଆଶ୍ରୟର ଚାରିକାନ୍ଥରେ ଅଲିଖିତ ଭାବେ କିଏ ଲେଖି ଟାଙ୍ଗିଦେଇଛି ।

ଇଏ ଏକ ଅନୁପମ ଆଶ୍ରୟସ୍ଥଳୀ । ସମାଜର ବିଭିନ୍ନ ସ୍ତରରୁ ଆସିଥିବା, ବିଭିନ୍ନ ବୟସର ମହିଳାଙ୍କୁ ସେ ସ୍ଥାନ ଦେଇଛି । ରୁଚିବୋଧ, ବିଚାର, ଦୃଷ୍ଟିକୋଣରେ କାହାର କାହା ସହିତ ସାମ୍ୟତା ନାହିଁ । ଅଥଚ ସମସ୍ତେ ଏକାଠି, ଏକା ଛାତ ତଳେ ଅଛନ୍ତି । କେହି କାହାର ପ୍ରତିଦ୍ୱନ୍ଦ୍ୱୀ ନୁହଁନ୍ତି । ପ୍ରତ୍ୟେକ ପ୍ରତ୍ୟେକଙ୍କର ସୁଖଦୁଃଖର ସାଥୀ ।

ଅନୁଷ୍ଠାନଟି କର୍ମଜୀବୀ ମହିଳାଙ୍କ ପାଇଁ ଉଦ୍ଦିଷ୍ଟ ହେଇଥିଲେ ବି ସମାଜର ଅସହାୟ, ନିର୍ଯାତୀତା ଦୁର୍ବଳଶ୍ରେଣୀର ମହିଳାମାନଙ୍କୁ ବିଶେଷଭାବେ ସ୍ଥାନ ଦେଇଛି । ତା' ସହିତ ସେମାନଙ୍କର ଥଇଥାନର ଦାୟିତ୍ୱ ମଧ୍ୟ ବହନ କରିଛି । କିଛି କଲେଜ ପଢୁଥିବା ଛାତ୍ରୀ ମଧ୍ୟ ଅଛନ୍ତି, ଯେଉଁମାନେ ଆର୍ଥିକ ଅସ୍ୱଚ୍ଛଳତା ପାଇଁ ଅନ୍ୟ କୋଉଠି ରହି ପଢ଼ିବାପାଇଁ ଅସମର୍ଥ । କେହି କେହି ଚାକିରି କରି ମଧ୍ୟ ପାଠ ପଢୁଛନ୍ତି ।

ଅତଏବ ସାମ୍ୟତାର ପଣତ ତଳେ ମମତାମୟୀ ମା'ଟିଏ ଭଳି 'ଆଶ୍ରୟ' ସଭିଙ୍କର ସୁଖଦୁଃଖ ସହିତ ବାଣ୍ଟିହୋଇ ବାନ୍ଧି ରଖିଛି ତା' ମମତା ଡ଼ୋରିରେ । ଏବଂ ସଭିଙ୍କୁ ପ୍ରୋତ୍ସାହିତ କରୁଛି ଏକ ନୂଆ ସକାଳ ପାଇଁ - କହୁଛି, ଜୀବନକୁ ହେୟ ମନେ କରନା; ଜୀବନର ଉଦ୍ଦେଶ୍ୟ ମହତ୍ - ତାକୁ ସମ୍ମାନ ଦେଇ ଶିଖ । ଜୀବନ କେବେ ଅଟକେନା, ଦୌଡ଼େ ଆଗକୁ ଆଗକୁ ।

ଏଇ ମହତବାଣୀକୁ ଯିଏ ଆଜୀବନ ଆଦର୍ଶ ଭାବରେ ଗ୍ରହଣ କରି ଆସିଛନ୍ତି, ସିଏ ଆଉ କେହି ନୁହଁନ୍ତି, 'ଆଶ୍ରୟ'ର ପ୍ରାଣ - ମା' ଶୁଭ୍ରମଣି । ସ୍ୱନାମଧନ୍ୟା ସମାଜସେବୀ - ଏକ ବିସ୍ମୟକର ବ୍ୟକ୍ତିତ୍ୱ । ଅସାଧାରଣ ତାଙ୍କର ଜୀବନ ଓ ଜୀବନଦର୍ଶନ । ନାରୀ ଜାତିର ଗୌରବ । ଅସହାୟା ନିପୀଡ଼ିତାଙ୍କ ପାଇଁ ତ ସେ ଦେବୀ ତୁଲ୍ୟା । ସେଇମାନେ କୁହନ୍ତି - "ଈଶ୍ୱରଙ୍କୁ ତ ଆଖିରେ ଦେଖିନୁ, ଦେଖିଛୁ ଏଇ ରକ୍ତମାଂସର ଦେବୀଙ୍କୁ ! ଯିଏ ଆମକୁ ଦ୍ୱିତୀୟ ଜନ୍ମ ଦେଇଛନ୍ତି ଏବଂ ତା' ସହିତ ଜୀବନକୁ ଆଗେଇ ନେବାର ମନ୍ତ୍ର । ନହେଲେ ପ୍ରଥମ ଜନ୍ମଟା ତ ଅଲୋଡ଼ା, ଅଦରକାରୀ, ଘୃଣ୍ୟ ବୋଲି ଫୋପାଡ଼ି ଦେଇଥିଲା ଏଇ ସ୍ୱାର୍ଥପର ସମାଜ ।"

ଏଇ ଅସାଧାରଣ ନାରୀର ଜନ୍ମ କିନ୍ତୁ ଏକ ସାଧାରଣ ପରିବାରରେ - ସହର ଉପାନ୍ତରେ ବିକ୍ରମପୁର ଗାଁରେ । ବିକ୍ରମପୁର ପୋଷ୍ଟ୍ ଅଫିସ୍‌ର ପୋଷ୍ଟମାଷ୍ଟର ଅଭିଳାଷ ଚୌଧୁରୀଙ୍କ ଘରେ । ଅଭିଳାଷ ଚୌଧୁରୀଙ୍କ ଦୁଇଝିଅ, ବଡ଼ ଅଭ୍ରମଣି ଏବଂ ସାନଝିଅ ଶୁଭ୍ରମଣି ।

ପିଲାଟି ଦିନରୁ ସ୍ୱାଧୀନଚେତା । ଗାଁର ଅନ୍ୟ ଝିଅମାନଙ୍କ ଠାରୁ ଭିନ୍ନ ସ୍ୱଭାବରେ ବାରି ହୋଇଗଲା ଭଳି । ନିର୍ଭୀକ ଥରେ ମନସ୍ଥ କରିନେଲା ପରେ ତାକୁ ହାସଲ ନ କଲାଯାଏ ଅଟକିବାର ନୁହେଁ । ଆପଣା ସଂକଳ୍ପରେ ଦୃଢ଼ । ଜୀବନକୁ ଦେଖିବାର ଓ ଚିହ୍ନିବାର ଏକ ସ୍ୱତନ୍ତ୍ର କଳା ଥିଲା ତାଙ୍କ ପାଖରେ । ତାଙ୍କୁ ଜାଣିଥିବା ଲୋକ କୁହନ୍ତି - "ବାପା ଅଭିଳାଷ ଚୌଧୁରୀଙ୍କର ବିଶେଷ କିଛି ଅବଦାନ ନ ଥିଲା ଝିଅ ଶୁଭ୍ରମଣିର ଜୀବନକୁ ଗଢ଼ିବାରେ, ବରଂ କହିବାକୁ ଗଲେ ସେତେବେଳକାର ରକ୍ଷଣଶୀଳ ସମାଜ ଓ ସମାଜ ବ୍ୟବସ୍ଥା ହିଁ ତାଙ୍କୁ ପ୍ରୋତ୍ସାହିତ କରିଥିଲା ଏଇ ଦୁଃସ୍ଥ, ପୀଡ଼ିତ ଅସହାୟ ନାରୀମାନଙ୍କ ଆଡ଼କୁ ସଦିଚ୍ଛା ଓ ସହାନୁଭୂତିର ହାତ ବଢ଼େଇବାକୁ । ଅଖଣ୍ଡ ଆତ୍ମବଳ ଯୋଗେଇଥିଲା ମାନବ ସେବାର ଭାବଭୂମି ଉପରେ ଠିଆହେବାକୁ । ଆଉ ଏଇ 'ଆଶ୍ରୟ' ସେଇ ଭାବଭୂମିର ଆଧାରଶିଳା-ପ୍ରତିଫଳନ-ଜୀବନ୍ତ ପ୍ରତିଶ୍ରୁତି ।"

**ଶୁଭ୍ରମଣିଙ୍କ ମୁହଁରୁ ଶୁଣିବାକଥା :**

ବଡ଼ ଭଉଣୀ ଅଭ୍ରମଣିର ଜୀବନଯନ୍ତ୍ରଣାର ଚିତ୍ର ମୋ' ଆଖିରେ ନାରୀ ଜୀବନର ବିସ୍ୱାଦିତ ଏକ ବିକଳାଙ୍ଗ, ଅନାବିଷ୍କୃତ ଅନ୍ଧାରି ଇଲାକାକୁ ଦେଖାଇ ଦେଇଥିଲା । ଯାହା ମୋ' ଭିତରେ ବିକଶି ଆସୁଥିବା କୋମଳ କିଶୋରୀ ମନ ଉପରେ ଗଭୀର ରେଖାପାତ କରିଥିଲା । ପ୍ରତିକ୍ରିୟା ସୃଷ୍ଟି କରିଥିଲା ମୋ ମନରେ । ଏଇ ଅବିଶ୍ୱାସୀ ପୁରୁଷ ଶାସିତ ସମାଜ ନିଜପାଇଁ ଡିଣ୍ଡିମ ପିଟୁଛି ।

ସେ ହିଁ ନାରୀର ହର୍ତ୍ତାକର୍ତ୍ତା ଦୈବବିଧାତା । ତା' ଆଖିରେ ନାରୀର ସ୍ଥାନ ଏଇ ସମାଜରେ ତ ଖେଳ କଣ୍ଢେଇଠାରୁ ବି ହୀନ । ଯେତେବେଳେ, ଯେମିତି, ଯୋଉଠି ଯେତେ ଇଚ୍ଛା ତାକୁ ନେଇ ଖେଳିବ; ଖେଳ ସରିଗଲେ ଫୋପାଡ଼ି ଦେବ ରାସ୍ତା ଉପରେ ଅଦରକାରୀ ମଇଲା ଜିନିଷ ଭଳି । ଏହାଠାରୁ ବଳି ହିଂସ୍ର ପାଶବିକତା ଆଉ କ'ଣ ହୋଇପାରେ ! ତାର ଆତ୍ମମର୍ଯ୍ୟାଦା ବୋଲି କ'ଣ କିଛି ବି ନାହିଁ ? ସେ କ'ଣ ବସ୍ତୁଟିଏ ? ନାରୀର ଏତେ ଅବମାନନା ! ଏତେ ଲାଞ୍ଛିତ ତାର ନାରୀତ୍ୱ ।

ଆଉ ସମାଜ । ରକ୍ଷଣଶୀଳତାର ଖୋଳପା ପିନ୍ଧି, କୁସଂସ୍କାର ଭିତରେ ବୁଡ଼ିରହି ଅନ୍ଧ ଧୃତରାଷ୍ଟ୍ର ଭଳି ତା'ର ସବୁ କ୍ଷମତା ସମସ୍ତ ଶକ୍ତିକୁ ଅବିବେକୀ ପୁରୁଷ ହାତକୁ ଟେକି ଦେଇ, ଦୂରରେ ବସି ଆହା ଉହୁ ଚଚୁ କରି କପାଳରେ ହତ ମାରିବ ନହେଲେ ମେଳିକରି ନିଜ ଶକ୍ତି ଦେଖାଇ ଦଣ୍ଡବିଧାନ କରିବ । ତେଣିକି ନାରୀ ହୋଇଯିବ ଅବଳା, ଦୁର୍ବଳା କଳଂକିନୀ ନହେଲେ ପାପର ଖଣି । ଅଥଚ ସେଇ ପାପଖଣିର ଠିକାଦାର ପୁରୁଷକୁ କୋଉ ସମାଜ କେବେ ବି ଆଙ୍ଗୁଠି ଦେଖେଇନି । ଦୋଷୀ ସାବ୍ୟସ୍ତ କରିବା ତ ଦୂରର କଥା । ଓଲଟି ଯେତେସବୁ ସୁଖସୁବିଧା, ସୁଯୋଗକୁ ଜୀବନବ୍ୟାପୀ ଭୋଗ କରିଆସିଛି ତାର ଜନ୍ମଗତ ଅଧିକାରୀ ନାଁରେ । ଦାବୀ କରିଛି ସ୍ତ୍ରୀ ତା'ର ସମର୍ପିତା ହେଉ, ଦାସୀ ଭାବାପନ୍ନ ହେଉ, ସମାଜର ଧରାବନ୍ଧା ନୀତିନିୟମ ଓ ଲକ୍ଷ୍ମଣରେଖା ଭିତରେ ଥାଇ କେବଳ ଜୀବନ ନୁହେଁ ମୃତ୍ୟୁର ସାଥୀ ମଧ୍ୟ ହେଉ । କି ଅଦ୍ଭୁତ କାମନା ସତରେ । ଅସହ୍ୟ । ମୋ ଭିତରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ।

କେତେ ଅସୁରକ୍ଷିତ ନାରୀଟିର ଜୀବନ । କେହି ନାହିଁ ତା' ଆଗପଛରେ । ହାତେ ମାପି ଝଖଣ୍ଡେ ଝଲୁ ଝଲୁ ଜୀବନଦୀପ ଲିଭି ଆସୁଛି ଅବହେଳାର ଅନ୍ଧାର ଘରେ । କେଡ଼େ ବୋକା ଆମ ନାରୀ ଜାତିଟା ! ସବୁ ଜାଣି, ସବୁଦେଖି ଅଦେଖା ଅଜଣାହୋଇ ଯାଉଛି । ଭାବିଲେ ଆଶ୍ଚର୍ଯ୍ୟ ଲାଗେ । କୋଉ ଦୂରନ୍ତ ଆକର୍ଷଣର ଏଇ ପାଗଳପଣ ! ସ୍ୱାର୍ଥସର୍ବସ୍ୱ ପୁରୁଷର ହାତଧରି ଜୀବନ ବିତେଇବାର ଗୋଟାଏ ମିଛସ୍ୱପ୍ନରେ ମସ୍‌ଗୁଲ ହୋଇ ନିଜ ସ୍ୱାଧୀନତା, ନିଜ ଅଧିକାରକୁ ଜଳାଂଜଳି ଦେଇ ପାଗଳଭଳି ଧାଏଁ ଅନ୍ୟଅଗଣାକୁ ଯୋଉଠି ତା' ମୁଣ୍ଡ ଉପରେ ନିର୍ଭରଯୋଗ୍ୟ ଛାତଟିଏ କି ସୁରକ୍ଷିତ ବଳୟଟିଏ ବି ନାହିଁ ତା' ଝରିପଟେ । ନାହିଁ ମଧ୍ୟ ଝରିପଦ ମିଠା ସହାନୁଭୂତିର କଥା । ତଥାପି ତାର ଲୋଭ ଘରଟିଏ କରିବ । ଏଇ ସହଜାତ ଲୋଭ ଟିକକ ହିଁ ତାକୁ ନେଇଯାଉଛି ଅନ୍ଧାର ବିଲିବିଲି ଗୁହା ଭିତରକୁ । ଅଥଚ କି ସୁଖ, କୋଉ ଭରସା ଅଛି ଏଇ ମୋହ ପଛରେ ? କେବଳ ମେଘଭଳି ନିଜକୁ ଅଜାଡ଼ି ଦେବାକୁ । ସଳିତା ଭଳି ନିଜକୁ ଜାଳିଦେବାକୁ - କୌଣସି ପ୍ରତ୍ୟାଶା ନ ରଖି, ଦାବୀ ନ କରି, ଅଧିକାର ନ ମାଗି । କେଡ଼େ ବିଡ଼ମ୍ବିତ ଜୀବନ । ବ୍ୟସ୍ତ ଲାଗେ ମୋତେ ଭାବିଲା ବେଳକୁ । ଭାବନା ଶାଖାପ୍ରଶାଖା ମେଲାଏ...

ଅଭ୍ରଅପା ଠିଆ ହୁଏ ମୋ ଆଗରେ ତା'ର ମଉଳାମୁହଁ ନେଇ । ପତଣତକାନିରେ

ବାନ୍ଧି ଆଣିଥିବା ଭଙ୍ଗାରୁଜା ସ୍ୱପ୍ନକୁ ଦେଖାଏ । ତା' ଆଖିର ନିଷ୍ପ୍ରଭ ଚାହାଁଣି ଦେଖି ମୋ' କିଶୋରୀ ମନ ଅଥୟ ହୋଇପଡ଼େ । ସେଇଦିନମାନଙ୍କରେ ସଂସାର ସଂପର୍କରେ ଏତେଟା ଗଭୀର ଧାରଣା ମୋର ନଥିଲା ସତ । ତଥାପି ନୂଆ ବୟସର ଉତ୍ତରିତ ଚେତନା ମନ ଭିତରେ ବିଦ୍ରୋହକୁ ହିଁ ବାଟ ଦେଖାଉଥିଲା । ଅଭ୍ରଅପା ପାଇଁ କିଛି କରି ନ ପାରିବାର ଗ୍ଲାନିବୋଧ ଯେତେ ଅସ୍ଥିର କରୁଥିଲା । ସେ କାନ୍ଦୁଥିଲା ଦିନରାତି । ଅଥଚ ତା' ଆଖିଲୁହ ମୁଁ କାହିଁକି କେହି ବି ପୋଛି ପାରୁନଥିଲୁ ।

କେବଳ ଭାବୁଥିଲି ମୁଁ... ବାଟ ଖୋଜୁଥିଲି... କଣ କଲେ ଝିଅଟିଏ ଏଇ ନର୍କ ଯନ୍ତ୍ରଣା ଭିତରକୁ ନପଶି ମୁକ୍ତଜୀବନ ନେଇ ବଞ୍ଚିପାରିବ ! ଯେମିତି ପୁରୁଷ ବଞ୍ଚୁଛି, ଠିକ୍ ସେମିତି, ସ୍ୱାଧୀନଭାବେ, ଆତ୍ମମର୍ଯ୍ୟାଦାର ସହିତ । କିଏ ଦେବ ତାକୁ ଏଇ ଅଧିକାର ? କ'ଣ ତା'ର ଉପାୟ ??

ସେତେବେଳେ 'ନାରୀମୁକ୍ତି' ଭଳି ବଡ଼ବଡ଼ କଥା ପଶିନଥିଲା ମୋ ଭିତରକୁ । ଶୁଣିନଥିଲି ବି କାନରେ । ଗାଁ ଭିତରେ ପରିବାର ଭିତରେ କେବଳ ଦେଖୁଥିଲି ନାରୀର ଅସହାୟ ରୂପକୁ । ଦେଖୁଥିଲି ମଧ୍ୟ ତା'ର ତ୍ୟାଗପୂତ ଉଜ୍ଜ୍ୱଳ ରୂପକୁ ଜହ୍ନର ପାଖେ ଅଂଧାର ପାଖେ ଆଲୁଅ ଭଳି । କେତେବେଳେ ମୋତେ ତଟସ୍ଥ କରି ପକାଉଥିଲା ତ କେବେ ବିସ୍ମିତ କରିପକାଉଥିଲା । ଇତିହାସ ବହିରୁ ପଢୁଥିଲି ଗୌତମ ବୁଦ୍ଧଙ୍କ କଥା – ମାତ୍ର ଚାରୋଟି ଜୀବନଚିତ୍ର, ତାଙ୍କ ରାଜପୁତ୍ର ମନକୁ ଏମିତି ବିରାଗରେ ଭରି ଦେଇଥିଲା ଯେ, ରାଜଐଶ୍ୱର୍ଯ୍ୟ ସହିତ ସ୍ତ୍ରୀପୁତ୍ରକୁ ତ୍ୟାଗକରି ସନ୍ନ୍ୟାସୀ ପାଲଟିଗଲେ ସିଦ୍ଧାର୍ଥ । ଏହି ଅନନ୍ତ ଦୁଃଖର କାରଣ ଖୋଜୁ ଖୋଜୁ ପହଞ୍ଚି ଯାଇଥିଲେ ବୋଧିଦ୍ରୁମ ମୂଳରେ । ଖୋଜି ପାଇଥିଲେ ଜୀବନମୁକ୍ତିର ମାର୍ଗ – ମୋକ୍ଷର ଆଲୁଅ ଦେଖାଇ ଦେଲେ ସମଗ୍ର ମାନବ ଜାତିକୁ । ଠିକ୍ ସେମିତି ମୋ' ଭିତରେ ଅହରହ ଗୋଟାଏ ପ୍ରଶ୍ନ ଉତ୍ତରିତ ହୋଇ ମୋତେ ବିବ୍ରତ କରିପକାଉଥିଲା । କ'ଣ କରିବା ଉଚିତ ହେବ ? କେମିତି ଅଭ୍ରଅପା ମୁହଁରେ ହସ ଫୁଟିବ ? କିଏ ଦେଖେଇବ ବାଟ ? ପ୍ରଥମେ ପ୍ରଥମେ ବାପାବୋଉ ଅଭ୍ରଅପା ପାଇଁ ବ୍ୟସ୍ତ ହେଉଥିଲେ ବି ନିଜକୁ ବୁଝେଇନେଇ କହୁଥିଲେ – ଝିଅ ଜନ୍ମ ହିଁ ଏମିତି, ଖାଲି ଦହଗଂଜ, ହନ୍ତସନ୍ତ । ଭାଗ୍ୟକୁ ଆଦରି ନେବାଛଡ଼ା ଆଉ ଉପାୟ ତ କିଛି ନାହିଁ । ଏଇଠି ତା'ର ଧୈର୍ଯ୍ୟ, ସହନଶୀଳତାର ଅଗ୍ନିପରୀକ୍ଷା । ଜୀବନ ଭିତରୁ ହିଁ ସେ ଶିଖିବ ଏବଂ ନିଜ ଜୀବନକୁ ସଜାଡ଼ି ବାଟ ଚାଲିବ ।

ମୁଁ କିନ୍ତୁ ସେମାନଙ୍କ ବିଚାରକୁ ଗ୍ରହଣ କରିପାରୁନଥିଲି । ଯୁକ୍ତି କରୁଥିଲି ବୋଲି ସେମାନେ ଅସନ୍ତୁଷ୍ଟ ଥିଲେ ମୋ' ଉପରେ । କିଛି ଜୋରଦେଇ କହିବା ପାଇଁ ବୟସ ବି ହୋଇନଥିଲା । ସେତେବେଳେକାର ସମାଜ ବ୍ୟବସ୍ଥାରେ, ମୋ' ବିବାହ ବୟସ ହେଇଯାଇଥିଲା । ପରିସ୍ଥିତି ସହଜ ଓ ସ୍ୱାଭାବିକ ବାଟରେ ଚାଲିଥିଲେ ବରଖୋଜା ପ୍ରକ୍ରିୟାଟା ନିଶ୍ଚୟ ତ୍ୱରାନ୍ୱିତ ହୋଇଥାନ୍ତା । କିନ୍ତୁ ଅଭ୍ରଅପାର ଦୁଃସ୍ଥିତି ସେ କ୍ଷେତ୍ରରେ ବାଟ ଆଗୁଳି ଦେଇଥିଲା ।

ସେଇ ସୁଯୋଗର ସଦ୍‌ବ୍ୟବହାର କରି ମୁଁ- ଯିଦ୍ ଧରିଥିଲି ପାଠ ପଢ଼ିବି । ବାହାଘରର ଲୋଭନୀୟ ଜାଲରେ ପଡ଼ି ଅଭ୍ରଅପା ଭଳି ଛଟପଟ ହେବାକୁ ମୁଁ ଋହେଁନା । ଖୁବ୍ ପ୍ରତିକ୍ରିୟାଶୀଳ ହୋଇଉଠିଥିଲେ ମୋ ଗୁରୁଜନମାନେ । ମୁଁ ଅଟଳ ଥିଲି । ଭଲ କରିଥିଲି କି ଖରାପ କରିଥିଲି ମୁଁ ଜାଣେନା, ଏତେକଥା ଚିନ୍ତା କରିବାକୁ ମୋର ବୁଦ୍ଧି ନଥିଲା । ତେବେ ପିଲାମନ ନେଇ, ସମୟ କିଣିବାର ସହଜ ଉପାୟ ମୋ ପାଇଁ ତାହା ହିଁ ଥିଲା ସେତେବେଳେ । କିଛି ଲମ୍ୱା ସମୟ... ଭାବିବା ପାଇଁ । କାରଣ ଅଭ୍ରଅପା ଯଦି ପଢୁଥାନ୍ତା, ଏଯାଏ ବି ପଢୁଥାନ୍ତା । ଅସହାୟ ଅବଳାର ଖାତାରେ ତାର ନାଁ ଲେଖା ହୋଇନଥାନ୍ତା ଆଜି । କିଶୋରୀ ଜୀବନର ଆକାଶକୁ କଳାବାଦଲ ମାଡ଼ି ଆସିନଥାନ୍ତା ସହଜରେ । ମାତ୍ର ବାରବର୍ଷ... ଖେଳଘର ଛାଡ଼ି ସେ ଶାଶୁଘରକୁ ଯାଇଥିଲା । ସପ୍ତମଶ୍ରେଣୀର ଶିକ୍ଷାଗତ ଯୋଗ୍ୟତା ମଧ୍ୟ ତା'ର ନଥିଲା । ଅତଏବ ମୁଁ ଆଉ ସେଇ ଭୁଲ କରିବିନି ।

**ଅଭ୍ରମଣିର ସ୍ୱପ୍ନ :**

ଅଭ୍ରମଣି ଦେଖିବାକୁ ସୁନ୍ଦର, ଗୋଟିଏ ଋଉଳରେ ଗଢ଼ା । ଘରକରଣାରେ ନିପୁଣା । ବୁଦ୍ଧିମତୀ ନ ହେଲେ ବି ଗୁଣବତୀ ଥିଲା । ଶାଶୁଘରେ ବୋହୂ ହେବାପାଇଁ ଯେଉଁସବୁ ଗୁଣ ଆବଶ୍ୟକ ସେସବୁକୁ ଆୟତ୍ତ କରିଥିଲା ଅଭ୍ରମଣି ବାରବର୍ଷ ବୟସ ବେଳୁ । ହେଲେ ଶିକ୍ଷାଗତ ଯୋଗ୍ୟତା ନ ଥିଲା ବେଶି କିଛି ।

ବାପା ଅଭିଳାଷ ଚୌଧୁରୀ କିନ୍ତୁ ଝିଅ ପାଇଁ ସହରୀ ଋକିରିଆ ବର ଖୋଜିଥିଲେ । ଗଙ୍ଗପଡ଼ା ମାଧବ ମହାପାତ୍ରଙ୍କ ପୁଅ ଦେବଜ୍ୟୋତି ଗ୍ରାଜୁଏଟ୍ ସେତେବେଳର । ଜାକଯମକରେ ବାହାଘର କରିଥିଲେ । ଭାବିଥିଲେ ଝିଅ ସୁଖରେ ଘର କରିବ ।

ହେଲେ ବିଧିର ବିଡ଼ମ୍ୱନା । ଅଭ୍ରମଣି ପାଠପଢୁଆ ସ୍ୱାମୀର ମନ ଜିଣି ପାରିନଥିଲା, କି ଶାଶୂଘରେ ତା'ର ସ୍ଥାନ ସମ୍ମାନଜନକ ନ ଥିଲା । ଯେମିତି ଘରକାମ ବଦଳରେ ଗଣ୍ଡେ ଖାଇବାକୁ, ଖଣ୍ଡେ ପିନ୍ଧିବାକୁ ପାଉଥିଲା । ପ୍ରଥମେ ପ୍ରଥମେ କୈଶୋରର ଚପଳତା ନେଇ ସବୁକଥାକୁ ସହଜ ଭାବେ ହିଁ ନେଉଥିଲା । ବୁଝିପାରୁନଥିଲା କିଛି । କ୍ରମଶଃ ଅତ୍ୟାଋର, ଗଂଜଣା ଅସହ୍ୟ ହେଲା । ଅଣନିଃଶ୍ୱାସୀ ହୋଇଗଲା କୈଶୋର । ପ୍ରତିବାଦ କରିବାର ସାହସ କି ବୋଧଶକ୍ତି ନଥିଲା ତା'ର । ବାପାବୋଉ ଦେଇଥିବା ସଂସ୍କାର ତା' ହାତପାଦକୁ ବାନ୍ଧି ଦେଇଥିଲା । ଶାରିରୀକ ଏବଂ ମାନସିକ ନିର୍ଯାତନା ଭିତରେ ଦହଗଞ୍ଜ ହୋଇ ବଂଚିବାର ପ୍ରୟାସ କରୁକରୁ ଦିନେ ଅଭ୍ରମଣି ଅନନ୍ୟୋପାୟ ହୋଇ ଫେରି ଆସିଥିଲା ବାପଘରକୁ । ସ୍ୱପ୍ନ ଦେଖିବା ପୂର୍ବରୁ ଆଖିରୁ ନିଦ ହଜିଗଲା । କଙ୍କି ଆଉ ପ୍ରଜାପତି ପଛରେ ଗୋଡ଼ାଉଥିବା ବୟସର ସବୁଜ ଉଚ୍ଛ୍ୱାସ ହଠାତ୍ ମରିଗଲା ନିର୍ବାକ ହୋଇଗଲା ।

ବାପଘରେ ବି ତା'ର କ'ଣ ମୁକ୍ତି ଥିଲା ? ଗାଁ ସମାଜ, ଆତ୍ମୀୟସ୍ୱଜନଙ୍କ ଟକାଟିପ୍ପଣୀ,

ଅଲକ୍ଷଣୀ କୁଲକ୍ଷଣୀର ଅପବାଦ, ଅପନିନ୍ଦା ଓ ସହଜରେ ମିଳିଯାଏ ନାରୀକୁ । ଅଭ୍ରମଣି ସେଥିରୁ ବାଦ୍ ପଡ଼ନ୍ତା କିମିତି ?

ବାପା ବୋଉଙ୍କ ଭିତରେ ମନାନ୍ତର ମତାନ୍ତର ଲାଗି ରହିଥିଲା । ପରସ୍ପର ପରସ୍ପରକୁ ଦୋଷାରୋପ କରୁଥିଲେ । ଲୋକେ କହିଲେ ଭାଗ୍ୟଦୋଷ, କର୍ମଫଳ । ବୋଉ କହିଲା, ମୁଁ ସିନା ଜନ୍ମ ଦେଇଥିଲି, କର୍ମ ତ ଦେଇନି । ସେତେବେଳେ ସାନଝିଅ ଶୁଭ୍ରମଣି ଗ୍ରହଣ କରିପାରୁନଥିଲା ଏଇ 'ଭାଗ୍ୟ ଓ କର୍ମ'ର ବିଗ୍ରହକୁ । କହିଥିଲା, ନିଜ ଦାୟିତ୍ୱବୋଧକୁ କାନ୍ଧରୁ ଓହ୍ଲେଇବାକୁ ଏସବୁ ଗୋଟେ ବାହାନା । ସାନଝିଅର ପ୍ରତିବାଦ, ଯୁକ୍ତିରେ ଅଭିଳାଷ ଚୌଧୁରୀ ଅସନ୍ତୁଷ୍ଟ ହୋଇ ଉଠୁଥିଲେ । ଦୈନନ୍ଦିନ ଜୀବନର ଏଇ ଅଶାନ୍ତ ଝଡ଼ ଭିତରେ ଖିଆପିଆ ଭୁଲିଗଲା ଅଭ୍ରମଣି, ମୂକ ପାଲଟିଗଲା । ସମସ୍ତେ ଭାବିଲେ ଝିଅଟା ପାଗଳ ହୋଇଗଲା । ପାଗଳ ହେଇଯିବାଟା କିଛି ବିଚିତ୍ର ନ ଥିଲା ଅଭ୍ରମଣି ପାଇଁ । ସ୍ୱପ୍ନ ଯୋଉଠି କଥା କହିବାର ବାଟପାଏନା, ସେଠି ମଣିଷ ପାଗଳ ନ ହେବ କିମିତି ?

**ଅପରାଜିତା ଶୁଭ୍ରମଣି :**

ଶୁଭ୍ରମଣି, ଅଭ୍ରମଣି ଠାରୁ ଭିନ୍ନ, ଅଲଗା ସ୍ୱଭାବର ଥିଲା । ସମସ୍ତେ ଯୋଉବାଟରେ ଭାବନ୍ତି ଜୀବନକୁ ଯୋଉଦିଗରୁ ଦେଖନ୍ତି, ଗ୍ରହଣ କରନ୍ତି– ଶୁଭ୍ରମଣି ସେଇ ପାରଂପରିକ ବାଟରେ ଭାବିବାକୁ ପସନ୍ଦ କରନ୍ତିନି । ଅଭ୍ରମଣିର ବିପର୍ଯ୍ୟସ୍ତ ଜୀବନ ପାଇଁ ଭାଗ୍ୟ ନୁହେଁ, ଆମ ସମାଜର ପାରଂପରିକ ଚିନ୍ତାଧାରା ହିଁ ଦାୟୀ ବୋଲି ସ୍ପଷ୍ଟ ଭାବେ କହୁଥିଲେ ।

ସେ କହନ୍ତି– ମୋ ଭିତରେ ସତେ ଯେମିତି କିଏ ଗୁମୁରି ଉଠୁଥିଲା ଅସନ୍ତୋଷରେ । ପ୍ରଶ୍ନ କରୁଥିଲା, କିଏ ସେଇ ଭାଗ୍ୟ ? କୋଉଠି ଅଛି ସେ ? କଣ ତାର ସ୍ୱରୂପ ? କିଏ ତାକୁ ଦେଖିଛି ? କେହି ବି ଦେଖିନି । କେବଳ ଗୋଟାଏ ଧାରଣାକୁ ନିଜ ଭିତରେ ପୋଷି ଜୀବନର ଗତିକୁ ରୋଧ କରିବ କାହିଁକି ? ଆତ୍ମଘାତୀ ହେବ କାହିଁକି ? ଜୀବନକୁ ନ ସଜାଡ଼ି ନଷ୍ଟଭ୍ରଷ୍ଟ କରିବାର ଅଧିକାର ତ କାହାର ନାହିଁ । ଜୀବନ ଈଶ୍ୱର ଦେଇଛନ୍ତି । ତାଙ୍କ ଉଦ୍ଦେଶ୍ୟକୁ ଠିକ୍ ଭାବେ ବୁଝିପାରିଲେ, 'ଭାଗ୍ୟ' କବଳରୁ ମୁକୁଳିବାର ବାଟ ବି ମିଳିଯିବ । ବାପା ହିଁ ଅଭ୍ରଅପାର 'ଭାଗ୍ୟ'କୁ ବାନ୍ଧି ଅମୁହାଁ ଘର ଭିତରେ ଫୋପାଡ଼ିଦେଇ ନିଜେ କାନ୍ଦୁଛନ୍ତି । ନା, ନିଜେ ସ୍ୱର୍ଗ ଦେଖିପାରିଲେ, ନା, ଅଭ୍ରଅପା ମୁହଁରେ ହସ ଫୁଟାଇ ପାରିଲେ । ତାକୁ ଯଦି ପାଠ ପଢ଼ିବାର ସୁଯୋଗ ଟିକିଏ ଦେଇଥାନ୍ତେ, ସେ ତ ଆଜି ପ୍ରତିକୂଳ ପରିସ୍ଥିତି ସହିତ ଲଢ଼ିବାକୁ ସାହସ ଜୁଟେଇ ପାରନ୍ତା । ପ୍ରତିବାଦ କରିବାର ଦମ୍ଭ ପାଇଥାନ୍ତା । ଏମିତି ବନ୍ଧପାଗଳ ହୋଇ ବସି ନ ଥା'ନ୍ତା । ହୁଏତ ଆଉ ପ୍ରକାରେ ସ୍ୱପ୍ନ ଦେଖିବାର ପ୍ରୟାସ କରିଥାନ୍ତା ।

ବାପା-ବୋଉ କେବଳ ନୁହଁନ୍ତି, ଆଖପାଖ ସାଇ ପଡ଼ିଶା, ଆତ୍ମୀୟସ୍ୱଜନମାନେ ତଟସ୍ଥ ହୋଇଯାନ୍ତି କିଶୋରୀ ଶୁଭ୍ରମଣିର ଯୁକ୍ତିରେ । ମିଛ ତ କହୁନି ଝିଅଟା – ତଥାପି ଇଏ ବି ତ

ଗୋଟାଏ ଅଘଟଣ କଥା । ସଂସାରର ଆଉ ଝିଅମାନଙ୍କ ଭଳି ନ ଭାବି, ସୃଷ୍ଟିଛଡ଼ା କଥାଗୁଡ଼ାକ ଭାବିବା ବି ତ ଭଲ ଲକ୍ଷଣ ନୁହେଁ ଝିଅଟି ପାଇଁ । ସମାଜ ଅଛି ଭାବିଚିନ୍ତି ବିଚାର ଦେବାକୁ । ଦୀର୍ଘଶ୍ୱାସ ଛାଡ଼ନ୍ତି ଅଭିଳାଷ ଚୌଧୁରୀ ।

ମାଟ୍ରିକ ପରୀକ୍ଷା ଆସିଯାଏ । ସବୁକଥାକୁ ପଛରେ ପକାଇ ପରୀକ୍ଷା ପାଇଁ ପ୍ରସ୍ତୁତ ହୁଅନ୍ତି ଶୁଭ୍ରମଣି । ପରୀକ୍ଷା ତ ନୁହେଁ ତାଙ୍କ ଜୀବନର ଇଏ ଅଗ୍ନିପରୀକ୍ଷା ସତେ ଯେମିତି !

**ସେଇବର୍ଷ :**

ସ୍କୁଲରେ ବାର୍ଷିକ ଉତ୍ସବ । ପିଲାଙ୍କ ପାଇଁ ହସଖୁସିର ଦିନ । ଶୁଭ୍ରମଣି ମନରେ କିନ୍ତୁ ଆନନ୍ଦ ନ ଥିଲା । ଦେଖୁ ଦେଖୁ କଟିଗଲା ଏମିତି ଚାରିବର୍ଷ, ନିଜ ଅଧିକାର ମାଗିବାକୁ ବାପାବୋଉଙ୍କ ସହିତ ଲଢ଼େଇ କରୁକରୁ । ସ୍କୁଲପଢ଼ା ବି ସରିବ । ସମୟ ତ କାହାକୁ ଅପେକ୍ଷା କରେନା - ଆଗେଇ ଯିବା ତା'ର ଧର୍ମ । ଜୀବନ ବି ଧାଏଁ ସେଇଭଳି । ଆଗକୁ କ'ଣ ଅଛି ସୂଚନା ଦିଏନା । ଯାହା କିଛି ଘଟେ, ଅଚାନକ ହିଁ ଘଟେ । ମଣିଷ ଛନ୍ଦି ହେଇଯାଏ ସମୟ ସହିତ ପାଦ ମିଳାଇ ଚାଲୁ ଚାଲୁ । ବେଳେ ବେଳେ ଏମିତି ବି ମୁହୂର୍ତ୍ତ ଆସେ, ଗତିପଥ ବଦଳିଯାଏ ମଣିଷର । ବଦଳିଯାଏ ସବୁକିଛି । ମଣିଷ କେବଳ ତଟସ୍ଥ ହୋଇ ରହେଁ । ତାଜୁବ୍ ହୁଏ । ଅବୋଧ ଶିଶୁଭଳି ନିଜକୁ ସମର୍ପିତ କରିଦିଏ ପରିସ୍ଥିତି ହାତରେ । ପଛରେ ଜୀବନକୁ ତର୍ଜମା କରୁକରୁ ଭାବେ, ସେଇଟା ହୁଏତ ତା'ର 'ଜୀବନର ମୋଡ଼' ଥିଲା । 'ଭାଗ୍ୟ'କୁ ବିଶ୍ୱାସ କରୁନଥିବା ଶୁଭ୍ରମଣି ପାଇଁ ସେଇ ବାର୍ଷିକ ଉତ୍ସବର ଦିନଟି ହିଁ ସେଇଭଳି ଏକ 'ମୋଡ଼' ଥିଲା ନିଶ୍ଚୟ । ନିଜେ ସମୟ ଦେଇ ଆସିଥିଲା ଏକ ଦୁର୍ଲଭ ଉପହାର ଶୁଭ୍ରମଣି ପାଇଁ । ଯାହା ସେ ସ୍ୱପ୍ନରେ ବି କଳ୍ପନା କରିନଥିଲେ । ଜୀବନଯଂତ୍ରଣାର ନିରଂଜନା ତଟରେ ନିତିଦିନ ମୁକ୍ତିର ମାର୍ଗ ଖୋଜି, ନିଜ ସହିତ ଲଢ଼େଇ କରୁଥିବା ଶୁଭ୍ରମଣିକୁ ଦିନେ ସତକୁସତ ଅଚାନକ ବୋଧିଦ୍ରୁମ ତଳେ ନେଇ ଠିଆ କରେଇ ଦେଇଥିଲା ସମୟ ।

ସେ'ଦିନ ଉତ୍ସବର ମୁଖ୍ୟ ଅତିଥି ଭାବେ ନିମନ୍ତ୍ରିତ ହୋଇ ଆସିଥିଲେ ପରମପୂଜ୍ୟା ମା' ରମାଦେବୀ । ବୟସ ଭାରରେ ନଇଁ ପଡ଼ିଥାଏ ତାଙ୍କର ସାନୁଆ ଚେହେରାଟା । ହେଲେ ତାଙ୍କ ଭିତରର ସ୍ୱାଭିମାନୀ ନାରୀଟି ଅନମନୀୟ ଭାବେ ଠିଆହୋଇ ସମ୍ବୋଧିତ କରୁଥାନ୍ତି ଉପସ୍ଥିତ ଛାତ୍ରଛାତ୍ରୀ ଏବଂ ଭଦ୍ରମଣିଷ ଓ ଭଦ୍ରମହିଳାଙ୍କୁ । କି ଚମତ୍କାର ସେଇ ସମ୍ଭାଷଣ । କେତେ ଗଭୀର ଅନ୍ତରଂଗତାର ସ୍ପର୍ଶ ସେଥିରେ । ସମସ୍ତେ ମୁଗ୍ଧ ହୋଇଯାଉଥିଲେ । କଥାରେ ପାଣ୍ଡିତ୍ୟ କିମ୍ବା ତର୍କର ଗମ୍ଭୀରତା ନ ଥିଲା ଅଥଚ ନାରୀର ମହତ୍ୱ ଓ ଗରିମା ଉଭାଇ ଉଠୁଥିଲା । ନାରୀ କଲ୍ୟାଣୀ, ସ୍ରଷ୍ଟାଙ୍କର ଶ୍ରେଷ୍ଠସୃଷ୍ଟି । ମାନବ ସମାଜ ପାଇଁ ସେ ଅପରିହାର୍ଯ୍ୟ । ଅଜ୍ଞାନୀ ସମାଜ ତାକୁ ରକ୍ଷଣଶୀଳତାର ବନ୍ଧନରେ ବାନ୍ଧି ଉପଭୋଗର ବସ୍ତୁ ବୋଲି କହୁଛି । ସେଥିରୁ ତାକୁ ମୁକ୍ତ କରିବାକୁ ହେବ । ସେଇ ମୁକୁଳେଇବାର ମାର୍ଗ ଦେଖେଇବ ଶିକ୍ଷା । ନାରୀ ଶିକ୍ଷିତ

ହେଲେ ସମାଜ ଶିକ୍ଷିତ ହେବ ... । ଏମିତି ଅନେକ କଥା ନାରୀମୁକ୍ତି ସଂପର୍କରେ କହିଥିଲେ ସେ । ସମସ୍ତଙ୍କ ସହିତ ନିଜେ ଶୁଭ୍ରମଣି ବି ମନ୍ତ୍ରମୁଗ୍ଧ ଭଳି ଶୁଣିଥିଲେ ତାଙ୍କର କଥାକୁ । ମା' ରମାଦେବୀଙ୍କ ଉଚ୍ଚାରିତ ପ୍ରତିଟି ଶବ୍ଦ ତାଙ୍କ ଚେତନାରେ ସତେଯେମିତି ଲେଖା ହୋଇ ଯାଇଥିଲା । ଅନ୍ୟପ୍ରକାରେ କହିଲେ, ଖୋଜୁଥିବା ବାଟ ମିଳିଯାଇଥିଲା କିଶୋରୀ ଶୁଭ୍ରମଣିକୁ । ମନ ଅଭ୍ୟନ୍ତରରେ ଉଠୁଥିବା ପ୍ରଶ୍ନର ଉତ୍ତର ବି ସେଇଠି ଥିଲା । ତଥାପି ମନ ପୂରି ନଥିଲା । ଅନୁମତି ମାଗିଥିଲେ ମା'ଙ୍କ ସହିତ ସାକ୍ଷାତ୍ କରିବାକୁ । ମମତାମୟୀ ମା' ଉଦାରମନରେ ସୁଯୋଗ ଦେଇଥିଲେ ସାକ୍ଷାତ୍ ପାଇଁ ।

ଆଳାପ ଖୁବ୍ ଅନ୍ତରଂଗ ଥିଲା । ବିନା ଦ୍ୱିଧାରେ ଖୋଲି ଦେଇଥିଲେ ନିଜକୁ ଶୁଭ୍ରମଣି । ଚେତନାର ସବୁଦ୍ୱାର ଖୋଲି ହୋଇଯାଇଥିଲା । ମନର ଅନ୍ଧାର ଅପସରି ଗଲା । ଆଲୁଅ ଦେଖେଇଲେ ମା' । ମନେ ହୋଇଥିଲା, ସେ ଆଉ ବାଟବଣା ହେବେନି, ପହଞ୍ଚି ଯାଇଛନ୍ତି ସେ 'ବୋଧିଦ୍ରୁମ' ତଳେ ।

ଆଉ ସେଇଦିନ କ'ଣ ଖୋଜି ପାଇଥିଲେ ସେହି ମହୀୟସୀ ନାରୀ କିଶୋରୀ ଶୁଭ୍ରମଣି ଭିତରେ କେଜାଣି, କହିଥିଲେ– "ବୁଝିଲୁ ମା', ତୋ' ଭିତରେ ପରମେଶ୍ୱର ଅନନ୍ତ ଶକ୍ତି ଭରିଦେଇଛନ୍ତି । ତା' ସହିତ ଦେଇଛନ୍ତି ଅନ୍ୟକୁ ବୁଝିପାରିଲା ଭଳି ବଡ଼ ମନଟିଏ । ଅନେକ କିଛି କରିପାରିବୁ ଜୀବନରେ । ଅନେକ କାମ ଅପେକ୍ଷା କରିଛି ତୋ' ପାଇଁ । ମୁଁ ଜାଣିପାରୁଛି ତୁ କେବେ ହାରିବୁନି । ନାରୀ ପରା ଅପରାଜିତା.... ।"

ସେଦିନ ସେ ନିମନ୍ତ୍ରଣ କରିଥିଲେ ତାଙ୍କୁ ତାଙ୍କର କନ୍ୟାଶ୍ରମକୁ । କିଛି କମ୍ ଗୌରବର କଥା ନ ଥିଲା ଶୁଭ୍ରମଣିଙ୍କ ପାଇଁ ଏହି ଆମନ୍ତ୍ରଣ । ସେ ଯେମିତି କୋଟିନିଧି ପାଇଯାଇଥିଲେ । ଆଖି ଆଗରେ ଖୋଲିଯାଇଥିଲା ଏକ ବ୍ୟାପ୍ତ ଉଜ୍ଜ୍ୱଳ ଦିଗନ୍ତ ।

ଏବଂ ଏଇ ଆମନ୍ତ୍ରଣକୁ ସମ୍ମାନ ଦେଇ ଥରେ ନୁହେଁ ବାରଂବାର ସେ ବରୀ ଆଶ୍ରମକୁ ଯାଇଛନ୍ତି, ଅନେକ କିଛି ଶିଖିଛନ୍ତି । ଆଶ୍ରମର ଜୀବନଚର୍ଯ୍ୟା, ନୀତିନିୟମ, ଶୃଙ୍ଖଳା ସହିତ ପୀଡ଼ିତ ହୋଇଛନ୍ତି ଓତପ୍ରୋତ ଭାବେ । ମା'ଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ହିଁ ତାଙ୍କ ଜୀବନକୁ ଭିନ୍ନପ୍ରକାରେ ଗଢ଼ିବାକୁ ସାହାଯ୍ୟ କରିଛି ବୋଲି ସ୍ୱୀକାର କରନ୍ତି । କେବଳ ସେତିକି ନୁହେଁ, ଏହା ତାଙ୍କ ପାଇଁ ଜୀବନର ସର୍ବଶ୍ରେଷ୍ଠ ତପସ୍ୟା ମଧ୍ୟ ।

ଏସବୁ ତାଙ୍କରି ମୁହଁର ଶୁଣିବା କଥା । ଏଇ ହେଉଛନ୍ତି ସେଦିନର ସେଇ କିଶୋରୀ ଶୁଭ୍ରମଣି । ଅତିସାଧାରଣ ଝିଅଟିଏ – ଯାହାଙ୍କ ଭିତରେ ଅସାଧାରଣ ଶକ୍ତିକୁ ଲକ୍ଷ୍ୟକରି ମା' ରମାଦେବୀ ଚକିତ ହୋଇଯାଇଥିଲେ । ସେଇ ଶୁଭ୍ରମଣି 'ଆଶ୍ରୟ'ର ଅନ୍ତେବାସିନୀଙ୍କର ଅତିପ୍ରିୟ, ଅତି ଆପଣାର ଶୁଭ୍ରମା' । ଦିନେ ଦିନେ ଅବସର ମିଳିଲେ, ପିଲାଙ୍କ ଅନୁରୋଧ ଏଡ଼େଇ ନପାରି, ଖୋଲି ବସନ୍ତି ଆପଣା ଅନୁଭୂତିର କାହାଣୀ – ଫେରନ୍ତି ପଛକୁ ... ଅତୀତକୁ କହୁ କହୁ ରାତି ପାହିଯାଏ । କଥା ସରେନା । ତାଙ୍କ କାହାଣୀ ତ ଆଇମା' କାହାଣୀ ନୁହେଁ । କେତେ

ବାଟରେ, କେତେ ପ୍ରକାରେ ସେ ଭେଟିଛନ୍ତି ଜୀବନକୁ । ତା'ର କେତେ ରୂପ, କେତେ ବୈଚିତ୍ର୍ୟ । ଏଇ ଯୋଉ ସୁଧା, ଅନୁପମା, ସୁଜାତା, ଶୋଭା, ସରଳା, ରଂଗମତୀ ଭଳି ଆହୁରି ଅନେକ - ଏମାନେ ଜଣେ ଜଣେ ଏଇ ବୈଚିତ୍ର୍ୟମୟ ଜୀବନର ଅଂଶବିଶେଷ । କାହାକୁ କୋଉଠି କୋଉ ପରିସ୍ଥିତିରେ ସେ ଭେଟିଛନ୍ତି । ଜୀବନ କେବେ ଅବହେଳାର ନୁହେଁ - ଅପବିତ୍ର ନୁହେଁ । ସାଉଁଟି ଆଣିଛି ତାଙ୍କର ଅମୃତ ହାତ 'ଆଶ୍ରୟ' ଭିତରକୁ । ସେ ଗାନ୍ଧାରୀ ପାଲଟି ଯାଇଛନ୍ତି । ବଢ଼େଇ ଦେଇଛନ୍ତି ସେବା ଓ ସହାନୁଭୂତିର ପଣତକାନିକୁ ।

କେତେ ଅନୁଭବ ତାଙ୍କର । ସେଇ ଅନୁଭବର ଗନ୍ତାଘର ସରିବ କେମିତି ? ସେ ତ ଅସରନ୍ତି । ସୁଧା, ସୁଜାତା, ଅନୁପମା, ସୁରମା ଭଳି ମୃତକଳ୍ପାଙ୍କ ପାଇଁ ତ, ସେ ସଂଜିବନୀ ସୁଧା, ମୁକ୍ତିର ଗୀତା । ସେମାନଙ୍କ ଔତ୍ସୁକ୍ୟ କେବେ ବି ମେଣ୍ଟେନା, ଶୁଣିବାର କୌତୂହଳ ବଢ଼େ । ପଚାରନ୍ତି– "କ'ଣ ହେଲା ମା' ତା'ପରେ ? ମାଟ୍ରିକ ଫଳ ତ ବାହାରିଥିବ ... । - ବାହାରିଲା, ଫଳ ଭଲ କରିଥିଲି ! ବାପା ଆଶ୍ୱସ୍ତ ହୋଇଥିଲେ ନିଶ୍ଚୟ । ତାଙ୍କର ଅର୍ଥ ଓ ସମୟ ବିନିର୍ବ୍ୟୟ ହୋଇନି । ସମସ୍ତ ଆତ୍ମୀୟସ୍ୱଜନଙ୍କ ଇଚ୍ଛା ବିରୁଦ୍ଧରେ ଯାଇ ସେ ପଢ଼ିବାକୁ ଅନୁମତି ଦେଇଥିଲେ ତ । ତଥାପି ସନ୍ତୁଷ୍ଟ ନଥିଲେ, ଚିନ୍ତିତ ଥିଲେ । ବରପାତ୍ର କିମିତି ଖୋଜିବେ । ବୟସ ହେଇଗଲାଣି ଝିଅର । ଏଣେ ଅଭ୍ରଅପାର ସମସ୍ୟା । - ତା'ହେଲେ କ'ଣ ପଢ଼ା ଛାଡ଼ିଲେ । ପଚାରେ ସୁରଭି ।

ନା, ମୁଁ ଜିଦ୍ କଲି, ପଢ଼ିବି ଆହୁରି । ଯୋଗ୍ୟ କରିବି ନିଜକୁ, ଠିଆହେବି ନିଜ ଗୋଡ଼ରେ । ପୁଣି ବହିଲା ଅଶାନ୍ତିର ଝଡ଼ । ସମସ୍ତେ କହିଲେ ଝିଅ ଅବାଧ ହେଲାଣି, ଅବାଟରେ ଯାଉଛି । ହାତଛଡ଼ା ହୋଇଯିବ । ମୁଁ ଯୁକ୍ତି କଲି- 'ଅଭ୍ରଅପା ଭଳି ମୁଁ ନିଜକୁ ମାଟିରେ ମିଶେଇବିନି', ମୋ ଜୀବନର ମୂଲ୍ୟ ଅଛି । ଶେଷରେ ପଣରଖିଲି - 'ପାଠ ଯଦି ପଢ଼ିବିନି ତ ଘରେ ରହିବିନି, ଚାଲିଯିବି ଆଶ୍ରମକୁ' । ସେତେବେଳେ ଆଶ୍ରମ ସହିତ ରୀତିମତ ସଂପର୍କ ରଖିଥାଏ । କେହୁ କହୁ ଶୁଭ୍ରମା ଅଟକିଯାନ୍ତି ତାଙ୍କୁ ଆନମନା ଦେଖି ଶୋଭା ପଚାରେ– "ସତରେ କ'ଣ ଆଶ୍ରମ ଚାଲିଗଲ ମା' ?" -ନାହିଁରେ ପିଲାଏ ଆଶ୍ରମ ଯିବାକୁ ହେଲାନି, ମିଳିଗଲା ପଢ଼ିବା ପାଇଁ ଅନୁମତି । ହେଲେ ଜୀବନରେ ବଡ଼ ଅବସୋସ ରହିଗଲା - ବୋଉକୁ ମୁଁ ଖୁସି କରିପାରିଲିନି । ସବୁଦିନ ପାଇଁ ସେ ଅସନ୍ତୁଷ୍ଟ ହିଁ ରହିଗଲା ମୋ ଉପରେ । ତା'ର ସ୍ୱପ୍ନ ରୂପ ପରିଗ୍ରହ କଲାନି । ଆଉ ଶହେଟା ଝିଅଙ୍କ ଭଳି ମୁଁ ସଂସାର କଲିନି । ଚିରାଚରିତ ରାସ୍ତାରେ ନ ଚାଲି ମୁଁ ଭିନ୍ନ ରାସ୍ତା ଗଢ଼ିଲି ମୋ ପାଇଁ । ସମାଜର ଚକ୍ଷୁଶୂଳ ହେବାକୁ ପଡ଼ିଲା । ବୋଉ ମୁହଁକୁ ଚାହିଁଲେ ମୁଁ ଦୋହଲି ଯାଉଥିଲି ମୋ' ଭିତରେ । ନିଜକୁ ଯଥାସମ୍ଭବ ଦୃଢ଼ରଖିବା ପାଇଁ ମୋତେ ବେଳେବେଳେ ନିଷ୍ଠୁର ହେବାକୁ ପଡ଼ିଛି । ଦୁଃଖୀ ହୋଇଛି ବୋଉ ମୋ ବ୍ୟବହାରରେ । ପରବର୍ତ୍ତୀ ସମୟରେ ପରିସ୍ଥିତି ଯଦିଓ ବଦଳି ଯାଇଥିଲା ମୋର ଦୁର୍ଭାଗ୍ୟ, ବୋଉ ନଥିଲା ମୋ ସଫଳତା କି ବିଫଳତାକୁ ଦେଖିବା ପାଇଁ । ମୁଁ ବି ତାକୁ କ୍ଷମା ମାଗି ପାରିଲିନି କେବେ ।

ବୋଉ ଚାଲିଗଲା ଆରପାରିକୁ । ଅଭ୍ରଅପା ତା' ପାଇଁ ଏକ ମାନସିକ ଆଘାତ ଥିଲା, ତା' ସହିତ ମୋର ଜିଦ୍‌ପଣ ।

ସେଇ ସମୟଟା ଥିଲା ମୋ ପାଇଁ ଅଗ୍ନିପରୀକ୍ଷାର ବେଳ । ମୁଁ କଲେଜରେ ପଢୁଥାଏ । ଅଭ୍ରଅପାର ମାନସିକ ସ୍ଥିତିରେ କୌଣସି ପରିବର୍ତ୍ତନ ଆସିନଥିଲା । ଶାଶୂଘର ସହିତ ତା'ର ସଂପର୍କ କଟି ଯାଇଥିଲା । ଦେବଜ୍ୟୋତି ପୁଣି ବିବାହର ବ୍ୟବସ୍ଥା କରୁଥିଲା । ସବୁବେଳେ ତ ପୁରୁଷ ସୁବିଧାବାଦୀ । ସମାଜ ଆଖିରେ ସୁନାପୁଅ । ନିଜ ସ୍ୱାର୍ଥରୁ କାଣିଚାଏ ବି ଛାଡ଼ିବାକୁ ପ୍ରସ୍ତୁତ ନୁହେଁ । ଭାବିଲାବେଳକୁ ମନ ବିଦ୍ରୋହୀ ଉଠୁଥିଲା । ବୋଉ ଚାଲିଗଲା ପରେ ଆମେ ତିନିଜଣ ଏକୁଟିଆ ହୋଇଗଲୁ ନିଜନିଜ ଭିତରେ । ଅଥଚ ଏକା ଛାତ ତଳେ ଦିନରାତି କଟଉଥିଲୁ । ବାପା ବି ଥିଲେ - ତଥାପି ଆମେ ଏକା ହୋଇଯାଇଥିଲୁ । କହିଲାବେଳେ ସେ ଭାବୁକ ହୋଇପଡ଼ନ୍ତି । କୁହନ୍ତି, 'ସେଇଦିନମାନଙ୍କରେ ମୁଁ ଅନେକ ଭାବିଛି ରାତିରାତିଧରି ବୋଉଟା ହିଁ କ'ଣ 'ଘର' ଥିଲା ! ବୋଉ ମାନେ 'ଘର' ! ବୋଉ ନାହିଁ ତ 'ଘର'ର ମାନେ କିଛି ନାହିଁ ? ବୋଉ ହିଁ ଥିଲା ଆମମାନଙ୍କ ଭିତରେ ଏକ ଟାଣୁଆ ଯୋଗସୂତ୍ର- ଯିଏ କେବଳ ପରିବାର କାହିଁକି ସବୁ ଆତ୍ମୀୟସ୍ୱଜନଙ୍କୁ ବାନ୍ଧି ରଖିଥିଲା ସେଇ ସୂତାଖିଅକରେ । ସୂତା ଛିଣ୍ଡିଗଲା ତ ବିପର୍ଯ୍ୟସ୍ତ ହୋଇଗଲା ସବୁକିଛି । ଇଏ କେମିତି କଥା ।

ଏବଂ ମୁଁ ଖୋଜିଛି ତା'ର ଉତ୍ତର । ପ୍ରଶ୍ନ କରିଛି ନିଜକୁ କ'ଣ ସେଇ ସୂତାର ସ୍ୱରୂପ ? କୋଉଥିରେ ସେ ତିଆରି ? ଭାବରେ ନା ଆପଣାପଣରେ ? ତ୍ୟାଗରେ ନା ଜନ୍ମଜନ୍ମ କ୍ରମରେ ବହି ଆସିଥିବା ରକ୍ତର ଧାରାରେ ? ନା, ନ'ମାସ ଗର୍ଭରେ ଧରି ରଖିବାର ଅଧିକାର ଏଇଟା ? କ'ଣ, କୋଉ ଅଲୌକିକ ରେଶମ ସୂତାରେ ତିଆରି ଏଇଟା ??

ହେଲେ ଏଯାଏ ବି ମନକୁ ବୁଝେଇଲା ଭଳି ଉତ୍ତରଟିଏ ମିଳିନି ମୋତେ । କେବଳ ନିଜକୁ ନିଜେ ବୁଝେଇଛି, ନାରୀଟିଏ ହିଁ ମା'ଟିଏ । ମା' ଶବ୍ଦରେ ଅଦ୍ଭୁତ ଶକ୍ତି ଅଛି ପୃଥିବୀଟାକୁ ଆପଣାର କରିବା ପାଇଁ, ବାନ୍ଧି ରଖିବା ପାଇଁ ଯାହା ପୁରୁଷ ଦ୍ୱାରା ସମ୍ଭବ ନୁହେଁ ।

କଥାଲହସରେ ରାତି ବଢ଼େ । ପ୍ରିୟମ୍ବଦା ଓ ସୁରଭି କମଳାମାଉସୀଙ୍କୁ ବରାଦ କରନ୍ତି ଚା ଟିକିଏ କରିବାପାଇଁ । ବଢ଼ନ୍ତି ରାତିରେ ଷ୍ଟୋଭ ଉପରେ ଚାହା ଡ଼େକଚି ବସେ । ଚା ଖାଉ ଖାଉ ଶୁଭ୍ରମା ଅଧା ରଖିଥିବା କଥାକୁ ପୁଣି ଆରମ୍ଭ କରନ୍ତି ।

କୋଉ ସୁଖର କଥା ଯେ, ଶୁଣିବାକୁ ଉଚ୍ଛନ୍ନ ହେଉଛ ପିଲେ... ଖାଲି ତ ସଂଘର୍ଷ... ଲଢ଼େଇ ... ଯୁକ୍ତିବିତର୍କ ଆପଣା ଅଧିକାର ମାଗିବାପାଇଁ । ସେଥିପାଇଁ ବି କେତେ ପ୍ରତିରୋଧ, ବିରୋଧ, ପ୍ରତିବାଦ, ନାକଟେକା । ଭାବିଲେ ଆଜି ଆଶ୍ଚର୍ଯ୍ୟ ଲାଗେ ମୋତେ, କେମିତି ସମ୍ଭବ ହେଲା ଏସବୁ ! ମନେହେଉନି କେବେ ମୁଁ ହାରମାନି ପଛଘୁଞ୍ଚା ଦେଇଛି । କାମ ସରିନି, ଲକ୍ଷ୍ୟ ପୂରଣ ହେଇନି । କାହାଣୀ ବି ମୋର ସରିନି... ଅନେକ ପୃଷ୍ଠା ବାକି ରହିଛି ଲେଖା ନ ହୋଇ ।

ସେଇବର୍ଷର କଥା କହୁଛି ... ବୋଉ ଚାଲିଗଲା ପରେ - ଅଭ୍ରଅପାକୁ ଏକା ଛାଡ଼ି ମୁଁ କୁଆଡ଼େ ଯାଇପାରୁ ନ ଥାଏ । ବୋଉ ଚାଲିଯିବାର ଆଘାତ ବି ମନରୁ ଲିଭି ନ ଥାଏ । ସେତିକିବେଳେ ଅଚାନକ ଦିନେ ଦୁର୍ଘଟଣାଟିଏ ଘଟି ଆମ ପାରିବାରିକ ଜୀବନକୁ ସ୍ତମ୍ଭୀଭୂତ କରିଦେଇଥିଲା । ତାଙ୍କୁ ଘେରି ବସିଥିବା ଶୋଭା, ସରଳା, ସୁରଭି, ସୁଧା ପ୍ରିୟମ୍ବଦା, ସୁଜାତା ହେରିକା ଆହୁରି ପାଖକୁ ଲାଗିଆସନ୍ତି ଉଦ୍‌ଗ୍ରୀବ ହୋଇ । ସତେଯେମିତି କୌଣସି ରହସ୍ୟ ରୋମାଂଚକର କାହାଣୀ ଶୁଣୁଛନ୍ତି ... କି ଦୁର୍ଘଟଣା ଘଟିଲା ପୁଣି !

ଶୀତ ସରି ନ ଥାଏ... ବସନ୍ତ ପଞ୍ଚମୀ ଥାଏ ଆଗକୁ । ପତଳା କୁହୁଡ଼ିର ଆସ୍ତରଣରେ ଘୋଡ଼େଇ ହୋଇ ବିକ୍ରମପୁରର ନିଦ ପୂରା ଭାଙ୍ଗିନଥାଏ । ମୁଁ ଏବଂ ଅଭ୍ରଅପା ଏକାଠି ଶୋଉ । ଅଭ୍ରଅପାକୁ ପ୍ରାୟ ନିଦ ହୁଏନି । ଚାହିଁଥାଏ, ଭାବୁଥାଏ କ'ଣସବୁ । ଆଗରେ ପରୀକ୍ଷାଥାଏ ବୋଲି ମୁଁ ଟିକିଏ ବିଳମ୍ବରେ ଶୁଏ ପଢ଼ାସାରି । ସେ'ଦିନ ବି ମୁଁ ବିଳମ୍ବରେ ଶୋଇଥିଲି । ନିଦ ଗାଢ଼ ଥିଲା ।

ହଠାତ୍ ଦାଣ୍ଡଦୁଆର ଖଟ୍‌ଖଟ୍ ହେଲା । କିଏ ଡାକୁଛି... ନିଦ ଭାଙ୍ଗିଗଲା... କଞ୍ଚାନିଦ ଆଖି ପୋଡୁଥିଲା, ଉଠିପଡ଼ିଲି । ସତ କି ସ୍ୱପ୍ନ ଭାବୁଭାବୁ ମାଡ଼ିଗଲି ଦାଣ୍ଡଦୁଆର ପର୍ଯ୍ୟନ୍ତ । ଆଶ୍ଚର୍ଯ୍ୟ !! ଦୁଆର ଖୋଲା ! ରାତିରେ କ'ଣ ଭୁଲିଯାଇଛି ଦୁଆର ଦେବାକୁ । ଦରଆଉଜା ଦୁଆରଟାକୁ ଖୋଲିଦେଇ ଚମକି ପଡ଼ିଲି... ନିଦ ଉଡ଼ିଗଲା ଆଖିରୁ । ବାପା ଉଠିନଥାନ୍ତି । ବାହାରେ ଅଂଧାରଥାଏ, ତା' ସାଂଗକୁ ପତଳା କୁହୁଡ଼ି । ଦେଖେ ତ, ବାରଣ୍ଡା କଡ଼କୁ ମଣିଷ ଦି'ଜଣ ଠିଆ ହୋଇଛନ୍ତି । ପୁରୁଷଟି ହାତରେ ଗରାଟିଏ, ପାଖରେ ସ୍ତ୍ରୀଲୋକଟିଏ... ଆରେ ! ଚମକି ପଡ଼ିଲି ନିଜ ଭିତରେ । ଅପା !! ଅଭ୍ରଅପା, ଏଠି କିମିତି... କୁଆଡ଼େ ଯାଇଥିଲା ଏତେ ରାତିରେ, ମୁଁ ତ ଜାଣିନି । ଟାଙ୍କୁରି ଉଠିଲା ରୋମମୂଳ ପାଦତଳୁ ମାଟି ଭୁଶୁଡ଼ିଗଲା ସତେ କି ! ହେ ଭଗବାନ ! ଏ ଲୋକଟି ପୁଣି କିଏ ? ପୁଣି ଅପା ସଂଗେ କାହିଁକି ??

ପ୍ରଶ୍ନର ଉତ୍ତର ଖୋଜିବା ପୂର୍ବରୁ ଭାବିଲି କ'ଣ କରିବି ? ବାପାଙ୍କୁ ତ ଡାକିବି, ଭାବୁଛି, ଭଦ୍ରଲୋକ ଜଣକ ଅଭ୍ରଅପାର ହାତଧରି ପଶିଆସିଲେ ଘର ଭିତରକୁ ସିଧା । ମୁଁ କାନ୍ଥକୁ ଆଉଜିଗଲି । ମୋ ଡାକରେ ବାପା ଉଠି ଆସିଥିଲେ । ଆମ ବିସ୍ମୟର ସୀମା ନଥିଲା । ଘଟଣାଟି ଏମିତି ଥିଲା -

**ଅଭ୍ରମଣି ଓ ଶଶାଙ୍କ ମହାତୋ :**

କୌଣସି ଭୂମିକା ନ କହି ଭଦ୍ରଲୋକ ନିଜ ପରିଚୟ ଦେଲେ– ମୁଁ ଶଶାଙ୍କ ମହାତୋ । ଜଣେ ସ୍ୱେଚ୍ଛାସେବୀ, ବିବେକାନନ୍ଦ ମାର୍ଗୀ । ଆମ ଅନୁଷ୍ଠାନ 'ଉଠ ଓ ଜାଗ'ର ଶିବିର ପ୍ରାୟ ଏକମାସ ହେଲା ଚାଲିଛି ଏଇ କିଛି ଦୂରରେ । ଆମେ ନିତି ପ୍ରାତଃ ଭ୍ରମଣରେ ଏଇ ରାସ୍ତାରେ ଆସୁ । ଆଜି ବି ଆସୁଥିଲି ବଂଧୁଙ୍କ ସହିତ । ପୋଖରୀ କୂଳର ନିଛାଟିଆ ପରିବେଶ ଦେଖି ବସିଯାଇଥିଲି ଯୋଗାଭ୍ୟାସ ପାଇଁ । ବଂଧୁ ଆଗେଇ ଯାଇଥିଲେ ଅନ୍ୟରାସ୍ତାରେ ।

ହଠାତ୍ ମୋର ଏକାଗ୍ରତା ଚହଲିଗଲା । ଛାଇଅଂଧାର ଭିତରେ ଜଣେ ମହିଳା ପାଣି ଭିତରେ ଏକୁଟିଆ ପଶିଲେ । ମୋତେ ଟିକିଏ ଅସ୍ୱାଭାବିକ ଲାଗିଲା । କୁହୁଡ଼ି ଭିତରେ ସ୍ପଷ୍ଟ ବାରି ହେଉନଥିଲା । ତେବେ ସେ ଅନେକ ସମୟଧରି ପାଣି ଭିତରେ ବୁଡ଼ି ରହୁଥିଲେ ଏବଂ ଉଠୁଥିଲେ ବାରଂବାର । ମନକୁ ପାପ ଛୁଇଁଲା । ନିଶ୍ଚୟ କିଛି ଅଘଟଣ ଘଟିବାକୁ ଯାଉଛି ହୁଏତ । କାଳବିଳମ୍ବ ନ କରି ମୁଁ ଉଠିଗଲି ତୁଠଆଡ଼କୁ ଏବଂ ପାଣିରେ ପଶିଲି ମୋ ସଂଦେହ ଅମୂଳକ ଥିଲା । ଭଦ୍ରମହିଳା ଆତ୍ମବିସର୍ଜନ ପାଇଁ ପ୍ରୟାସ କରୁଥିଲେ । କଥାଟା ଶୁଣିଲାବେଳକୁ ଚେତନା ସ୍ତବଧ ହୋଇଯାଇଥିଲା ଆମର । ଘଟଣା ସଫା ହୋଇଉଠିଥିଲା ଅଭ୍ରଅପା ବଡ଼ି ପାହାନ୍ତାରୁ ଉଠିଯାଇଥିଲା ଗାଁମୁଣ୍ଡ ପୋଖରୀକୂଳକୁ ଗାଧୋଇବା ବାହାନାରେ । ଶୀତ ପାହାନ୍ତି । ପ୍ରାୟ ଲୋକଙ୍କର ଆତଯାତ ନଥାଏ । ସେଇ ଥିଲା ତା' ପାଇଁ ପ୍ରକୃଷ୍ଟ ସମୟ । ଭାବିଲା, ଜୀବନ ଦୁର୍ବିଷହ ହୋଇଯାଉଛି ବେଳୁଁବେଳ । ବଂଚିବାର ମାନେ କିଛି ନାହିଁ । ଏଇ ଯନ୍ତ୍ରଣାରୁ ତା'ର ମୁକ୍ତି ଦରକାର । ବାସ୍ । କେହି ଜାଣିପାରିବେନି, ରାତି ପାହିଲାବେଳକୁ ସବୁ ଶେଷ ହୋଇଯାଇଥିବ । ଭରାପାଣିଗରାକୁ ବେକରେ ବାନ୍ଧିବାର ପ୍ରୟାସ କରୁକରୁ ପହଞ୍ଚି ଯାଇଥିଲେ ଶଶାଙ୍କ ମହାତୋ - ଈଶ୍ୱରଙ୍କ ଅଭିପ୍ରେତ ହୋଇ ତା' ନିକଟରେ । ପାଣି ଭିତରେ ଦୁହିଁଙ୍କର ବେଶ୍ କିଛି ସମୟ ଧରି ବାକ୍‌ବିତଣ୍ଡା ଚାଲିଥିଲା । ଶଶାଙ୍କ ମହାତୋ ଅଭ୍ରଅପାକୁ ନିବୃତ୍ତ କରିଥିଲେ ସେଭଳି ଅପକର୍ମରୁ ।

ପୂର୍ବ ଦିଗନ୍ତରେ ଫକୁଆ ଫାଟି ଆସୁଥିଲା । ଅନ୍ଧାର ଅପସରୁଥିଲା, ଅପାକୁ ସେ ହାତଧରି ନେଇଆସିଥିଲେ ଘରକୁ । ଆମ ପାଖରେ କୃତଜ୍ଞତା ପାଇଁ ଭାଷା ନଥିଲା - ଶଶାଙ୍କ ମହାତୋ ବାପାଙ୍କ ପାଖରେ କ୍ଷମା ମାଗୁଥିଲେ । ବାପା ତ ଭଳିଯାଉଥିଲେ କୃତଜ୍ଞତାର ଭାରରେ ମନେହୋଇଥିଲା । ଭଦ୍ରଲୋକ ଅଭ୍ରଅପାର ତ୍ରାଣକର୍ତ୍ତା ନୁହଁନ୍ତି; ସ୍ୱୟଂ ଈଶ୍ୱର ।

ଘଟଣାସବୁ ଏମିତି ଘଟେ, ଅଚାନକ । ନ କହି-ନ ପୁଛି ସମୟ ଆସି ପହଞ୍ଚିଯାଏ । ଆମେ ତାକୁ ବେଳେବେଳେ 'ସଂଯୋଗ' ବୋଲି କହୁ । ଠିକ୍ ସେମିତି ଘଟିଥିବା ଦୁର୍ଘଟଣାଟା ତା'ର ସ୍ୱରୂପ ଅନୁଯାୟୀ ପରବର୍ତ୍ତୀ ସମୟରେ ଐତିହାସିକ ଘଟଣାରେ ରୂପାନ୍ତରିତ ହୁଏ । ଆମ ପାଇଁ କେବଳ ନୁହେଁ, ସେଦିନର ଘଟଣାଟି ବିକ୍ରମପୁର ପାଇଁ ବି ଐତିହାସିକ ପାଲଟି ଯାଇଥିଲା । କହୁକହୁ ଲମ୍ବା ନିଃଶ୍ୱାସ ନେଇଥିଲେ ଶୁଭ୍ରମା । ଅଂଧାର ଭିତରକୁ ଚାହିଁ କହିଥିଲେ, ଏଇ ଅଂଧାର ରହିବନି ଆଉ ଟିକିଏ ଅପେକ୍ଷା କଲେ ଆଲୁଅ ଦିଶିବ, ବାଟ ଫିଟିଯିବ । କେବଳ ଧୈର୍ଯ୍ୟ ଦରକାର ଅସୀମ ଧୈର୍ଯ୍ୟ । ଏଇ ପାହାନ୍ତିଟା ହିଁ ସେମିତି । ଅଂଧାର ଆଉ ଆଲୁଅର ସନ୍ଧିସ୍ଥଳ । ଅଂଧାର ଜୀବନଯନ୍ତ୍ରଣାକୁ ପଛରେ ପକାଇ ଆଲୁଅକୁ ଜନ୍ମଦେବାର ଗୌରବରେ ଗରୀୟାନ । ସେଇଥିପାଇଁ ଆମ ଜୀବନରେ ପାହାନ୍ତିର ପ୍ରତିଷ୍ଠା ସବୁଠୁ ବେଶୀ - ଆର୍ଯ୍ୟ ପରଂପରା ଯାକୁ ଅମୃତ ସଂକେତ ବୋଲି କୁହେ ।

ତା'ପରବର୍ତ୍ତୀ ଘଟଣା ଜାଣିବାକୁ ପିଲାଙ୍କ ମନରେ କୌତୂହଳ ସୃଷ୍ଟିହେବା ଜାଣିପାରନ୍ତି ଶୁଭ୍ରମା । କୁହନ୍ତି, କ୍ରମଶଃ ଘଟଣା ଭିନ୍ନ ମୋଡ଼ ନେଲା । ଶଶାଙ୍କ ମହାତୋ ସମୟ ସୁଯୋଗ

ଦେଖି ଆମ ଘରକୁ ଆସୁଥିଲେ । ଖୋଲା ମନରେ ବାପାଙ୍କ ସହିତ ଆଲୋଚନା କରୁଥିଲେ । ହୁଏତ ବାପାଙ୍କର ରକ୍ଷଣଶୀଳ ଦୃଷ୍ଟିକୋଣକୁ ବଦଳାଇବା ପାଇଁ ପ୍ରୟାସ କରୁଥିଲେ । ବିବେକାନନ୍ଦଙ୍କ ସଂସ୍କାରବାର୍ତ୍ତା ଆମଘରର ଚୌହଦୀ ଡ଼େଇଁ ଭିତରଘରକୁ ପଶି ଆସୁଥିଲା । ଶଶାଙ୍କ ମହାତୋ ଖୁବ୍ ଭଲ ମଣିଷ ଥିଲେ । ଦରଦୀ ହୃଦୟର । ତାଙ୍କ ସଂସ୍କାରପ୍ରବଣ ମନୋବୃତ୍ତି ମୂଳରେ କୌଣସି ସ୍ୱାର୍ଥ କିମ୍ବା ଅହଂମନ୍ୟତା ନଥିଲା ବରଂ ଗଠନମୂଳକ ଥିଲା । କୁସଂସ୍କାରମୁକ୍ତ ଏକ ନବଭାରତର ଗଠନ ପାଇଁ ଯୁବପିଢ଼ିକୁ ଗଢ଼ିତୋଳିବାର ସଂକଳ୍ପ ନେଇ ସମଗ୍ର ଦେଶରେ ସଚେତନତାର ଶିବିର ଆରମ୍ଭ କରିଥିଲେ । ମନ୍ତ୍ରଥିଲା, "ଉଠ ଜାଗ, ଚିହ୍ନ ନିଜକୁ" ।

ସେ କହୁଥିଲେ, ଜୀବନ ତୁଚ୍ଛ ନୁହେଁ, ଉଦ୍ଦେଶ୍ୟହୀନ ନୁହେଁ । ନିଜ ଭିତରେ 'ବିରାଟ'ର ଯେଉଁଠି ଅଙ୍କୁର ଲୁଚିରହିଛି - ତାକୁ ଖୋଜ । ନିଜେ ବଂଚି ଅନ୍ୟକୁ ବଂଚେଇ ପାରିଲେ - ତା'ଠୁ ବଳି ତପସ୍ୟା କିଛି ନାହିଁ । କୁସଂସ୍କାର, ଅନ୍ଧବିଶ୍ୱାସର କୁଢ଼କୁଢ଼ ମଇଳା ଭିତରେ ପଚିସଢ଼ି ଯାଉଥିବା ସମାଜକୁ ପୁନଃଉଦ୍ଧାର କରିବାକୁ ହେବ । ପୁରୁଷଶାସିତ ସମାଜରେ ନାରୀପ୍ରତି ଅବିଚାର ଆମ ପାରିବାରିକ ଜୀବନକୁ ବିପର୍ଯ୍ୟସ୍ତ କରି ରଖିଛି । ତାକୁ ବଦଳେଇବାକୁ ପଡ଼ିବ । ଏଇ ଆବର୍ଜନା ସଫା ନକଲେ, ନୂଆ ଚେତନା, ନୂଆ ବିଚାର ଆସିବ କିମିତି ? ଜୀବନର ଲକ୍ଷ୍ୟ ଯେ ଆଗକୁ ଯିବା, ଉପରକୁ ଉଠିବା । ପାପ, ପୁଣ୍ୟ, ସ୍ୱର୍ଗନର୍କର ଧାରଣା କେବଳ ଆପେକ୍ଷିକ... ଏମିତି ଅନେକ କଥା ... ଶୁଣୁଶୁଣୁ ମଗ୍ନ ହେଇଯାଉଥିଲା ମନପ୍ରାଣ । ଆଚାର, ବିଚାର ଆଉ ପୋଷାକରେ ସନ୍ନ୍ୟାସୀ ମନେହେଉଥିବା ମଣିଷଟା ମନ-ବଚନ-କର୍ମରେ ଜଣେ ସୁପୁରୁଷ ଥିଲେ । ଏକଥା ସେ ପ୍ରମାଣ କରିଦେଇଥିଲେ ପରବର୍ତ୍ତୀ ସମୟରେ । ଗାଁଲୋକେ ଭଲଆଖିରେ ଦେଖିନଥିଲେ ଆମଘର ସହିତ ତାଙ୍କର ସଂପର୍କକୁ । ତଥାପି ଶଶାଙ୍କ ମହାତୋ ଆସୁଥିଲେ ।

ସବୁଠୁ ବଡ଼ କଥା ଥିଲା ଅଭ୍ରଅପା ଓ ତା'ର କ୍ଷତବିକ୍ଷତ ମନ । ଶଶାଙ୍କ ମହାତୋଙ୍କ ଯିବାଆସିବା ତାଙ୍କର ଅନ୍ତରଂଗପଣ, ସହାନୁଭୂତିଶୀଳତା, ଜୀବନପ୍ରତି ନୂଆ ଦୃଷ୍ଟିକୋଣ – ଆମ ସଭିଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା । ଆମ ପାଇଁ ସବୁଠୁ ବେଶୀ ଆଶ୍ୱାସନାର ବିଷୟ ଥିଲା ଅଭ୍ରଅପାର ପରିବର୍ତ୍ତନ । କ୍ରମଶଃ ସେ ସହଜ ଏବଂ ସ୍ୱାଭାବିକ ହେଉଥିଲା । ସଂସାର ବିମୁଖ ମନ ତା'ର ଏଣିକି ଛୋଟମୋଟ ଘର କାମ କରିବାକୁ ମୁହାଁଉଛି । ଶଶାଙ୍କବାବୁ ଆସିଲେ ତା' ମୁହଁରେ ଆଲୁଅ ଝଲସି ଉଠୁଛି । ତା' ଚେତନମନର ଅନ୍ତରାଳରେ ଯେ, ଅହରହ କିଛି ଗୋଟାଏ ଭଙ୍ଗାଗଢ଼ା ଚାଲିଥିଲା; ମୁଁ ତା'ର ଅତି ନିକଟରେ ଥାଇ ଅନୁମାନ କରିପାରୁଥିଲି । ପରିବର୍ତ୍ତନର ପବନ ଛୁଆଁରେ ପଲ୍ଲବୀ ଉଠୁଥିଲା ମଉଳାମନର ଶାଖାପ୍ରଶାଖା ସବୁ । ଜୀବନ ଆଡ଼କୁ ଫେରୁଛି ଅଭ୍ରଅପା, ଇଏ କିଛି କମ୍ କଥା ନୁହେଁ । ବାପା ଆଶ୍ୱସ୍ତ ହୋଇଥିଲେ ।

ଦି'ମାସ କଟିଗଲା ଏମିତି... ଶିବିର ସରିଲା । ଶଶାଙ୍କ ମହାତୋଙ୍କୁ ଫେରିଯିବାକୁ ହେଲା । ଅଭ୍ରଅପା ମୁହଁ ଶୁଖିଗଲା କଥାଟା ଶୁଣୁଶୁଣୁ । ମନେହେଲା, ପୁଣିଥରେ ସେ ଯେମିତି ନିଜକୁ ଅସହାୟ ମନେକରୁଛି ।

ହୁଏତ ଲକ୍ଷ୍ୟ କରିଥିଲେ ଭଦ୍ରଲୋକ ଅପା ମୁହଁର ପ୍ରତିକ୍ରିୟାକୁ । ଆଶ୍ୱାସନା ଦେଲେ ପରୋକ୍ଷରେ । ପୁଣି ଶୀଘ୍ର ଫେରିଆସିବାର ପ୍ରତିଶୃତି ବି ଶୁଣେଇଲେ । ହେଲେ ଆମ ମନରେ ସଂଶୟ ସୃଷ୍ଟିହେଲା । କାହିଁକି ବି ଫେରିବେ ସେ । ତାଙ୍କ କାମ ତ ସରିଛି । ବାପା ଚିନ୍ତାରେ ପଡ଼ିଲେ, ଯଦି ଅଭ୍ରମଣିର ସଜଡ଼ା ମନ ପୁଣି ବିପର୍ଯ୍ୟସ୍ତ ଆଡ଼କୁ ଯିବ ! କ'ଣ କରିବେ ସେ ? ଅଭ୍ରର ମନ ବଡ଼ ସମ୍ବେଦନଶୀଳ । ଏଇ ସମସ୍ତ ମାନସିକ ଚାପ ଭିତରେ ମୋ' ପରୀକ୍ଷା ବି ସରିଲା ।

ଦିନେ ଆଉ ଏକ ଘଟଣା ଘଟିଲା ଅଭାବିତ ଭାବେ । ଆଗକୁ ଚମକେଇ ଦେଇ- ଚିଠିଟିଏ ଆସି ପହଞ୍ଚିଲା ଶଶାଙ୍କ ମହାତୋଙ୍କ ପାଖରୁ । ସତ କହିଲେ ଅସୁମାରି ସୁଖ ଆଉ ସ୍ୱପ୍ନର ବୋଝ ନେଇ ଆସିଥିଲା ଚିଠିଟି । ଏବଂ ବୋଝ ଖୋଲୁ ଖୋଲୁ ଆନନ୍ଦର ଜୁଆର ଉଛୁଳି ଉଠିଲା ଆମ ଭିତରେ । ସୁଖବର ଥିଲା । ଶଶାଙ୍କବାବୁ ଅଭ୍ରମଣିକୁ ଆପଣାର କରିବାକୁ ଚାହାଁନ୍ତି । ସେ ନିଜେ ହିଁ ରଖିଥିଲେ ଏଇ ବିବାହ ପ୍ରସ୍ତାବ ।

ବାପା ଖୁସି ହେଲେ ସତ, ଦ୍ୱିଧାଗ୍ରସ୍ତ ବି ହେଲେ । ଜାତି, କୁଳ, ଗୋତ୍ର, ପରିବାର ନେଇ ପ୍ରଶ୍ନ ଉଠେଇବେ ସମାଜ, ଆତ୍ମୀୟସ୍ୱଜନ । ପୁଣି ଝିଅର ଦ୍ୱିତୀୟ ବିବାହ । ଏଯାଏ ବିକ୍ରମପୁରରେ କେବେ ଘଟିନି । ସୃଷ୍ଟିହେଲା ଛୋଟମୋଟର ଝଡ଼ ।

ମୋତେ ହତାଶ ଲାଗିଲା । ଶଶାଙ୍କବାବୁଙ୍କ ଏତେ ଉପଦେଶ, ପ୍ରବଚନ ମାଟିରେ ମିଶିଯିବ ! ଘଟଣା କେବେ ଘଟିନଥିଲା ବୋଲି କ'ଣ ଏବେ ଘଟିବନି ? ସେଇଥିପାଇଁ ତ ସେ ଘଟଣା । ସମାଜର ଗମରା ମନକୁ ଗୁରୁତ୍ୱ ଦେବାକୁ ଯାଇ ଅଭ୍ରଅପାକୁ ଆମେ ହରେଇ ବସିବୁ ? ସମାଜ ବଡ଼ ହୋଇଗଲା ଜୀବନ ଆଗରେ ?

ହୋଇପାରିବନି । ନା, ଏକଥା ଘଟିବାକୁ ମୁଁ ଦେବିନି । ନିଜକୁ ମୁଁ ଶକ୍ତ କଲି । ଆବଶ୍ୟକ ପଡ଼ିଲେ ମୁଁ ବାପା ଆଉ ସମାଜ ବିରୋଧରେ ଯିବି ପଛେ । ଶୁଭ୍ରମା' ହସିହସି କୁହନ୍ତି ବୁଝିଲ ପିଲାଏ, ତମକୁ ଆଜି ବିଶ୍ୱାସ ଲାଗିବନି ହୁଏତ । ମୁଁ ନିଜେ ବି ବିଶ୍ୱାସ କରିପାରୁନି, ସେଦିନ କିନ୍ତୁ ମୁଁ ମୋ' ବୟସ ତୁଳନାରେ ଖୁବ୍ ବଡ଼ ହେଇଯାଇଥିଲି, ବାପାଙ୍କୁ ଶାସିଲା ଭଳି ବଡ଼-ରୁ ବିରାଟ । ଯୁକ୍ତି କରିଥିଲି; ଅନୁକୂଳତା ଆମ ଦୁଆରେ ଆସି କେବେ ମଥା ପିଟିବନି । ପ୍ରତିକୂଳତା ବିରୋଧରେ ଲଢ଼େଇକରି ଜୀବନକୁ ପ୍ରତିଷ୍ଠା କରିବାକୁ ହେବ । ସେଇ ହେବ ଅସଲ ପୁରୁଷାର୍ଥ - ମଣିଷପଣ । ଅଭ୍ରଅପାର ଜୀବନକୁ ନେଇ କେହି ଖେଳି ପାରିବେନି ଆଉ । ତୁମେ, ତମ ସମାଜ, ସମାଜର ଚଳଣି ସବୁକିଛି ପୁରୁଣା ଫିମ୍ପିଲଗା ହେଇଗଲାଣି । ଆବେଗର କିଛି ମାନେ ନାହିଁ ।

ବାପା ତଟସ୍ଥ ହୋଇଯାଇଥିଲେ ମୋ' ଯୁକ୍ତିରେ । ଝିଅଟାର କମ୍ ସାହସ ନୁହେଁ ତ ? ଅବଶ୍ୟ ମୋର ଏଇ ଦୃଢ଼ ସଂକଳ୍ପ ପଛରେ ମା'ଙ୍କର ଆଶୀର୍ବାଦ ଥିଲା । ପ୍ରୋତ୍ସାହନ ଥିଲା, ଏବଂ ଏଇଥିଲା ମୋ କର୍ମମୟ ଜୀବନର ପ୍ରଥମ ଉପୋଦ୍‌ଘାତ । କିଛି କରି ଦେଖେଇଦେବା

ପାଇଁ ସାହସ ଭରିଦେଇଥିଲା ନିଜ ଉପରେ; ବିଶ୍ୱାସ ବଢ଼ିଲା । ତା' ପରଠୁ ମୁଁ କେବେ ପଛକୁ ଫେରିନି । ଅଭ୍ରଅପାର ବାହାଘର ମୋ ଜୀବନର ଏକ ଐତିହାସିକ ପଦକ୍ଷେପ, ଏବଂ ଯାର ସଫଳତା ମୋ ମନରେ ଯେତେ ଆନନ୍ଦ ଓ ଉତ୍ସାହ ଭରିଦେଇଥିଲା - ସେଇ ଅନୁଭବ ଆଉ କୋଉଠି ହେଇନି ।

ଅଭ୍ରଅପା ଶଶାଙ୍କବାବୁଙ୍କ ହାତଧରି ସଂସାର କରିବାକୁ ଗଲା ଖୁସି ମନରେ । ବିକ୍ରମପୁର ଆଖପାଖ ଅଂଚଳର ଆଉ କିଛି ବିଡ଼ମ୍ବିତ ଝିଅଙ୍କ ପାଇଁ ଉଦାହରଣ ପାଲଟିଗଲା ବି । କୋଡ଼ିଏ ବର୍ଷ ଘର କଲା ଅପା । ଝିଅ 'ସମ୍ଭାବନା' ଅନେକ ଅନେକ ସମ୍ଭାବନାକୁ ନେଇ ଏବେବି ବାପାଙ୍କ ଆଦର୍ଶରେ ଅସହାୟ ମହିଳାଙ୍କ ପାଇଁ କାମ କରୁଛି - ତମେମାନେ ବି ଜାଣିଛ । ଖୁସି ଅଛି, ଖୁବ୍ ନାଁ କରିଛି ତା'ର ଅନୁଷ୍ଠାନ 'ନାରୀ ଶିକ୍ଷାୟତନ' । ସେଥିରେ ବହୁପ୍ରକାର ସୁବିଧା ସୁଯୋଗ ରହିଛି ମହିଳାଙ୍କ ପାଇଁ । ବହୁ ଅସହାୟ ବିଡ଼ମ୍ବିତାଙ୍କୁ ଉଦ୍ଧାର କରି, ଉପଯୁକ୍ତ ଶିକ୍ଷା ଓ ପ୍ରଶିକ୍ଷଣ ମାଧମରେ ସେମାନଙ୍କୁ ସମାଜର ମୁଖ୍ୟ ସ୍ରୋତକୁ ଆଣି ଥଇଥାନ କରିବା, କିଛି କମ୍ କଥା ନୁହେଁ ।

ଝିଆରୀ 'ସମ୍ଭାବନା'ର କଥା କହିଲାବେଳେ ଶତମୁଖ ହୋଇଯାନ୍ତି ଶୁଭ୍ରମା । ମନେପକାନ୍ତି ଅଭ୍ରଅପା, ବାପା ଆଉ ବୋଉଙ୍କୁ - ଦେଖିଥାନ୍ତେ, କେମିତି ବଦଳି ଯାଇଛି ତାଙ୍କର ଘୁଣଖିଆ ସମାଜ ବ୍ୟବସ୍ଥା । ଭାବିଲାବେଳକୁ ତ ଟିକିଏ ଆଶ୍ୱସ୍ତ ଲାଗୁଛି, ତଥାପି ... ଦୀର୍ଘଶ୍ୱାସ ନିଅନ୍ତି ଶୁଭ୍ରମା, ଯେମିତି କୋଉଠି କିଛି ଖଟ୍‌କା ରହିଯାଉଛି ।

ସୁରଭି, ବୁଝିପାରେ କଥାର ବ୍ୟଞ୍ଜନା । ପଚାରେ 'ପୁଣି ଦୁଃଖ ରହିଲା କୋଉଠି ଆଉ ?' "ଦୁଃଖ ନାହିଁରେ, ଚିନ୍ତା, ସମୟକୁ ନେଇ", ସ୍ୱାଧୀନତାର ପ୍ରକୃତ ଅର୍ଥ ବୁଝି ନ ପାରିଲେ ଅନର୍ଥ ଘଟିବ । ସମାଜ ପୁଣି ତା'ର ସୁଯୋଗ ନେବାକୁ ପଛେଇବନି । ସେଇକଥା ବେଳେବେଳେ ମନକୁ ଭାରାକ୍ରାନ୍ତ କରୁଛି । ନାରୀ ସ୍ୱାଧୀନ ସତ । ହେଲେ ଆମ ସମାଜରୁ ଅଶିକ୍ଷା ଦୂର ହୋଇନି । ନାରୀର ମର୍ଯ୍ୟାଦା ଓ ସମ୍ମାନ ରକ୍ଷା କରିବା ଦିଗରେ ସମାଜ ଆଜିବି ସଚେତନ ନୁହେଁ, ତେଣୁ ଶିକ୍ଷାର ଆବଶ୍ୟକତା ଜରୁରୀ ହୋଇପଡ଼ିଛି । ଆମକୁ ସଚେତନ ହେବାକୁ ପଡ଼ିବ ଏଇ ଦିଗରେ । ସୁଜାତା କଥାର ଖିଅ ଧରି ପ୍ରଶ୍ନକରେ, ଅଭ୍ରଅପାର ବାହାଘର ପରେ ଆପଣ ତ ଏକା ହୋଇଯାଇଥିବେ ନା ?

ମୁଁ ଆଉ ଏକା ହେଲି କେତେବେଳେ । ପଢ଼ା ମୋର ସେତିକିରେ ରହିଲା, ଅଭ୍ରଅପା ଗଲା ପରେ ମୁଁ ଚାଲିଗଲି କନ୍ୟାଶ୍ରମ - କିଛି ମାସ ପାଇଁ । ବାପା ଘରେ ଥିଲେ, ମଝିରେ ମଝିରେ ଆସି ଦେଖି ଯାଉଥିଲି ତାଙ୍କୁ । ବେଶି ଦିନ ସେ ବଂଚି ନ ଥିଲେ । ତାଙ୍କର ଦେହାନ୍ତ ପରେ ବିକ୍ରମପୁର ଛାଡ଼ିବା ପାଇଁ ନିଷ୍ପତ୍ତି ନେଲି । କାରଣ ବିକ୍ରମପୁର ମୋ ପାଇଁ ଉପଯୁକ୍ତ କର୍ମସ୍ଥଳୀ ହୋଇପାରି ନ ଥାନ୍ତା । ସହରରେ ନାରୀ ବହୁ ସମସ୍ୟାର ସମ୍ମୁଖୀନ ହେଉଛି । ସେତେବେଳେ ସମସ୍ତେ ପ୍ରାୟ ସହରମୁଖୀ ହେଉଥିଲେ । ତେଣୁ ବିକ୍ରମପୁର ଘର ବିକ୍ରିକରି,

ସେଇ ଅର୍ଥରେ ଏଇ 'ଆଶ୍ରୟ' ଜନ୍ମନେଲା, ତମର, ମୋର ଆମ ସମସ୍ତଙ୍କ ଆଶ୍ରୟ । ଛୋଟ ପରିବାର ବଦଳରେ ପାଇଲି ଗୋଟିଏ ବଡ଼ ପରିବାର - ଯା'ର ଦିଗନ୍ତ ବ୍ୟାପକ । କାମ ଅପର୍ଯ୍ୟାପ୍ତ...

ଅମୃତସ୍ୟ କନ୍ୟା :

'ଆଶ୍ରୟ'ର ପ୍ରଥମ ପ୍ରଭାତୀ ଘଣ୍ଟା ବାଜେ ରାତି ପାହିବାର ସୂଚନା ଦେଇ । ସଭିଙ୍କର ଆଚ୍ଛନ୍ନତା କଟିଯାଏ । ଶୁଭ୍ରମା କଥାର ଖିଅ ଛିଣ୍ଡାଇ ଅତୀତ ଭିତରୁ ଫେରନ୍ତି । ଗୋଟା ରାତିଟା କଟିଗଲା କଥାରେ କଥାରେ । ତାଙ୍କର ଖିଆଲ ହିଁ ନାହିଁ । ଏଇ ପିଲାଙ୍କ ଗହଣରେ ଥିଲେ, ଆଜିକାଲି ତାଙ୍କର ସମୟଜ୍ଞାନ ରହେନି । ଖୁବ୍ ସ୍ନେହୀ ମଣିଷ । କିଣିନେବେ ସ୍ନେହରେ । ସରଳା ମନେପକେଇ ଦେଲା, ଆଜିପରା ବାହାରକୁ ଯିବା କାର୍ଯ୍ୟକ୍ରମ ଥିଲା - ଦକ୍ଷିଣ ଓଡ଼ିଶାର ଆଦିବାସୀ ଇଲାକାକୁ ?

'ଆରେ ସତେତ' । ମନେ ନ ଥିଲା - ସେଠି ଆମର ଶିବିର ଚାଲିବ । ପନ୍ଦରଦିନ ହେଲାଣି କ'ଣ ଗୋଟାଏ ଅଜଣା ଜ୍ୱରରେ ରାସପୁରରେ ଚାରିପାଞ୍ଚଜଣଙ୍କ ମୃତ୍ୟୁ ହେଲାଣି । ଆଜି ଡାକ୍ତରଦଳ ଯିବେ । ହୁଏତ ସରକାରୀ ଅଫିସର ବି ଆସିପାରନ୍ତି । ଶିବିର ଚାଲିବ ତିନି ଚାରିଦିନ, ଆବଶ୍ୟକ ହେଲେ କିଛିଦିନ ଅଧିକା ବି ଚାଲିପାରେ । ସ୍ୱାସ୍ଥ୍ୟ ସଂପର୍କରେ ଲୋକଙ୍କୁ ସଚେତନ କରିବାକୁ ପଡ଼ିବ । ଖାଦ୍ୟ, ଔଷଧ ବଣ୍ଟାଯିବ । ଫେରିଲାବେଳେ ରାସପୁର କନ୍ୟାଶ୍ରମ ଦେଇ ସେ ଆସିବେ । ସେଠି ଗ୍ରାମାଞ୍ଚଳ ସ୍କୁଲର ଶୁଭାରମ୍ଭ ହେଉଛି । ଅନେକ କାମ ... ତରବର ହୋଇ ଉଠୁଉଠୁ ବ୍ୟସ୍ତ ହୋଇ କହିଲେ ଅଶିକ୍ଷା ଆମ ଦେଶର ମଣିଷଙ୍କ ପ୍ରଧାନ ଶତ୍ରୁ ହୋଇ ରହିଲା ସବୁବେଳେ ।

କେତେ ନିରଳସ ଟିକିଏ ବି କ୍ଳାନ୍ତି ନାହିଁ ଏଇ ପରିଣତ ବୟସରେ ବି । ଭାବିଲେ ଆଶ୍ଚର୍ଯ୍ୟ ଲାଗେ ସୁଧା, ସରଳା, ଶୋଭାବତୀକୁ । ଗଲା ସପ୍ତାହସାରା ସେ ଗସ୍ତ କରିଥିଲେ ପଶ୍ଚିମ ଓଡ଼ିଶା । ସେଠି 'ସଗରପାଲି ନାରୀ ସମାଜ' ନିଶା ନିବାରଣ କାର୍ଯ୍ୟକ୍ରମକୁ ହାତକୁ ନେଇ ମଦଦୋକାନ ଓ ମଦଭାଟିମାନ ଭାଙ୍ଗିଦେଇଥିଲେ । ଆଇନ ଶୃଙ୍ଖଳା ପରିସ୍ଥିତି ବିପର୍ଯ୍ୟସ୍ତ ହୋଇଥିଲା । କିଛି ମହିଳାଙ୍କୁ ଗିରଫ କରିଥିଲା ପୋଲିସ୍ । ଶୁଭ୍ରମା ଯାଇଥିଲେ ସେମାନଙ୍କୁ ସମର୍ଥନ ଦେବାକୁ । ତାଙ୍କ ଅମୃତ ହାତର ସ୍ପର୍ଶ କେଉଁଠି ନ ପହଞ୍ଚେ ଯେ ! ମଣିଷ ପାଇଁ ତ ତାଙ୍କର ଦରଦ ଅମାପ । କାହାର ଟିକିଏ ଉପକାର କରିଦେଲେ ତାଙ୍କୁ କୋଟିନିଧି ମିଳିଯାଏ ।

ଶୋଭା ନିଜେ ଯେତେବେଳେ 'ଆଶ୍ରୟ'କୁ ଆସିଲା, ସେଇ ସମୟର କଥା ମନେପଡ଼ିଲେ ତା' ରୋମମୂଳ ଟାଙ୍କୁରି ଉଠେ । ଶରୀରର ଅନେକାଂଶ ପୋଡ଼ି ଯାଇଥିଲା । ସେ କ'ଣ ଭାବିଥିଲା ବଂଚିବ ବୋଲି । ପଡ଼ିଶାଘର ସଂପର୍କରେ ବଡ଼ବାପା ହେବେ, କେଜାଣି କିମିତି ଖବର ପାଇଲେ, ଶାଶୂ ନଣନ୍ଦଙ୍କ କବଳରୁ ଉଦ୍ଧାର କରି ନେଇଯାଇଥିଲେ ଡାକ୍ତରଖାନାକୁ ।

ଭାବୁଭାବୁ ଶୋଭା ଭୟରେ ଆଖି ବୁଜିଦିଏ, ଆଖି ଆଗରେ ନାଚିଉଠେ ସେଇ କାଳ ସଂଜ - ହୁତୁହୁତୁ ନିଆଁ ଭିତରେ ସେ ... ଦି'ଗ୍ଘରିଥର ଚିତ୍କାର କରି ବେହୋସ ହୋଇଯାଇଥିଲା - ହୋସ ଆସିଲା ବେଳକୁ ସେ ଡାକ୍ତରଖାନାରେ । ଆଖି ଖୋଲି ଗ୍ଘହିଁବାକୁ ଭୟ ଲାଗୁଥିଲା ଅନେକ ଦିନଯାଏ । ମନେହେଉଥିଲା, କିଏ ଜଣେ ଆସି ତା' ଦେହରେ ଟିଣରୁ କିରାସିନ ଢାଳି ଦେଉଚି ଆଉ ଜଣେ ଡିଆସିଲ୍ ମାରି ନିଆଁ ଧରଉଛି... ଚିତ୍କାର କରି ଉଠୁଥିଲା ସେ ଭୟରେ । ଏବେ ଆଉ ସେଇ ଭୟ ନାହିଁ । 'ଆଶ୍ରୟ' ତାକୁ ନୂଆ ଜନ୍ମ ଦେଇଛି ।

ସେଇ ଡାକ୍ତରଖାନାରେ ଶୁଭ୍ରମା'ଙ୍କ ସହିତ ଭେଟ । ମଝିରେ ମଝିରେ ମା' ତା'ଭଳି ଅସହାୟା ମହିଳାଙ୍କୁ ସେବା ଯୋଗେଇଦେବା ପାଇଁ ଡାକ୍ତରଖାନା ଯାଇଥାନ୍ତି । ତା'ର ସୌଭାଗ୍ୟ, ସେଦିନ ମା' ବି ଯାଇଥିଲେ ଯୋଗକୁ । ନେଇଆସିଲେ ତାକୁ ଆଶ୍ରୟକୁ ଭଲହେଲା ପରେ । ସେଇ ସମୟରେ ନିଜେ ମା' ତାକୁ ସେବା ଶୁଶ୍ରୂଷା କରି ବଂଚେଇଛନ୍ତି । ଅମୃତ ହାତ, କଥାରେ ମହୁ ଝରିପଡ଼େ । ବିସ୍ମିତ ଲାଗେ ତାକୁ । ଛାର ଆଲମିରାଟେ ପାଇଁ ହେଉ, କି ରଜ ବୋଝ ପାଇଁ ହେଉ, ଏଇ ନାରୀ କେମିତି ରାକ୍ଷସୀ ପାଲଟି ଯାଇପାରେ ଅଥଚ ଆଉଜଣେ ଅନ୍ୟର ଯନ୍ତ୍ରଣାକୁ ପିଇଦେବା ପାଇଁ ଛାତିକୁ ବିସ୍ତାରି ଦିଏ । କି ବିଚିତ୍ର ଏଇ ନାରୀର ମନ !! ସେମିତି ସୁରମା, ନମିତାଙ୍କ ଜୀବନ କାହାଣୀ - ବଦନାମବସ୍ତି ଭିତରୁ ସେମାନଙ୍କୁ ଟାଣିଆଣିଛନ୍ତି ମା' । କେତେ ଜୀବନ କେତେ କାହାଣୀ । ସମସ୍ତେ ଗଢ଼ି ହୋଇଛନ୍ତି ମା'ଙ୍କ ଅମୃତ ହାତର ଛୁଆଁରେ । ଆଉ 'ଶ୍ରଦ୍ଧା' ! ସେ ତ 'ଆଶ୍ରୟ'ର ସବୁଠୁ ସାନ ଅନ୍ତେବାସୀ । ମା'ଙ୍କ ଜୀବନ । ରାସ୍ତାକଡ଼ରୁ ଉଠେଇ ଆଣି ତାକୁ ମମତା ଡୋରିରେ ବାନ୍ଧିଛନ୍ତି । ପରିଚୟଟିଏ ତିଆରି ହେଉଛି ତାର । ସ୍କୁଲ ଗଲାଣି । 'ଆଶ୍ରୟ'ର ସଭିଙ୍କ ପାଇଁ ସେ ଜୀବନ୍ତ କଣ୍ଢେଇ, ଶ୍ରଦ୍ଧାର ପିତୁଳୀ । ଆଶ୍ରୟରେ ଥିଲା ସମୟତକ ମା'ଙ୍କର 'ଶ୍ରଦ୍ଧା' ସହିତ ହିଁ କଟେ । ଶୁଭ୍ରମା କୁହନ୍ତି- ତାଙ୍କ ଜୀବନରେ ଯାହାକିଛି ଅପୂର୍ଣ୍ଣତା ବାକି ଥିଲା, ଶ୍ରଦ୍ଧା ତାକୁ ପୂର୍ଣ୍ଣ କରିଦେଇଛି ।

ସୁଜାତା, ଅନୁପମା, ସୁଧା, ସରଳା, ପ୍ରିୟମ୍ବଦା - ଏମାନେ ସମସ୍ତେ ଶିକ୍ଷିତା, ନିଜ ଗୋଡ଼ରେ ଠିଆ ହୋଇଛନ୍ତି । ନିଜ ନିଜର ପରିଚୟ ଅଛି ସମାଜରେ । ସ୍ୱତନ୍ତ୍ର ବିଗ୍ଘର ଅଛି । ଏମାନଙ୍କ ଭିତରେ ଥିବା ରୁଚିଶୀଳ ସଂଭ୍ରାନ୍ତ ନାରୀଟି କପଟୀ, କୁତ୍ସିତ, କଦାକାର ପଶୁ ସ୍ୱଭାବକୁ ସ୍ୱୀକାର କରିପାରିନି । ବିବାହ ବିଚ୍ଛେଦ ମାଗି ନେଇଛନ୍ତି । ଶୁଭ୍ରମା'ଙ୍କ ପ୍ରତ୍ୟେକ କାର୍ଯ୍ୟରେ ଏମାନଙ୍କର ସଶ୍ରଦ୍ଧ ଅବଦାନ ରହିଛି । ଅନୁଷ୍ଠାନର ବହୁବିଧ କାର୍ଯ୍ୟକ୍ରମ ସହିତ ଏମାନେ ସଂଶ୍ଳିଷ୍ଟ - ମହିଳାଙ୍କ ଆର୍ଥିକସ୍ଥିତିକୁ ମଜବୁତ କରିବାପାଇଁ, ମହିଳା ସ୍ୱୟଂ ସହାୟକ ଗୋଷ୍ଠିମାନ ଗଠନକରି ଗ୍ରାମାଞ୍ଚଳ ମହିଳାଙ୍କୁ ଆତ୍ମନିର୍ଭରଶୀଳ କରେଇବାରେ ଏମାନଙ୍କର ପ୍ରମୁଖ ଭୂମିକା ରହିଛି । ଅନେକ କାର୍ଯ୍ୟରେ, ବିଶେଷକରି 'ଆଶ୍ରୟ'ର ଅଫିସ୍ କାର୍ଯ୍ୟ । ଅଧାପିକା ସୁଧା ସାମନ୍ତ, ଶିକ୍ଷୟିତ୍ରୀ ଅନୁପମା ଓ ପ୍ରିୟମ୍ବଦା ହିଁ ତୁଲାଇ ଆସିଛନ୍ତି । ମାନବସେବାକୁ ଜୀବନର ବ୍ରତ ଭାବେ ଗ୍ରହଣ କରିଥିବା ଶୁଭ୍ରମା 'ଆଶ୍ରୟ'ର ଅନ୍ତେବାସୀଙ୍କ ଆଦର୍ଶ କହିଲେ ଅତ୍ୟୁକ୍ତି ହେବନି । ସେବାର

ଦିଗନ୍ତ ଯେପରି ବ୍ୟାପକ, କାର୍ଯ୍ୟକ୍ରମ ମଧ୍ୟ ବହୁବିଧ । ଏଥିରେ ବଡ଼ସାନ, ନାରୀପୁରୁଷ କିମ୍ବା ଜାତିଭେଦ ଭଳି ସଂକୁଚିତ ଚେତନାର ସ୍ଥାନ ନାହିଁ । ହେଲେ ଶୁଭ୍ରମା'ଙ୍କ ଉଦ୍ଦେଶ୍ୟ ଏବଂ ଲକ୍ଷ୍ୟ କିଛିଟା ନିର୍ଦ୍ଦିଷ୍ଟ । ସେ ଚାହାଁନ୍ତି ନାରୀ କାହା ହାତକୁ ଚାହିଁ ନ ବସି ଆତ୍ମନିର୍ଭରଶୀଳ ହେଉ । ଆର୍ଥିକ ସ୍ୱଚ୍ଛଳତା ଆସିଲେ, କେହି ତାକୁ ଶୋଷଣ କରିପାରିବେନି ଅନ୍ତତଃ । ଈଶ୍ୱର ତାକୁ ଅନନ୍ତ ଦୟା ଓ କ୍ଷମାର ଭଣ୍ଡାର କରି ପଠାଇଛନ୍ତି । ଭାବର ଐଶ୍ୱର୍ଯ୍ୟରେ ସେ ଭାବମୟୀ । ପାଇବାର ପ୍ରତ୍ୟାଶା ନ ରଖି କେବଳ ମମତା ବାଣ୍ଟି ବାଣ୍ଟି ନିଃସ୍ୱ ହୋଇଯାଇଛି ସେ ମେଘଭଳି ଯନ୍ତ୍ରଣାକୁ ପିଇ ସୃଷ୍ଟି କରିଛି ଜୀବନ । ବାଣ୍ଟି ହୋଇଯାଇଛି ସେ ସବୁରି ଭିତରେ । ତାକୁ ପୁଣି କିଏ କାହିଁକି ଦୟା କରିବ ? ନାରୀର ଏଇ ଗରିମାମୟ ରୂପକୁ ଯିଏ ଚିହ୍ନିପାରୁନି କି ବୁଝିପାରୁନି ସିଏ ତ ଅଜ୍ଞାନ । ସେଇ ସମାଜରେ 'ପ୍ରଗତି' ସମ୍ଭବ ହେବ କିମିତି ? ସବୁବେଳେ ଶୁଭ୍ରମା ଏକଥା ମନେପକାଇ ଦିଅନ୍ତି ।

ସକାଳ ପହରୁ ଶୋଭା ଏବଂ ସରଳା ମା'ଙ୍କର ଅଫିସ କାଗଜପତ୍ର ସଜାଡୁ ସଜାଡୁ କଥାର ସୁଅରେ ମଗ୍ନ ହୋଇଯାଇଥିଲେ । ସମୟ ସଂପର୍କରେ ଧ୍ୟାନ ନ ଥିଲା, ହୁଏ ଏମିତି ଦିନେଦିନେ । କଥା ପଡ଼ିଲା ବେଳେ ଘାଣ୍ଟି ହୋଇଯାଏ ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ । ଦିନ, ମାସ, ବର୍ଷର ହିସାବ ମନେ ରହେନା, ମନେ ରହେନା ସେମାନେ ଆଶ୍ରିତ । 'ଆଶ୍ରୟ' ସେମାନଙ୍କୁ ଏତେ ନିଶ୍ଚିନ୍ତପଣ ଦେଇଛି ଯେ, ଘର, ଆତ୍ମୀୟସ୍ୱଜନ ସବୁକିଛି ଭୁଲିଯାଇଛନ୍ତି, ଭୁଲି ହୋଇଯାଇଛି ଅତୀତ, ଅତୀତର ଦେହଥରା, ଘୃଣ୍ୟ ଯନ୍ତ୍ରଣାର କାହାଣୀ ।

ଶୋଭା କହିଲା, ମା' ଭଳି ମା'ଟିଏ ପାଇବା ସଭିଙ୍କ ଭାଗ୍ୟରେ ନ ଥାଏ । ଆମର ନିଶ୍ଚୟ କିଛି ସଂଚିତ ପୁଣ୍ୟ ଥିଲା । ମା'ଙ୍କ ମନ ଯେତିକି ବଡ଼, ତାଠୁ ଆହୁରି ବିଶାଳ ତାଙ୍କ ହୃଦୟ - ମାପି ପାରେନା, ମୋତେ ଚକିତ ଲାଗେ । ଆକାଶ ବି ଛୋଟ ହୋଇଯାଏ । ଲାଗେ, ସେଇ ଛାତି ଭିତରେ ସଭିଙ୍କୁ ସେ ପୂରେଇ ରଖିଦେଇ ପାରିବେ । ନା, ଅଭିମାନ, ନା ଅହଂକାର, ପ୍ରତ୍ୟାଶା ବି ନାହିଁ କିଛି - ବଡ଼ମାପର ମଣିଷ ସତରେ ।

"ଈଶ୍ୱର କେତେଜଣ ମଣିଷଙ୍କୁ ଏସବୁ ଐଶ୍ୱର୍ଯ୍ୟ ଦେଇ ପଠେଇଛନ୍ତି କହିଲୁ ଶୋଭା; କେବଳ ଅଜାଡ଼ି ହୋଇଯାଇଛନ୍ତି ସେ ବର୍ଷାଭଳି । 'ସମସ୍ତେ ସୁଖରେ ଥାଆନ୍ତୁ'ର ସ୍ୱଚ୍ଛ ଭାବନା ନିରନ୍ତର ତାଙ୍କ ମନପ୍ରାଣକୁ ଉଜ୍ଜିବୀତ କରି ରଖିଛି । ଏଇଥିପାଇଁ ସେ ଅସାଧାରଣ । ଯଶ, ଅର୍ଥ, ପ୍ରତିପତ୍ତିର ଲାଳସା ନାହିଁ । ସେବା, ଶ୍ରମ, ସ୍ୱଧ୍ୟାୟ, ସତ୍ୟ ଓ ସ୍ପଷ୍ଟବାଦିତା ହିଁ ତ ତାଙ୍କ ଜୀବନର ତପସ୍ୟା –ସରଳା କହିଲା । ଆମ ପାଇଁ ତ ସେ ଜୀବନ୍ତ ଭାଗବତ ... । କେତେବେଳୁ ପ୍ରିୟମ୍ବଦା ଆସି ଠିଆହୋଇଥିଲା ପଛରେ, ଆଉ ଦି'ପଦ ଯୋଡ଼ିଦେଇ କହିଲା– ସତକଥା, ସେଇଥିପାଇଁ ସେ 'ଅମୃତକନ୍ୟା' ।" ସରକାର କେତେଥର ଚାହିଁଛନ୍ତି ତାଙ୍କୁ ସମ୍ମାନିତ କରିବେ, ପୁରସ୍କୃତ କରିବେ । ହେଲେ, ମା'ଙ୍କର ଏକା ଜବାବ - "ମୋ ସେବାର ଉଦ୍ଦେଶ୍ୟ ପୁରସ୍କାର ନୁହଁ, ସେବା ମୋର ତପସ୍ୟା, ତାର ମୂଲତଉଲ ନାହିଁ । ମଣିଷକୁ ମୁଁ ଭଲପାଏ, ଭଲପାଏ ତା'

ଜୀବନକୁ । ପୁରସ୍କାରର ଜାକଜମକ ଭିତରେ ମୋ' ତପସ୍ୟାକୁ ଛୋଟ କରିଦେବିନି । ବରଂ ଆପଣମାନେ ଓ ସମାଜ ମୋର ଏଇ ତପସ୍ୟା ଓ ତପସ୍ୟା ଫଳକୁ ସ୍ୱୀକାର କରି ମୋତେ କୃତାର୍ଥ କରିଛନ୍ତି - ସେଇ ମୋ'ପାଇଁ ଗୌରବର କଥା ।" -ମନେ ଅଛି ନା ତୋର ?

ନିଶ୍ଚୟ, ସେ ତ ଭୁଲିଗଲା ଭଳି କଥା ନୁହେଁ । ସେ ଆହୁରି କହିଥିଲେ- "ଏ ଦେଶରେ କ'ଣ ମୁଁ ଜଣେମାତ୍ର 'ଅମୃତକନ୍ୟା' ? ସବୁ ନାରୀ ହିଁ ଅମୃତକନ୍ୟା । ଅମୃତର ଅଂଶବିଶେଷ । ଏ କଥା ସମସ୍ତେ ଭୁଲି ଯାଇଛନ୍ତି । ଭୁଲି ଯାଇଛନ୍ତି ବୋଲି ହିଁ ଦେଶର ଏଇ ଅଧୋଗତି । ନହେଲେ ସବୁ ମଣିଷ ଅମୃତର ସନ୍ତାନ । ଏକା ପୁରୁଷ କାହିଁକି ?"

ସମୟ ସହିତ ତାଳଦେଇ ପରିସ୍ଥିତି ବଦଳିଛି ! ପୁରୁଷର ପୌରୁଷ ଭଳି ନାରୀ ମଧ୍ୟ ନିଜର ଦକ୍ଷତା ଆଉ ସାମର୍ଥ୍ୟକୁ ପ୍ରତିଟି କ୍ଷେତ୍ରରେ ପ୍ରମାଣ କରି ପାରିଛି । ପରିବାର କି ସମାଜଗଠନରେ କେବଳ ନୁହେଁ, ଦେଶ ଓ ରାଷ୍ଟ୍ରର ଗଠନମୂଳକ ପ୍ରକ୍ରିୟାରେ ମଧ୍ୟ ତା'ର ଭୂମିକା ଅପରିହାର୍ଯ୍ୟ ! ସେ ଯଥାର୍ଥରେ ଅମୃତସ୍ୟ କନ୍ୟା । କଲ୍ୟାଣୀ ।

ସେଦିନ ଶୁଭ୍ରମା ଏ କଥାକୁ କି ସୁନ୍ଦର ଚମତ୍କାର ଭାବେ ବ୍ୟାଖ୍ୟା କରିଥିଲେ ଭଦ୍ରଲୋକଙ୍କ ଆଗରେ । ଭାବିଲେ ରୋମାଂଚିତ ଲାଗେ । ସେତେବେଳେ ଅନେକ ଚର୍ଚ୍ଚା ହୋଇଥିଲା ଏଇ ପ୍ରସଙ୍ଗ ।

କଥାର ଖିଅ ଛିଣ୍ଡିନଥାନ୍ତା, ଯଦି ରଂଗମତି ଆସି ଖବର ଦେଇନଥାନ୍ତା– କିଏ ସବୁ ଭଦ୍ରଲୋକ ଆସିଛନ୍ତି ରକ୍ତଦାନ ଶିବିର ସଂପର୍କରେ କଥାବାର୍ତ୍ତା କରିବା ପାଇଁ । ପ୍ରିୟମ୍ବଦା ଓ ସରଳା ତଳକୁ ଓହ୍ଲାଇଗଲେ ସୁଧାଅପାଙ୍କୁ ଖବର ଦେବାପାଇଁ ତରବର ହୋଇ ।

**ଆଶ୍ରୟରେ ସଂଧ୍ୟା / ସମୟର ଖଣ୍ଡଚିତ୍ର :**

ସାରାଦିନର କାର୍ଯ୍ୟବ୍ୟସ୍ତତା, ପଢ଼ାଶୁଣା ଭିତରେ ଅନ୍ତେବାସିନୀଙ୍କୁ ସମୟ ମିଳେନା ମୁହୂର୍ତ୍ତଟିଏ ଏକାଠି ବସି ପରସ୍ପର ସହିତ ସୁଖଦୁଃଖ ଭାଗ କରିବାକୁ । କାମ ସମସ୍ତଙ୍କୁ ବାନ୍ଧି ରଖେ । କାମ ଭିତରେ ଭୁଲି ହୋଇଯାଏ ବ୍ୟକ୍ତିଗତ କଥା । ପାଦ ଆଗକୁ ଗ୍ଲଲେ, ନୂଆ ଆଶା, ସମସ୍ୟା, ନୂଆ ଜୀବନ ସହିତ ପରିଚୟ ହୁଏ । ଜୀବନକୁ କର୍ମମୁଖର କରିବାକୁ ଶିକ୍ଷା ଦେଇଛନ୍ତି ଶୁଭ୍ରମା ସମସ୍ତଙ୍କୁ । କେବଳ ସଂଜ ହେଲେ ପକ୍ଷୀ ନୀଡ଼କୁ ଫେରିଲା ଭଳି ଜଣଜଣ ହୋଇ ବାହୁଡ଼ନ୍ତି 'ଆଶ୍ରୟ'ର ଛାତ ତଳକୁ । ସେମାନଙ୍କ ସହିତ ସଂଜ ବି ପଶିଆସେ 'ଆଶ୍ରୟ' ଭିତରକୁ ।

'ଆଶ୍ରୟ'ର ସଂଧ୍ୟା - ତା'ର ଭିନ୍ନ ଏକ ରୂପ । ସତେକି ସନ୍ନ୍ୟାସିନୀଟିଏ । ସାରା ଦିନର ଜଂଜାଳ ଭିତରୁ ନିଜକୁ ମୁକ୍ତ କରି ସତେଯେମିତି କିଛି ସମୟ ପାଇଁ ଗେରୁଆ ପିନ୍ଧେ । ଘଣ୍ଟା ବାଜେ । ସମସ୍ତେ ଏକତ୍ରିତ ହୁଅନ୍ତି ଏକ ମୁକ୍ତ ବୈଠକଖାନାରେ । ଆଖି ବୁଜନ୍ତି ସେଇ ପରମକାରୁଣିକଙ୍କ ଉଦ୍ଦେଶ୍ୟରେ । ପ୍ରାର୍ଥନା ହୁଏ । ଧୂପ, ଅଗୁରୁ ଗନ୍ଧରେ ପରିବେଶର ଗମ୍ଭୀରତା

ବଢ଼ିଯାଏ । ଜୀବନକୁ ଉପଲବଧି କରିବାର ଅନ୍ତରଂଗ ମୁହୂର୍ତ୍ତ ସେଇଟା ବୋଲି କହିଲେ ବୋଧେ ଠିକ୍ ହେବ ।

'ଆଶ୍ରୟ'ରେ ଥିଲେ ଶୁଭ୍ରମା ଯୋଗ ଦିଅନ୍ତି । ଏଇଟା ତାଙ୍କର ପିଲାଦିନରୁ ଅଭ୍ୟାସ - 'କନ୍ୟାଶ୍ରମ' ସେଇ ଅଭ୍ୟାସକୁ ଶୃଙ୍ଖଳିତ କରିଥିଲା । ପରବର୍ତ୍ତୀ ସମୟରେ ବିବେକାନନ୍ଦ ଅନୁଗାମୀ ଶଶାଙ୍କ ମହାନ୍ତିଙ୍କ ପ୍ରଭାବ ମଧ୍ୟ ପଡ଼ିଥିଲା । ସେ କହୁଥିଲେ ପ୍ରାର୍ଥନା ମଣିଷର ମନ ଏବଂ କର୍ମକୁ ଶୁଦ୍ଧ କରେ । କରେ ନିର୍ଭୀକ । ନିଜକର୍ମକୁ ଈଶ୍ୱରଙ୍କୁ ସମର୍ପି ଦେଲେ ମନ ପୂତ ହୁଏ । ଏଇ ପାରଂପରିକ ଅଭ୍ୟାସକୁ ସେ ଭୁଲିନାହାନ୍ତି ଏଯାଏ ।

ନିତିଦିନ ତ ସଂଧ୍ୟା ଆସେ ପ୍ରାର୍ଥନାର ତରଙ୍ଗରେ ଅଥବା ଅନ୍ତେବାସିନୀଙ୍କ ଧୂପର ସୁଗନ୍ଧ ଭିତରେ । ଶୁଭ୍ରମା ଉପସ୍ଥିତ ଥିଲେ ଖୁସିଟା ଦ୍ୱିଗୁଣିତ ହୋଇଯାଏ । ଆଶା ଜାଗେ, ବିଶ୍ୱାସ ଦୃଢ଼ ହୁଏ; ସଂକଳ୍ପ ଦାନା ବାନ୍ଧେ, ଦମ୍ଭ ଦୋହଲେନା । ସେ ଯେମିତି ସମସ୍ତଙ୍କ ପାଇଁ ଦିଗବାରେଣୀ ବତିଖୁଣ୍ଟ ।

ପ୍ରାର୍ଥନା ସରିଲେ ସମସ୍ତେ ଏକାଠି ବସି ଗପସପ କରନ୍ତି । ଟେଲିଭିଜନ ଚାଲିଥାଏ । ଖବର ବି ଶୁଣାହୁଏ । ଆଲୋଚନା ହୁଏ । ସୁରଭି, ଗୀତା ସୁନନ୍ଦା, ଉର୍ମିଳା ଭଳି କଲେଜ ପଢୁଆ ଝିଅଙ୍କ ଆକର୍ଷଣ କିଛିଟା ଭିନ୍ନ । କିଶୋରୀ ବୟସ, ଅନେକ ସ୍ୱପ୍ନ, ଦାୟିତ୍ୱ, କର୍ତ୍ତବ୍ୟ, ସେବା ଭଳି ବନ୍ଧନୀ ଭିତରେ ଭାରାକ୍ରାନ୍ତ ଜୀବନ ଆହୁରି ନାହିଁ ସେମାନଙ୍କର ଏତେଟା । ଏସବୁ ବାହାରେ ଥିବା ଏକ ମୁକ୍ତ କଅଁଳାବାଛୁରୀର ଯୋଉ ମୁକୁଳା ଜୀବନ, ତା' ଉପରେ ଶୁଭ୍ରମା କେବେ ବି ଅଙ୍କୁଶ ଲଗେଇ ନାହାନ୍ତି । ସେଇଥିପାଇଁ ବାହାରେ ରହି ମଧ୍ୟ ସେମାନଙ୍କୁ ଘରେ ଥିବାର ଅନୁଭବ ହୁଏ ।

ସେଦିନ ଗୀତା ଆଉ ସୁରଭି ସହଳ କଲେଜରୁ ଫେରି କମନ୍‌ରୁମ୍‌ରେ ବସି ଟି.ଭି. ଦେଖୁଥିଲେ । ସୁନନ୍ଦା ଫେରିନଥିଲା । ଫେରିଲେ ଏକାଠି ଖାଇବେ ବୋଲି । ହଠାତ୍ ଆଖି ପଡ଼ିଗଲା ଗୋଟାଏ ନୂଆ ଖବର ଉପରେ । ଅଟକିଗଲା ଦୃଷ୍ଟି ତା'ର । ଗୀତାକୁ ଉଦ୍ଦେଶ୍ୟ କରି କହିଲା– "ଗୀତା ଟିକିଏ ନଜର ପକେଇଲୁ ଏହି ଖବରଟା ଉପରେ ... ।"

ଗୀତା ପଢ଼ିଲା– "ବିବାହିତା ନାରୀ ଏକିଣି ସ୍ୱାମୀଙ୍କ ଠାରୁ ମାସିକ ଦରମା ପାଇବେ ।" ପଢ଼ିସାରି ସୁରଭି ମୁହଁକୁ ଚାହିଁଲା କିଛି ବୁଝି ନପାରି । କେମିତି ଅଡୁଆ ବି ଲାଗିଲା କଥାଟା । ନାରୀମାନଙ୍କ ଆର୍ଥିକ ସ୍ଥିତିକୁ ସୁଦୃଢ଼ କରିବା ଲକ୍ଷ୍ୟରେ ଏଇ ବିଲ୍ ଆଗତ କରିଛନ୍ତି ସରକାର ଗୃହରେ । ମଂଜୁରୀ ପାଇଲେ ବିଲ୍‌ରେ ପରିଣତ ହେବ । ନାରୀ ସଶକ୍ତିକରଣ ଯୋଜନାର ଏହା ଏକ ନମୂନା - ଏଥର ବୁଝିପାରିଲୁ ?

ବୁଝିଲି, ଏଣିକି ଆମ ବୋଉମାନେ ବାପାଙ୍କ ଠୁ ମାସକୁ ମାସ ଦରମା ପାଇବେ । ହେଲେ ବୁଝି ହେଲାନି ଗୋଟାଏ କଥା, ସୁରଭି କହିଲା । ଏତେବଡ଼ ସଂସାରର ଦାୟିତ୍ୱ ତୁଲେଇବେ ଅଥଚ ଦରମା ଏତେ କମ୍ କାହିଁକି ? ବାପା ଯଦି ଦରମା ଦେବେ ବୋଉର

କାର୍ଯ୍ୟଦକ୍ଷତା ବି ତ ଦେଖିବେ; ଦକ୍ଷତା କମ୍ ବେଶି ହେଲେ କ'ଣ କରିବେ, ବରଖାସ୍ତ ନା ପ୍ରମୋଶନ ଦେବେ ? କିମିତି ଅଜବ ଲାଗୁନି ଶୁଣିବାକୁ ? ବୋଉ କ'ଣ ଚାକିରିଆ । ବୋଉ ତ ବୋଉ ।

ଗୀତା ଆଉ ସୁରଭି ପ୍ରଶ୍ନକୁ ପ୍ରଶ୍ନ ଯୋଡ଼ି ବାଦିପାଲା ଭଳି କିଛି ସମୟ ଯୁକ୍ତିତର୍କ କରି ଉଠିଗଲେ ଟି.ଭି. ବନ୍ଦ କରି । ଖାଉ ଖାଉ ବି ଏଇ କଥା ପଡ଼ିଲା । ସୁନନ୍ଦା ବି ଆସିଯାଇଥିଲା ତା' କଲେଜରୁ । ଯୁକ୍ତିର କୌଣସି ଦିଗଟା ପସନ୍ଦ ହେଲାନି କାହାର । କିଶୋରୀ ମନ କୌଣସି ଉପସଂହାରରେ ପହଞ୍ଚି ପାରିଲାନି । ସୁରଭିର ବିଚାରରେ, ନାରୀ ତା' ସମଗ୍ର ଜୀବନର ଦିନରାତି, ଭାବଭାବନା, ବର୍ଷାବସନ୍ତକୁ ନିଃସର୍ତ୍ତ ଭାବେ ତା' ସ୍ୱାମୀ, ସନ୍ତାନ, ପରିବାର ପାଇଁ ଉତ୍ସର୍ଗ କରିବା ମୂଳରେ ଯୋଉ ତ୍ୟାଗପୂତ ଭାବନା ରହିଛି, ତାକୁ କେହି ଟଙ୍କା ପଇସାରେ ମାପି ପାରିବନି । ସେଇଟା ତା'ର ସହଜାତ ମହିମାମୟ ଗରିମା, ଯାହା ପୁରୁଷ ଠାରୁ ନାରୀକୁ ସ୍ୱତନ୍ତ୍ର ଆସନରେ ବସେଇଛି । ସିଏ ଗୃହକର୍ତ୍ତୀ ଠିକ୍ ବାବାଙ୍କ ଭଳି । ତା'ର ଅଧିକାର ବି ବାପାଙ୍କ ଭଳି । ବରଂ ତା' ପ୍ରତି ଶ୍ରଦ୍ଧା, ସମ୍ମାନ, ସହୃଦୟତା ପୋଷଣ କରିପାରିଲେ ତ ସମସ୍ୟା ହିଁ ରହନ୍ତାନି । ମତ ଅଲଗା ହେଲେ ତ ଭିନ୍ନ କଥା ...

ସେଇ କଥା କହ ... ତୋ' କଥା ଠିକ୍ ଯେ, ସୁନନ୍ଦା କହିଲା, ଯୋଉ ମହିଳାମାନେ ପରିବାରଠୁ ଅଲଗା ରହୁଛନ୍ତି, ସେମାନଙ୍କୁ ଏଥିରେ କିଛି ଆର୍ଥିକ ସୁରକ୍ଷା ମିଳିବ ବୋଲି ବୋଧେ ଭାବୁଛନ୍ତି... । ବିନୋଦିନୀର ମୁହଁ ଦିଶିଲା ଦୁଆର ମୁହଁରେ । କଥା ବନ୍ଦକରି ଗୀତା ଭିତରକୁ ଡାକିଲା ତାକୁ । ଏଇ ଚାରିଦିନ ହେବ ଆସିଛି ସେ 'ଆଶ୍ରୟ'କୁ ବଡ଼ ଦୁଃଖୀଟିଏ, ସ୍ୱାମୀ ମଦୁଆ । ଝିଅ ଦୁଇଟି ଜନ୍ମ କରିବାର ଅପରାଧରେ ତାକୁ ପୋଡ଼ିମାରି ଦେବାର ବ୍ୟବସ୍ଥା କରୁଥିଲେ ଶାଶୂଘର । ସେ ଘର ଛାଡ଼ି ଆସିଛି, ଝିଅଙ୍କୁ ବି ଛାଡ଼ିଛି । ନିଜ ଅଧିକାର ପାଇଁ ଲଢ଼େଇ କରି ସେ କ୍ଷତାକ୍ତ ।

ଘର ଭିତରକୁ ଆସି ପଚାରିଲା, କ'ଣ ବିଚାର ପଡ଼ିଥିଲା କି ? ଗୀତା ଉତ୍ତରଦେଲା, 'ତୋରି କଥା' ମାନେ ଆମରି କଥା.... ନିତିଦିନର ଲଢ଼େଇ । ତା'ର ଆଉ ଶେଷ କାହିଁ... ? ମ୍ଳାନ ହସି କହିଲା ବିନି ।

ସଂଧ୍ୟା ହୋଇ ଆସୁଥିଲା । ଆଲୋଚନାକୁ ସେଇଠି ରଖି, ଶୁଭ୍ରମା'ଙ୍କ କାନରେ ସମସ୍ୟାକୁ ପକେଇବା ଉଦ୍ଦେଶ୍ୟରେ ତିନିହେଁ ଉଠିଲେ । ପ୍ରାର୍ଥନା କକ୍ଷରେ ଜଣେ ଜଣେ ହୋଇ ଜମିଲେଣି ସମସ୍ତେ । ପ୍ରିୟମ୍ୱଦା, ସୁଧା ହେରିକାଙ୍କ ସହିତ ଶୁଭ୍ରମା'ବି କକ୍ଷରେ ପହଞ୍ଚିଲେ । ଆରମ୍ଭ ହେଲା ପ୍ରାର୍ଥନା । ପ୍ରାର୍ଥନାର ଆବେଦନ ଭିତରେ ଫୁଟି ଉଠିଲା ଅନ୍ତେବାସିନୀଙ୍କ ନିଚ୍ଛଳ ଆତ୍ମସମର୍ପଣ ଭାବ ।

ହେଲେ ପରିବେଶର ଆବେଗମୟତା ସୁରଭି ଓ ଗୀତାକୁ ଏକାଗ୍ର କରିପାରୁନଥିଲା । ପ୍ରାର୍ଥନା ସରିଲା । ଶୃଙ୍ଖଳ ଭାଙ୍ଗିଲା । ସହଜହେଇ ବସିଲେ ସମସ୍ତେ । ପ୍ରିୟମ୍ୱଦା ମୌଳିକଶିକ୍ଷା

ସଂପର୍କରେ କିଛି ପ୍ରଶ୍ନ ପଚାରିବାକୁ ପ୍ରସ୍ତୁତ ହେଉଥିବା ଦେଖି ଗୀତା ଆଉ ସୁରଭି ଅଥୟ ହୋଇ ଉଠିଲେ । କାଳେ ତାଙ୍କୁ ସମୟ ମିଳିବନି ପଚାରିବାକୁ । ଶୁଭ୍ରମା'ଙ୍କ ଆଖି କିନ୍ତୁ ଠିକ୍ ଲକ୍ଷ୍ୟ କରିଥିଲା ପିଲାଏ କିଛି ପଚାରିବାକୁ ଚାହୁଁଛନ୍ତି ତାଙ୍କୁ । ପ୍ରିୟମ୍ବଦାକୁ ଅଟକେଇ ପାଖକୁ ଡାକିଲେ ଗୀତାକୁ "କିଛି କହିବ ପିଲାଏ ... ଆସ ... ପାଖକୁ ଆସ ।"

ତିନିହେଁ ଯାଇ ପାଖରେ ବସିଲେ । ସକାଳର ଖବରଟା ଠିକେ ଠିକେ କରି କହିଗଲେ । ସୁରଭିର ପ୍ରଶ୍ନ ଥିଲା– ସତରେ କ'ଣ ଏଇ ପ୍ରସ୍ତାବଟା ମହିଳାମାନଙ୍କୁ ଆର୍ଥିକ ସୁରକ୍ଷା ଯୋଗେଇ ପାରିବ ? ଏବଂ ତା' ସହିତ ଆଉ ଗୋଟିଏ ପ୍ରଶ୍ନ ହେଲା 'ଏଥିରେ ନାରୀ ଜାତିର ଗୌରବ ବଢ଼ିବ କି ?' ଦି'ପହରରୁ ଏଇ ପ୍ରଶ୍ନ ନେଇ ଆମେ କୌଣସି ଉପସଂହାରରେ ପହଞ୍ଚି ପାରୁନୁ ମଧ । -କହିଲା ସୁନନ୍ଦା ।

ସୁଧା ସାମନ୍ତ ଅନୁପମା ଏବଂ ପ୍ରିୟମ୍ବଦା ତ ନିଜନିଜ ଭିତରେ ଚମକି ପଡ଼ିଲେ । ଚମକି ପଡ଼ିଲାଭଳି ଖବରଟା ନିଶ୍ଚୟ - ତେବେ ଏଇ କିଶୋର ମନକୁ ବି ଛୁଇଁଛି କଥାଟା - ସେଇଟା ହିଁ ବଡ଼କଥା । ଶୁଭ୍ରମା' ବି ହୁଏତ ସେଇକଥା ଭାବୁଥିଲେ ଓ ନିଜକୁ କିଛି ମୁହୂର୍ତ୍ତ ସ୍ଥିର କରିନେଲେ । ତେବେ ଏହା ଏକ ସଂବେଦନଶୀଳ ପ୍ରଶ୍ନ ନିଶ୍ଚୟ । ତାଙ୍କ କାନରେ ପଡ଼ିନି ଖବରଟା ଏଯାଏ - ସେ ବ୍ୟସ୍ତ ଥିଲେ ଅନ୍ୟପ୍ରକାରେ । ତେବେ ସେ ଯା'ହେଉ ତାଙ୍କ ପାଇଁ ଆଶ୍ୱାସନାର ବିଷୟ ଥିଲା ଏହି ଯେ ଆଜିର ପିଢ଼ି ଭିତରେ ବି ସ୍ୱାଭିମାନୀ ନାରୀ ଚେତନାଟି ଜାଗ୍ରତ ହେଲାଣି । ଆତ୍ମମର୍ଯ୍ୟାଦା ସଂପର୍କରେ ସଚେତନ ହେଲାଣି ସେ । ଏଣିକି ନିଜ ଲଢ଼େଇ ଚାଲୁ ରଖିପାରିବ । ତେବେ ନିଜକୁ ଏଇ ମର୍ଯ୍ୟାଦାର ଯୋଗ୍ୟ କଲେ ହେଲା ।

ନିଜ ଭାବନାକୁ ନିଜ ଭିତରେ ରଖି ଟିକିଏ ହସି ସୁରଭି ପିଠିରେ ହାତ ବୁଲେଇ କହିଲେ– 'ଖୁସି ହେଲି ପିଲାଏ, ତମମାନଙ୍କ ପ୍ରଶ୍ନରେ ।' ଏଇ ସ୍ୱାଭିମାନକୁ ବଂଚେଇ ରଖ । ତେବେ ଏଇ ବିଷୟରେ ସ୍ଥିରଭାବେ ଚିନ୍ତା ନ କରି କୌଣସି ଉପସଂହାରରେ ଆମେ ପହଞ୍ଚି ପାରିବାନି । କୋଉ ଦୃଷ୍ଟିରୁ ସରକାର ଏଭଳି ପ୍ରସ୍ତାବ ରଖିଛନ୍ତି, କାରଣ ସରକାରଙ୍କ ସବୁ ଯୋଜନା, ନୀତି ପ୍ରାୟ ସମାଜମୁଖୀ । ସମାଜର ଗୋଟିଏ ବୃହତ୍ତର ଅଂଶ କିମିତି ଉପକୃତ ହେବ । ସେ କଥାକୁ ଆଖିରେ ରଖି ନିୟମ ପ୍ରଣୟନ କରିଥାନ୍ତି ! ହେଲେ ଏକଥା ବି ସତ ଯେ, ନିୟମଗୁଡ଼ିକ କାର୍ଯ୍ୟକାରୀ ହେବା ପରେ ତା'ର ଭଲମନ୍ଦ ଦିଗ ସାମନାକୁ ଆସେ । ତେଣୁ ନିୟମ ତିଆରି କରୁଥିବା ବାଲାଙ୍କୁ ସମାଜ ସଚେତନ ହେବାକୁ ହୁଏ । ତେବେ ଆମଭଳି ବୃହତ୍ ଗଣତନ୍ତ୍ର ରାଷ୍ଟ୍ରରେ ସବୁ ଶ୍ରେଣୀର ସବୁ ମଣିଷଙ୍କୁ ଯୋଗ୍ୟତା ଭିତ୍ତିରେ ସମାନ ସୁବିଧା ସୁଯୋଗ ଓ ଅଧିକାର ଦେବା ଏତେ ସହଜ କଥା ନୁହେଁ - ସେଥିପାଇଁ ସଙ୍କଟର ସାମ୍ନା କରିବାକୁ ବି ପଡ଼େ । ଏମିତି ଅନେକ ନଜିର ବି ଅଛି । ତଥାପି ... ନାରୀ ସଶକ୍ତିକରଣ ପାଇଁ ଏଣିକି ସମସ୍ତେ ଚିନ୍ତା କଲେଣି, ଶୁଭ ସୂଚନା । ସମସ୍ତେ ଶୁଣୁଥିଲେ ଶୁଭ୍ରମା'ଙ୍କ କଥା କୌଣସି ଯୁକ୍ତି ନ କରି ।

କିଛି ମୁହୂର୍ତ୍ତ ନିରବ ରହିଲା ପରେ ସୁଧା ସାମନ୍ତ ସ୍ୱଗତୋକ୍ତି କଲାଭଳି କହିଲେ- 'ପ୍ରସ୍ତାବ ତ ସ୍ୱାଗତଯୋଗ୍ୟ, ତେବେ ଏଥିସହିତ ନାରୀ ଜାତିର ସ୍ୱାଭିମାନର ପ୍ରଶ୍ନ ଯୋଡ଼ିହୋଇ ରହିଛି...' । "ତା' ସହିତ ନାରୀ ଏକାଧାରାରେ ସହଧର୍ମିଣୀ ଓ ସହକର୍ମିଣୀ - ସର୍ବୋପରି ମା'ଟିଏ", ଅନୁପମା ନିଜ ମତ ଥୋଇଲା ସଂକ୍ଷେପରେ ।

ଝରକା ଦେଇ ଅଂଧାରର ପୃଥିବୀକୁ ଚାହିଁ କୌଣସି ଗଭୀର ଚିନ୍ତାରେ ମଗ୍ନ ଥିଲେ ଶୁଭ୍ରମା । କଥାଗୁଡ଼ିକ କାନରେ ବାଜିଲା । ଦୀର୍ଘଶ୍ୱାସ ତୋଳି, ଅଂଧାରକୁ ଚାହିଁ କହିଲେ- 'ନାରୀ ପାଇଁ ସବୁବେଳେ କାହିଁକି ଯେ ଏଇ ଅଗ୍ନିପରୀକ୍ଷା କେଜାଣି । ତା'ପାଇଁ ଲଢ଼େଇର ଶେଷ ନାହିଁ କେବେ । ଅହଂକାର, ଅଧର୍ମ, ଅନାଚାର, ଅସମତା, ଅତ୍ୟାଚାର, ଆହୁରି କେତେ କ'ଣ ପାଇଁ ଲଢ଼େଇ କରୁ କରୁ ତାକୁ ଦ୍ୱିଭୁଜାରୁ... ଅଷ୍ଟଭୁଜା... ବିଂଶଭୁଜା...ରୁ ସହସ୍ରଭୁଜା ହେବାକୁ ପଡ଼ିଛି ତଥାପି ଲଢ଼େଇର ଶେଷ ନାହିଁ । ଅସମତାର ବି ଅନ୍ତ ନାହିଁ ।

ପୁଣି ଗୋଟାଏ ଲମ୍ୱା ନିଃଶ୍ୱାସ ନେଇ ପିଲାଙ୍କ ଆଡ଼କୁ ଚାହିଁ କହିଲେ ... ବୁଝିଲ ପିଲାଏ, ସୃଷ୍ଟି ବଂଚିଥିବା ଯାକେ, ଆମକୁ ଲଢ଼େଇ ପାଇଁ ପ୍ରସ୍ତୁତ ରହିବାକୁ ପଡ଼ିବ... କେବେ ନିଜ ପାଇଁ ନିଜ ଅଧିକାର ପାଇଁ ତ କେବେ ଅନ୍ୟର ସୁଖ ସୁବିଧା ପାଇଁ... ।



# ବେଦମତୀର ବୋହୂ

ଗଲା ରାମ ନବମୀରେ ଅଭିରାମବାବୁଙ୍କ ପୁଅର ବାହାଘର ହୋଇଥିଲା । ଅଭିରାମବାବୁ ଆଉ ବେଦମତୀ ଦୁହେଁ ଆସି ନିମନ୍ତ୍ରଣ ଦେଇ କହିଯାଇଥିଲେ ବହୁତ କରି ଯିବା ପାଇଁ । ହେଲେ ସେ ଯାଇ ପାରିନଥିଲା । ଅସୁସ୍ଥତା ଯୋଗୁଁ । ଆଜି ଦ୍ୱିପ୍ରହରରେ କଲେଜରୁ ଫେରିବା ବାଟରେ ମିତା ହଠାତ୍ ପ୍ରସ୍ତାବ ଦେଲା, ଚାଲ, ବୋହୂ ଦେଖିଯିବା । କୁଆଡ଼େ ଭାରି ସୁନ୍ଦର ଆଉ ଗୁଣବନ୍ତ ବୋହୂ । ଆଖି ଲାଖି ଗଲାଭଳି । ମନା କରି ପାରିଲାନି ବସୁମତୀ ।

ବେଦମତୀ ତା'ର ସହପାଠିନୀ ବନ୍ଧୁ । ଦୁହେଁ ଏକାଠି ପାଠ ପଢ଼ିଛନ୍ତି । ଅଭିରାମବାବୁ ପ୍ରଥମ ଶ୍ରେଣୀ କଣ୍ଟ୍ରାକ୍ଟର । ତାଙ୍କ ପୁଅ ବାହାଘରକୁ ସେ ଯାଇପାରିନି । ନିହାତି ଅସୁନ୍ଦର କଥା । ଅନ୍ତତଃ ବୋହୂକୁ ଟିକିଏ ଦେଖିଆସିବା ଉଚିତ ଥିଲା । ମିତାକୁ କହିଲା, ଠିକ୍ ଅଛି । ତୁ ଆସିଲାବେଳେ ଉଷାକୁ ବି ଡାକି ଆଣିବୁ । ଏକାଠି ଯିବା ସାଥି ହୋଇ । ମିତାଲି ଏବେ ନୂଆ ହୋଇ ଚାକିରିରେ ପଶିଛି । ଉଷା ତା'ରି କଲେଜରେ ଅଧ୍ୟାପିକା, ମଧ୍ୟ ବୟସର ।

ସତରେ, ଦେବୀ ପ୍ରତିମା ଭଳି ବୋହୂଟିଏ । ଦୁଧ ଅଳତା ରଙ୍ଗ । ଟଣା ଟଣା ଆଖି । ଗଭୀର ପୁଷ୍କରିଣୀର ସ୍ୱଚ୍ଛ ଜଳ ସ୍ଥିର ହୋଇଯାଇଛି ସେଇଠି । ସାନ କପାଳରେ ଉଦୟଭାନୁର ରୋଶଣି । ଆଙ୍କି ଦେଲାଭଳି ଓଠ, ସତେକି ଅଳତା ଲିପା ହୋଇଛି । ମୁହଁରେ ସଲ୍ଲଜ ହସର ଛିଟା । ମୁଣ୍ଡରେ ନାଲି ଖଣ୍ଡୁଆର ଓଢ଼ଣା । ପୂରିଲା ପୂରିଲା ପାଦରେ ରୁଣୁଝୁଣୁ ପାଉଁଜି, ଝୁଣ୍ଟିଆ ସାଙ୍ଗକୁ ସରୁ ଅଳତାର ଗାର । ସୁନା ବାହୁଟିର ବନ୍ଧନୀ ଭିତରେ ହାତଭରି କମକରା ନାଲି ଶଙ୍ଖା । ଠିକ୍ ଚିତ୍ରପ୍ରତିମା । ଚମତ୍କାର । ମୁଣ୍ଡିଆ ମାରି ଉଠିବା ବେଳକୁ ଚମକି ଉଠିଥିଲା ତା'ର ନାକଫୁଲ ଚିକ୍‌ମିକ୍ ହୋଇ, ଏକଣା ତାରାଟି ଭଳି । ମନ ପୂରିଗଲା । ଅନେକ ଦିନ ପରେ ବୋହୂ ଭଳି ବୋହୂଟିଏ ସେ ଦେଖିଲା ।

ବେଦମତୀର ପାଦ ତଳେ ପଡୁ ନ ଥିଲା ଖୁସିରେ । ନୂଆ ନୂଆ ଶାଶୂ ହୋଇଛି । ପୁଣି ବାନ୍ଧବୀ ଆସିଛି ଏତେ ଦିନକେ । ଝିଅ କୁନ୍ତୀକୁ ବରାଦ କଲା, 'ଏତେ କ'ଣ ଗପ ଶୁଣୁଛୁ ମାଉସୀମାନଙ୍କୁ ଟ' ଟିକିଏ ଖୁଆଇବୁନି କି ?

'ଯାଉଛି ବୋଉ' ସାଙ୍ଗେ ସାଙ୍ଗେ, ଉଠିଗଲା କୁନ୍ତୀ, ତା' ସହିତ ନୂଆବୋହୂ ବି । ମହକି ଉଠିଲା ତା' ଜୁଡ଼ାର ଚମ୍ପାଫୁଲ ଗଜରା ।

ମୁହୂର୍ତ୍ତକ ପାଇଁ ଆନମନା ହୋଇଗଲା ସେ । ଭାଗ୍ୟରେ ଥିଲେ ଏଭଳି ବୋହୂ ମିଳେ । ବେଦମତୀ ପାଇଁ ତା'ର ଈର୍ଷା ହେଲା ଏବଂ ମନେପଡ଼ିଲା ତା' ନିଜ ବୋହୂପଣ । ସତରେ ତା'ର ଅନେକ ଦିନର ସ୍ୱପ୍ନ, ପୁଅ ଅଞ୍ଜନକୁ ନେଇ । ସେ କ'ଣ କମ୍ ଝିଅ ଦେଖିଛି ! ଦୀର୍ଘଶ୍ୱାସଟିଏ ନେଇ ବେଦମତୀର କଥା ସୁଅରେ ନିଜକୁ ସାମିଲ କଲା ସେ ।

ମିତାକୁ ଲକ୍ଷ୍ୟ କରି ବେଦମତୀ କହୁଥିଲା, 'ଏମିତି କେତେଦିନ ଲଗାମଛଡ଼ା ହୋଇ ବୁଲିବୁ ମ'-

ମୁଁ କ'ଣ କାହାର ବୋଝ ହୋଇଛି କି ? ଏମିତି ତ ଖୁସିରେ ଅଛି । ତମର ଖାଲି ଗୋଟିଏ କଥା ସମସ୍ତେ କେମିତି ବାନ୍ଧି ହୋଇଯା'ନ୍ତୁ । ମୁହଁ ଫୁଲେଇ କହିଲା ମିତା ।

- 'ବାନ୍ଧି ହେଲେ ସିନା ଜାଣିବୁ । ବନ୍ଧନରେ କେମିତି ସୁଖ ଅଛି ।'

- ଆହା, ଦେଖୁନି କି ତମମାନଙ୍କୁ । ଯୋଉ ତ ସୁଖ । ଆଉ ପାଞ୍ଚଜଣଙ୍କ ହାକିମାତି ମାନିବାକୁ ମୁଁ କାହିଁକି ବାନ୍ଧିହେବି ଯେ ? ନିଜ ମନ ମାଫି ଜୀବନ ମୁଁ ଜିଉଁଛି । କାଦୁଅକୁ ଯିବି କାହିଁକି ? ନା କ'ଣ କହୁଛି ବସୁନାନୀ ? ପଚାରିଲା ଆଖିରେ ତା' ଆଡ଼କୁ ଚାହିଁଲା ମିତାଲି ।

'ତୋତେ କିଏ କଥାରେ ଜିତିଛି' - ହସର ଫୁଆରା ବିଞ୍ଚି ହୋଇପଡ଼ିଲା ମାର୍ବଲ୍ ଘରର ଚଟାଣ ଉପରେ ।

କୁନ୍ତୀ ଟ୍ରେରେ ଜଳଖିଆ ସଜାଡ଼ି ନେଇ ଆସିଲା । ରକମ ରକମର ମିଠା । ବେଦମତୀ ନିଜେ ଜଣ ଜଣ କରି ଜଳଖିଆ ପ୍ଲେଟ୍ ବଢ଼େଇ ଦେଉ ଦେଉ ଖୁସିରେ ଗଦ୍‌ଗଦ୍ ହୋଇଉଠୁଥିଲା । 'ବୋହୂ ଆଣିଥିଲା । ଏଇ ନିମ୍‌କି ଦିଟା ଘରେ କରିଥିଲି ଯାହା । ବୋହୂଟା ମୋଟେ ମିଠା ପାଟିରେ ଦେଉନି... ।'

ବଳେଇ ବଳେଇ ବେଦମତୀ ଖୁଆଇଲା ସମସ୍ତଙ୍କୁ । 'ତୁ' ନଉନୁ ବସୁ, ଦିଟା ସନ୍ଦେଶ, ମିତା ତୁ କ'ଣ କିଛି ଖାଇନୁ, ଏଇ କ୍ଷୀର ଗଜାଟା ଖାଆ, ଉଷା ତୁ ବି ନେ ଆଉ ଗୋଟେ ରସଗୋଲା । ଖୁଆଉ ଖୁଆଉ ବେଦମତୀ ପଚାରିଲା ବସୁକୁ । ବୋହୂ ମନକୁ ପାଇଲା ?'

ପାଇବନି, ଲକ୍ଷ୍ମୀ ପ୍ରତିମା ଭଳି ବୋହୂ । ଶଣୁଣା ତ ଦେଖୁଛି - ଛେନାଗଜାକୁ ପାଟିରେ ପୂରେଇ କହିଲା ବସୁମତୀ ।

ମୁହଁରେ ପ୍ରସନ୍ନତାର ଆଭା ଖେଳାଇ ବେଦମତୀ କଥା ଯୋଡ଼ିଲା, ଏଇମାତ୍ର ଦିନ କେଇଟା ହେଲା ଆସିଛି, ତାରି ଭିତରେ ସମସ୍ତଙ୍କ ମନ କିଣି ନେଲାଣି । କାମିକାଟିଏ, ଭାରି

ପୂର୍ତ୍ତି । ତିନି ତିନିଟା ଝିଅର ପୂଝାରୀ, ହେଲେ କ'ଣ ହେବ । ହାତରୁ ଛଡ଼େଇ ନେଉଛି କାମ । ଧୀର ସ୍ଥିର । ସ୍ନେହୀ ମଧ୍ୟ । ବୋହୂ ବୋଲି ପ୍ରଶଂସା କରୁନି ମ ?

'ଭଲ ପରିବାର ଯେତେବେଳେ । ଖାନ୍‌ଦାନୀ ଘର । ଦି' ପୁରୁଷ ହେବ ଏକାଠି ସେମାନେ ଚଳିଆସୁଛନ୍ତି । ବାପା ମା' ଭଲ ସଂସ୍କାର ଦେଇଛନ୍ତି । ପରିବାର ଭିତରୁ ତ ପିଲାଏ ସଂସ୍କାର ଶିଖିବେ ନା', ପାଣି ପିଉ ପିଉ କଥା ପୂର୍ଣ୍ଣ କଲା ବସୁମତୀ ।

'ଏଣିକି ସଂସାର ଚଳେଇବା ଦାୟିତ୍ୱ ସେମାନଙ୍କର । କେମିତି ଚଳେଇବେ ଦେଖିବା କଥା । ଆଜିଠୁ ତ କହିହେବନି । ସମୟ କହିବ । ମୋର ଚିନ୍ତା କେବଳ ଏଇ କୁନ୍ତୀଟା ପାଇଁ । ତା' ମୁଣ୍ଡରେ ଦୁବଚାଉଳ ପଡ଼ିଗଲେ ମୁଁ ମୁକ୍ତ ।' ଘର ଭିତରକୁ ଚାହିଁ ବେଦମତୀ ଚା' ଆଣିବାକୁ କହିଲା ।

ଚା' ନେଇ ଆସିଲା ନିଜେ ନୂଆବୋହୂ ମାନିନୀ । ପଛରେ କୁନ୍ତୀ ।

'ଆରେ ମାନୁ - ତୁ କାହିଁକି ଆଣିଲୁ ମା', ବିଶୁ ନାହିଁକି ?'

ତୃପ୍ତିର ହସ ଝାଡ଼ି ବେଦମତୀ ମାନୁ ହାତରୁ ଟ୍ରେ ନେଇ ସେଣ୍ଟରପିସ୍ ଉପରେ ଥୋଇଲା । ବସୁମତୀ ମାନୁର ହାତ ଧରି ପାଖକୁ ଆଣିଲା - "ବସ୍ ମା' ।" ଟିକିଏ ଲାଜରେ ଜଡ଼ସଡ଼ ହୋଇ ପାଖରେ ବସୁବସୁ ଖସି ଯାଉଥିବା ଓଢ଼ଣାଟିକୁ ବାରମ୍ବାର ମୁଣ୍ଡ ଉପରକୁ ଟାଣି ନେଉଥାଏ ମାନୁ ତା'ର ଅନଭ୍ୟସ୍ତ ହାତରେ ।

-ତମେ ଶାଢ଼ି ପିନ୍ଧିବା ଆଗରୁ ଶିଖିଥିଲ ଭାଉଜ ? ଚା' ପିଉ ପିଉ ମିତା ପ୍ରଶ୍ନ କଲା ।

ଉତ୍ତର ନ ଦେଇ ମୁଠାଏ ଶେଫାଳି ଝରେଇ ଦେଲା ମାନିନୀ । କୁନ୍ତୀ କହିଲା, ଭାଉଜ ମୋର ଶାଢ଼ି ପିନ୍ଧିବା ଅଭ୍ୟାସ କରିଥିଲେ । ବୋଉ ମନ ସେଥିପାଇଁ ଭାରି ଖୁସି । ତା' ଛଡ଼ା ଭାଇନା ତ ନିଜେ ଡ୍ରେସ୍ ପସନ୍ଦ କରନ୍ତିନି ।

ଉଷା ଆଉ ମିତା ମିଶି ମାନୁ ହାତର କାନର ଗହଣା ଦେଖୁଥିଲେ । ବସୁମତୀ ମନ ଫିକା ପଡ଼ିଯାଇଥିଲା । ଏଇ ଡ୍ରେସ୍ ପ୍ରସଙ୍ଗ ଉଠିଲାରୁ । ବାହାଘର ଆଲ୍‌ବମ୍‌ଟା ଖୋଲା ହୋଇ ପଡ଼ିଥିଲା । ବନାରସୀର ଫୁଲଫୁଟା ପଣତ ଭିତରେ ଚନ୍ଦ୍ରଉଦିଆ ମୁହଁ । ସତେ କେଡ଼େ ସୁନ୍ଦର ଦିଶୁଛି ! ବସୁମତୀ ମୁହୂର୍ତ୍ତକ ଲାଗି ଅନ୍ୟମନସ୍କ ହୋଇପଡ଼ିଲା । ବେଦମତୀ ପାନଡାଲା ଧରି ଖଟଖଟ କରି ଗୁଆ କାଟୁଥିଲା ଏବଂ ସେଇ ଛନ୍ଦରେ ବସୁମତୀ ଫେରି ଯାଇଥିଲା ପଛକୁ । ଅଞ୍ଜନ ବାହାଘରକୁ । ଅଞ୍ଜନର ବାହାଘରରେ ଏଇ ଡ୍ରେସ୍‌କୁ ନେଇ କମ୍ କଥା କଟାକଟି ହୋଇଛି । କୁଣିଆ, ମଇତ୍ର ଅତିଥି ଅଭ୍ୟାଗତ, ଗଲା ଅଇଲାଙ୍କ ଆଗରେ ତା' ମୁଣ୍ଡ ତଳକୁ ହୋଇଯାଇଥିଲା । ଗୋଟିଏ ବୋଲି ପୁଅ ଅଞ୍ଜନ । ପୁଅ ବାହାଘର ପାଇଁ କେତେ ରାତିଦିନ ସେ କଟେଇ ଦେଇଛି କଳ୍ପନାରେ । ସୁନାନାକୀ ବୋହୂ ଆଣିବ । ତା' ବୋହୂର ସରି ସମାନ କେହି ହୋଇନଥିବେ, ସୁନ୍ଦରପଣରେ ତା'ର ତୁଳନା ନଥିବ । ଗୁଣରେ ଅନ୍ୟମାନଙ୍କର ଆଦର୍ଶ ହେବ ସିଏ । ତା' ଶାଶୂପଣକୁ ଈର୍ଷା କରିବେ ଅନ୍ୟମାନେ, ଏମିତି କେତେ କଳ୍ପନା ।

ଛାତି ଭିତରୁ ଦୀର୍ଘଶ୍ୱାସଟିଏ ବାହାରି ଆସିବାକୁ ବାଟ ଖୋଜିଲା । ମନର ଭାବାନ୍ତରକୁ ଲୁଚେଇବାକୁ ଯାଇ ପଣତକାନିରେ ଘଷିମାଜି ମୁହଁ ପୋଛିଲା ସେ ।

ଆଲମାରି ଭର୍ତ୍ତି ପାଟଶାଢ଼ି, ଗହଣା ଭର୍ତ୍ତି ବାକ୍ସ, ମନଭରି ଖୁସି, ଆଖିରେ ଆକାଶେ ସ୍ୱପ୍ନ ସଜାଡ଼ି ରଖିଥିଲା ସେ । ସ୍ୱାମୀ ଅଭିଜିତ, ଝିଅ ରାନୁ ଏଥିପାଇଁ କମ୍ ଖୁଣ୍ଟା ଦେଇନାହାନ୍ତି । ତା' ନିଜ ଶାଢ଼ି, ଗହଣା ରାନୁକୁ ନ ଦେଇ ସାଇତି ରଖିଥିଲା ସେ ବୋହୂ ପାଇଁ । ରାନୁ ତ ନିଜ ରକ୍ତର । ହେଲେ ବୋହୂ, ତାକୁ ତ ନିଜର କରିବାକୁ ହେବ । ସ୍ନେହ ଦେଇ ବିଶ୍ୱାସ ଦେଇ । ପରଝିଅ ଯେତେବେଳେ ବୋଉ ବୋଉ ବୋଲି ଡାକିବ, ସେତେବେଳେ ତା' ବୋଉପଣର ଗରିମା ରକ୍ଷା କରିବାକୁ ହେବ । ସବୁ ରାନୁକୁ ଦେଇଦେଲେ କିମିତି ହେବ । ରାନୁ ତା' ଶାଶୂଘରକୁ ଗଲେ ସେଇ ଅଧିକାର ପାଇବନି କି !

ସବୁ ଭାବନାକୁ ଆଡ଼େଇ ଅଞ୍ଜନ ନିଜେ ବାଛି ଆଣିଲା ଜିତାକୁ । ଦିଲ୍ଲୀ ୟୁନିଭରସିଟିର ଛାତ୍ରୀ ଜିତା । ବାପା ମା' ଦୁହେଁ ଅଧ୍ୟାପନା କରନ୍ତି । ଦେଖିବାକୁ ସୁନ୍ଦର । କାହିଁକି ମନା କରନ୍ତା ସେ । ଅଭିଜିତ୍ ବି ରାଜି ହେଲେ ।

ନିକଟେଇ ଆସିଲା ଶୁଭ ମୁହୂର୍ତ୍ତ । ଶୁଭଶଙ୍ଖର ମଙ୍ଗଳଧ୍ୱନି ଭିତରେ ଗାଡ଼ି ଭିତରୁ ଓହ୍ଲେଇଲା ଜିତା । ହଁ, ସେ' ବି ଛାତିଏ ସରାଗ ଧରି ବୋହୂକୁ ଗାଡ଼ିରୁ ଓହ୍ଲେଇଥିଲା ।

ହେଲେ ସେ କ'ଣ ଦେଖୁଛି, ତା' କଳ୍ପନାର ରାଜକନ୍ୟା, ନାଲି ଟୁକ୍‌ଟୁକ୍ ରକ୍ତ ମହ୍ଲାର ଫୁଟି ଫୁଟି ଆସୁଥିବା ରୂପର ପାଖୁଡ଼ା କାହିଁ ?? ସଲଓ୍ୱାର କମିଜ୍ ପିନ୍ଧା, ଝିଲ୍‌ମିଲ୍ ଚୁନ୍‌ରି ପକେଇଥିବା ଝିଅଟିଏ । ସାମ୍ପୁକରା ମୁଣ୍ଡବାଳ ଫୁର୍‌ଫୁର୍ ଉଡୁଥିଲା ପବନରେ । ନାଁକୁ ମାତ୍ର ଚୁନ୍‌ରିଟି ମୁଣ୍ଡ ଉପରେ କ୍ଲିପ୍ ସାହାଯ୍ୟରେ ଘେରେଇ ହୋଇଥିଲା । ଓଠରେ ଲିପ୍‌ଷ୍ଟିକ୍, ଗାଲରେ ରୁଜ୍ । ହାତରେ ମେହେନ୍ଦୀ, ମୋଟାଏ ଝଲମଲ କରୁଥିବା ସୁନାଚୁଡ଼ି-ବାସ୍ । ହସିଲା ଆଖିରେ ମୁହଁକୁ ଉହିଁ ଠିଆ ହୋଇଛି ତା' ସାମନାରେ ଯିଏ, ସେ ତ ତା'ର ସ୍ୱପ୍ନର ପ୍ରତିମା ନୁହେଁ । ହାତର ବନ୍ଦାପନା ଥାଳିକୁ ଧରି ନିଜେ ବସୁମତୀ ଚିତ୍ର ପ୍ରତିମା ପାଲଟିଗଲା ସତେକି ! ତା'ର ଖୁସି ଉଛୁଳା ମୁହଁରେ ହଠାତ୍ ଯେମିତି କିଏ ବାଲ୍‌ଟିଏ ସ୍ୟାହି ଢାଳିଦେଲା । ସ୍ୱପ୍ନ ସବୁ ଝଡ଼ି ପଡ଼ିଲେ ଗୁଣ୍ଡଗୁଣ୍ଡ ହୋଇ । ଘରିପଟେ ବନ୍ଧୁବାନ୍ଧବ । ଝିଅ ଝିଆରୀଏ ଉହିଁଛନ୍ତି ନୂଆବୋହୂକୁ । ଇଏ କ'ଣ ? ଉପା ଗୁଞ୍ଜରଣ ।

ପଛରୁ ଟୀକାଟିପ୍ପଣୀର ଶର । ଆଲୋଚନା ସମାଲୋଚନାର ପଥର ମାଡ଼ । କିଏ କେତେ ପ୍ରକାରେ କହୁଥିଲେ । ସୁନ୍ଥା ନାହିଁ କି ସିନ୍ଦୂର ନାହିଁ । ଫୁଲ ନାହିଁ କି ଅଳତା ନାହିଁ । ଶଙ୍ଖା ନାହିଁ କି ଝୁଣ୍ଟିଆ, ଏମିତି ଅଲଣା କରି ଝିଅଟାକୁ ଶାଶୂ ଘରକୁ କେମିତି ଛାଡ଼ିଛନ୍ତି ତା' ବାପା ମା' । କି ଘର ଝିଅବା ? ଯେତେ ପାଠ ପଢୁ-ଭୃକୁଞ୍ଚନ, ନାକଟେକା, ଉପା ହସ । ସେଇଠି ହିଁ ଭଲ ମନ୍ଦର ବିଚାର । କାହା ପାଟିକୁ ବାଡ଼ବତା ଅଛି ?

ଅବାକ୍ ବସୁମତୀକୁ ଉହିଁ ପଛରୁ ପିଇସୀନାନୀ ତରବର କଲେ, "ଉହିଁଛୁ କ'ଣ ବସୁ-ବୋହୂକୁ ବନ୍ଦାପନା କରି ଘରକୁ ଆଣ । ଶୁଭ ମୁହୂର୍ତ୍ତ ଗଡ଼ିଯାଉଛି ପରା ।"

ଆରେ ! ସତେତ, କେତେ ସମୟ ହେଲା କେଜାଣି ସେ ଗହିଁଛି ବୋକାଙ୍କ ଭଳି, କିଏ କ'ଣ ଭାବିବ । ଭାବନା ଚହଲିଗଲା । ଆଗ ମାନମହତ ଜଗିବାକୁ ହେବ । ହୁଳହୁଳି ଦେଲା ବସୁମତୀ । ବନ୍ଦେଇଲା ବୋହୂକୁ 'ସୁଲକ୍ଷଣୀ ହେଇ ଯୁଗରାଇଜ କର' ।

ଘରକୁ ଆସିଲା ଜିତା । କାମର ଗହଳି ଭିତରେ ନିଜକୁ ବୁଝେଇ ସଜାଡ଼ି ନେଲା ସେ । ଭାବିଲା ଜିତାକୁ ସେ ବୁଝେଇବ, ଶିଖେଇବ । ପିଲା ମନ ତ । ବୁଝିଯିବ ଧୀରେ ଧୀରେ । ଏଇ ଦିନ କେଇଟା, ବନ୍ଧୁବାନ୍ଧବଙ୍କ ସାମ୍ନାରେ, ଘରର ମାନସମ୍ମାନକୁ ଜଗି ବୋହୂପଣିଆ କରିବା ପାଇଁ ଶାଢ଼ି ପିନ୍ଧି ବେଣୀ ବାନ୍ଧି, ଅଳତା ସିନ୍ଦୂର, ଫୁଲ ଅତରରେ ସଜେଇ ହେଲେ ଚଳିଯିବ । ଆଉ ସବୁ ପଛକଥା ।

ସୁବିଧା ଦେଖି ବସୁମତୀ କହିଲା ଜିତାକୁ । 'ମୋ କଥା ରଖିବୁ ମା' ଏଇ କେଇଟା ଦିନ-' ଜିତା ଶୁଣିଲା, କିଛି ଉତ୍ତର ଦେଇନଥିଲା ।

ଉତ୍ତର ଦେଇଥିଲା ଅଞ୍ଜନ । 'ଏ କଣ ବୋଉ, ତୋ' ପାଖରୁ ଏ ପ୍ରକାର ମରହଟ୍ଟିଆ ବ୍ୟବହାର ମୁଁ ଆଶା କରିନଥିଲି । ଜିତାକୁ ତୁ ଶାଢ଼ି, ଅଳତା ପିନ୍ଧିବାକୁ କହିଲୁ, କାହିଁକି ? ସେ କ'ଣ ଗାଉଁଲି ମୁର୍ଖ ଝିଅ ହେଇଛି ? ଜଣେ ଇଞ୍ଜିନିୟର । ତା' ନିଜର ଗୋଟିଏ ପରିଚୟ ଅଛି । ତା' ଛଡ଼ା ସେ ତ ଶାଢ଼ି ପିନ୍ଧିବା ଶିଖିନି । ବାଧ କରୁଛୁ କାହିଁକି ? ତାଙ୍କ ଘରର ଲୋକେ କ'ଣ ଭାବିବେ, କ'ଣ ଧାରଣା ହେବ ଆମ ସଂପର୍କରେ କହିଲୁ? ମୋତେ ଖରାପ ଲାଗୁଛି ।

ସ୍ତବ୍ଧ ହୋଇଗଲା ବସୁମତୀ । ଜଡ଼ ପାଲଟିଗଲା ତା'ର ଚେତନା । ଜିତା କହିଥିଲେ ତାକୁ ବାଧିନଥାନ୍ତା, ଅଞ୍ଜନ କହୁଛି ତା' ପାଇଁ ।

ଯାହା ଉପରେ ସେ ବଂଶର ବୁନିଆଦି-କାନ୍ଥ ଠିଆ କରିବାର ସ୍ୱପ୍ନ ଦେଖୁଛି । ତା'ର ବିଶ୍ୱାସ ଥିଲା ଅଞ୍ଜନର ବିଋର ଉପରେ । ହେଲେ ଆଜି... । ଏଇ ଡ୍ରେସ୍ ସମସ୍ୟାଟା ତ ସାମାନ୍ୟ କଥା । ଋହିଁଲେ ସେ ନିଜେ ବି ଏ କଥାକୁ ସାମାନ୍ୟ ଭାବେ ଗ୍ରହଣ କରିନେଇପାରେ । ବସୁମତୀ ଚିନ୍ତାର ଘେର ଭିତରେ ଛନ୍ଦି ହୋଇଗଲା । ତା' ମନକୁ ବାରମ୍ବାର ଅଞ୍ଜନର କଥା ହିଁ ଦଂଶନ କଲା । ଭାବିଲା, ସେ କ'ଣ କିଛି ଭୁଲ କଥା କହିଲା କି ?

ସେ ତ ପାରମ୍ପରିକ ଶାଢ଼ି ପିନ୍ଧିବାଟାକୁ ଆଭିଜାତ୍ୟର ଚିହ୍ନ, ଆମ ସଂସ୍କୃତିର ପ୍ରତୀକ ବୋଲି ଭାବି ଜିତାକୁ ଏଇ ବାହାଘର କେଇଟା ଦିନ ପିନ୍ଧିବାକୁ କହିଥିଲା ମାତ୍ର । ଏଠି ସାମାନ୍ୟ ଅସାମାନ୍ୟ, ଛୋଟ ବଡ଼, ଅଥବା ମାନ ଅପମାନର ପ୍ରଶ୍ନ ଉଠିଲା କୁଆଡୁ ? ବସୁମତୀ ମନଟା ଅଯଥା ଭାରାକ୍ରାନ୍ତ ହୋଇଗଲା । କାହାକୁ କିଛି କହିବା ପୂର୍ବରୁ ଆଗାମୀ ସମୟକୁ ଅପେକ୍ଷା କରିବା ଉଚିତ୍ ଭାବି, ସେ ନିରବ ରହିବାକୁ ଉଚିତ୍ ମନେକଲା । ଅଞ୍ଜନକୁ ବି କିଛି କହିନଥିଲା ।'

... ଅଞ୍ଜନ ଆଉ କେବେ ଆସିଥିଲା କି ବସୁ ? ବେଦମତୀ ପଋରୁଥିଲା । ନିଦରୁ

ଉଠିଲା ଭଳି ହଠାତ୍ ଚମକି ପଡ଼ିଲା ବସୁମତୀ । "କ'ଣ କହିଲୁ ବିନ୍ଦୁ, ମୁଁ ଟିକିଏ ଅନ୍ୟମନସ୍କ ହୋଇପଡ଼ିଥିଲି ।"

"ଅଞ୍ଜନ କଥା ପଚାରୁଥିଲି । ଚିଠି ଦେଇଥିଲା କେବେ ଆସିବ ? ଅନେକ ଦିନ ହେଲା ତାକୁ ମୁଁ ଦେଖିନି । ସେଇ ଯାହା ବାହାଘରରେ ଦେଖିଥିଲି ।"

'ନା, ଏଇ ଛୁଟିରେ କେହି ଆସିବେନି । ସିମ୍ଲା ଯିବେ । ତା' ବାପାଙ୍କୁ ବି ଯିବା ପାଇଁ ଲେଖିଛି ।'

"ଆଉ ରାନୁ-ଚନ୍ଦନଙ୍କ ଖବର କ'ଣ ?" ଚନ୍ଦନ ଭାରି ଭଲ ପିଲାଟିଏ । ଗୁଣର । 'ସେମାନେ କୁଆଡ଼େ ଯିବେନି' ? କଥାର ଖିଅ ଧରି ପଚାରିଲା ଉଷା । 'ଏଇ ହନିମୁନ୍', ପ୍ରସ୍ତାବଟା ବି ଗୋଟାଏ ପ୍ରକାରର ବୋହୂପଣିଆରୁ ମୁକ୍ତି ନୁହେଁ କି ବସୁନାନୀ ? ଆମ ସମୟ କଥା ଭାବିଲ, ମୁଣ୍ଡରୁ ଓଢ଼ଣା ଖସିବନି, ଘର-ପର ସବୁଲୋକଙ୍କୁ ଅଳତା, ସିନ୍ଦୂର ପିନ୍ଧେଇ ମୁଣ୍ଡିଆ ମାରୁମାରୁ ମନର ସରାଗ ଜାମ୍ ଧରିଯିବ । ଖୋଲାଖୋଲି କଥା ପଦେ କହିପାରିବନି । ତଥାପି ଗୋଟାଏ ପ୍ରକାରର ରୋମାଞ୍ଚ ଥିଲା । ମିତା କାନରେ ପଡ଼ିଲା ଉଷାର କଥା ପଦକ । ସାଙ୍ଗେ ସାଙ୍ଗେ ମାଡ଼ିବସିଲା ଭଳି କହିଲା, 'ରୋମାଞ୍ଚ ନା ଆଉ କିଛି । ନିଃଶ୍ୱାସ ଟିକେ ନେଇ ପାରିବନି ଆରାମରେ । ବାରହାତୀ ମାଣିଆବନ୍ଧ ଭିତରେ ଆଉଟୁପାଉଟୁ ହେଇ ଆଉର ପାଲଟି ଯାଉଥିବ । କ'ଣ ନା ଶଣ୍ଢୁଣା, ବୋହୂପଣ । ଯେତେସବୁ ବାଜେ କୁସଂସ୍କାର । ଜୀବନକୁ ସହଜ ସରଳ କରି ବଞ୍ଚିବାର କଳା ହିଁ ଆମେ ଜାଣୁନା । ବୋହୂଟା କ'ଣ ଜନ୍ତୁ ? ନା, ଏସବୁ ବଦଳିବା ଦରକାର ।

ଠିକ୍ କଥା । କୁସଂସ୍କାର ବଦଳିବା ଉଚିତ । ହେଲେ, ପରମ୍ପରା ଜିନିଷଟା ଅଲଗା କଥା । ସବୁ ପରମ୍ପରା ପଛରେ କିଛି ଗୋଟିଏ ସୁନ୍ଦର ଉଦ୍ଦେଶ୍ୟ ଥାଏ । ସେକଥା ଥାଉ, ମୁଁ ତ କହୁଛି ବାହାଘରର ଥ୍ରୀଲ୍ ଓ ଆନନ୍ଦ କଥା । ଆପଣା ମଣିଷମାନଙ୍କ ଭିତରେ ଆନନ୍ଦ ଖୋଜିବା ତ ଆମ ସଂସ୍କୃତିର ନିଆରାପଣ । ଆଜିକାଲି ଆଉ ସେଇଟା ନାହିଁ । ଆମେ ପଶ୍ଚିମା ହେଲୁଣି । ବାହାଘର ପୂର୍ବରୁ ବାପା ମା' ଝିଅଜୋଇଁଙ୍କ ପାଇଁ 'ହନିମୁନ୍ ଟିକେଟ୍' କରି ରଖିଛନ୍ତି ଉପହାର ପାଇଁ । ଅବଶ୍ୟ ସେମାନଙ୍କ ଭଳି ପରଂପରାର ଓଢ଼ଣା ଭିତରେ ଅଣନିଃଶ୍ୱାସୀ ନକରି ମୁକ୍ତବାୟୁର ବନ୍ଦୋବସ୍ତ କରୁଛନ୍ତି, ଭଲକଥା ନୁହେଁ କି ? କହି ଉଷାଟିକିଏ ଆଖିମିଟିକା ମାଇଲା ଓ କହିଲା ଟ୍ରାଡ଼ିସନ୍ କଥା କିଏ ଆଉ ଭାବୁଛି - ଉଷା ଟିପ୍ପଣୀ କଲା ହାଲୁକା ଭାବେ ।

ସବୁ ବଦଳିଗଲାଣି । ମଣିଷର ମନଠୁ ତା'ର ନିତିଦିନର ଜୀବନଚର୍ଯ୍ୟା ପର୍ଯ୍ୟନ୍ତ ସବୁରେ ପଶ୍ଚିମା ପବନ ଗୋଳେଇ ହେଉଛି । ଯୁଗର ରୁଚି କୁଆଡ଼େ ସମୟ ସାଙ୍ଗେ ସାଙ୍ଗେ ପାଦ ମିଳେଇ ନ ଚାଲିଲେ ତମେ ଅସଭ୍ୟ ତଳେ ଗଣା ହେବ । ମୂଲ୍ୟବୋଧର ତ ମାନେ ନାହିଁ । ଆଙ୍ଗୁଠି ଦେଖେଇଲେ କହିବେ– ଲୋଏର କ୍ଲାସ୍ ମେଣ୍ଟାଲିଟି । ମୂଳ କଥା ହେଲା ଏଇଟି ପ୍ରଜ୍ଞାପନର ଯୁଗ, ଦେଖେଇ ହେବାର ଯୁଗ । ସମୀକ୍ଷା କଲାଭଳି ବସୁମତୀ ନିଜର ବକ୍ତବ୍ୟ

ଥୋଇ ଦୀର୍ଘଶ୍ୱାସ ନେଲା ଏବଂ ନିର୍ଯାସରେ କହିଲା, 'ସମୟ ହିଁ ବଦଳେଇବ । ସମୟ ପାଖରେ ଆତ୍ମସମର୍ପଣ ନ କରି ଆଉ ଉପାୟ ନାହିଁ । ଅପେକ୍ଷା କରିବାକୁ ହେବ । ମଣିଷରଏଇ ଭ୍ରାନ୍ତି କେବେ କଟିବ କିଏ କହିବ ।

ଅନ୍ୟମାନେ ମଧ୍ୟ ସମର୍ଥନ କଲେ ବସୁମତୀର ବିଚାରକୁ ।

ମିତାର ଛ' ଖିଆ ସରିଯାଇଥିଲା । ବେକ କପାଳରୁ ଝାଳ ପୋଛୁ ପୋଛୁ କହିଲା କେଡ଼େ ଗରମ ହେଉଛି, ବର୍ଷା ଟିକିଏ ବି ନାହିଁ ।

ଫ୍ୟାନ୍‌ର ସ୍ୱିଚ୍‌କୁ ଟିକିଏ ବଢ଼େଇ ଦେଇ ହାଲୁକା ଭାବେ ବେଦମତୀ ପଚାରିଲା "ଏଇ ଖରାଦିନଟାରେ ସିନ୍ଥେଟିକ୍ ଶାଢ଼ି କାହିଁକି ପିନ୍ଧିଛୁ ମା' .... । ସୂତା ଶାଢ଼ି ପିନ୍ଧିଲୁନି, ଡ୍ରେସ୍ ପିନ୍ଧିବା ବୋଧେ ଛାଡ଼ି ଦେଲୁଣି ?"

'ଉକିରି କଲିଣି ପରା । ଡ୍ରେସ୍ ପିନ୍ଧି ପିଲାଙ୍କ ଆଗରେ ଠିଆ ହେବାକୁ ଭଲ ଲାଗିଲାନି' । 'ଭଲ କରିଛୁ । ଶାଢ଼ି ପିନ୍ଧିଲେ ନାରୀର ବ୍ୟକ୍ତିତ୍ୱ ଓ ସୌନ୍ଦର୍ଯ୍ୟ ସ୍ୱତନ୍ତ୍ର ଭାବେ ଫୁଟିଉଠେ । ଆମ ଦେଶ କଥା କହୁଛି, ହେଲେ ଆଜିକାଲି ଏଇ ଡ୍ରେସ୍ ନିଶା ପିଲାଠୁ ବଡ଼ଲୋକ ପର୍ଯ୍ୟନ୍ତ ସଭିଙ୍କୁ ଘାରିଛି । ହାତରେ କ୍ଷୀର କେନ୍ ହେଉ କି ପିଲାଙ୍କ ବସ୍ତାନି, ଫୁଲତୋଡ଼ା ହେଉ କି ପ୍ରାତଃଭ୍ରମଣ ସବୁଠି ମ୍ୟାକ୍ସିର ଶୋଭାଯାତ୍ରା-ସହର ତ ସହର, ଗାଁ ଦାଣ୍ଡରୁ ପୋଖରୀହୁଡ଼ା ପର୍ଯ୍ୟନ୍ତ ସବୁଠି ଏଇ ମ୍ୟାକ୍ସି ସଭ୍ୟତାର ବିସ୍ତାର-ଉଷା ତର୍ଜମା କଲା । –ଗାରମେଣ୍ଟ୍ ବ୍ୟବସାୟୀଙ୍କ ଭଲ ଦି'ପଇସା ଫାଇଦା । ଏଡ଼େ ଟିକି ପିଲାବି ଜାଣିଲେଣି ଡ୍ରେସ୍‌ର ଗୁରୁତ୍ୱ । ଆମ ମନୁଆ ଝିଅ ମ, ତା' ବୋଉକୁ ପରା ସେଦିନ କହିଲା ଘରେ ତିଆରି ଜାମା ଘରେ ପିନ୍ଧା ହୁଏ । ବାହାର ପାଇଁ କିଣା ଡ୍ରେସ୍ । କହୁ କହୁ ହସି ପକେଇଲା ବେଦମତୀ ।

ସବୁଠୁ ମଜା କଥା ଜାଣିଛ ନା ବିଦୁନାନୀ, ମଝିରୁ କଥା ଛଡ଼େଇ ମିତା ଯୋଗ କଲା । 'ମୋ' ସାଙ୍ଗ ସୀମା ନୂଆ ବାହାହୋଇ ଆସିଲା । ଆମେ ତାକୁ ମଜାରେ ମଜାରେ ତା' ଶାଶୂଘର କଥା ପଚାରିଲୁ ।

ସେ ଖୁସିରେ ଉଚ୍ଛୁଳି ଉଠିଲା କହିଲା– 'ମୋ ଶାଶୂ ଭାରି ଭଲ । କୌଣସି କଥାକୁ ମନା ନାହିଁ । କାମ କରିବାକୁ ତ ପଡ଼େନି । ବଡ଼କଥା ହେଲା ଡ୍ରେସ୍, ଯୋଉ ଡ୍ରେସ୍ ପିନ୍ଧିଲେ ବି ଚଳିବ, ଶାଢ଼ି ପିନ୍ଧିବାକୁ ବାଧ ନୁହେଁ । ବହୁତ ମଡର୍ଣ୍ଣ ।' ଏମିତି କି ସେ ତା' ସ୍ୱାମୀଙ୍କୁ ନାଁ ଧରି ଡାକେ – ମିତା କଥା ପୂରଣ କଲା ।

ଶୁଣିଲୁ ବସୁ, ଭଲ ଶାଶୂର ମାପକାଠି – ପାଟିରେ ପାନ ପୂରେଇ ବେଦମତୀ ଚକିତ ହୋଇ ଗାଲରେ ହାତ ଦେଲା ।

କହୁଛନ୍ତି ତ ଶାଢ଼ି ପିନ୍ଧିଲେ ଫୁର୍ତ୍ତି ଲାଗେନି କାମ କରିବାକୁ, ବସୁମତୀ କଣ୍ଠରେ ତାଚ୍ଛଲ୍ୟ ପୂରେଇ କହିଥିଲା । ଆମେ ଶାଢ଼ି ପିନ୍ଧି ଯେମିତି କିଛି କାମ କରିପାରୁ ନଥିଲୁ । ଏଇମାନେ 'ଡ୍ରେସ୍' ପିନ୍ଧି ପୃଥିବୀର ମୁହଁ ଓଲଟେଇ ଦେବେ । ଯେତେ ସବୁ ବାଜେ କଥା । ବରଂ ଯା

କହିପାର, ନାରୀ ଆଜି ତା'ର ସ୍ୱତନ୍ତ୍ର ପରିଚୟଟିଏ ଆପଣେଇ ବେଶି ଗହୀରକୁ ନ ଯାଇ, ଉପର ଠାଉରିଆ ଏଇ ବାହାର ପରିବର୍ତ୍ତନକୁ ଆପଣେଇ ଆତ୍ମସନ୍ତୋଷ ପାଉଛି ଯେ କିଛି ଗୋଟିଏ ନୂଆ କଥା କରି ପକେଇଲା, ସେ ମୁକ୍ତ ପରମ୍ପରାକୁ ଭାଙ୍ଗି ଦେଲା, ଶାଢ଼ି, ଅଳତା, ଶଙ୍ଖା ସିନ୍ଦୂରର ପୁରୁଣା ସମ୍ପର୍କକୁ ଛିଣ୍ଡେଇ ନୂଆ ମଣିଷ ହୋଇଗଲା । ଗୋଟାଏ ସହଜ ମନସ୍ତତ୍ତ୍ୱ, ଭ୍ରାନ୍ତି, ଅବଚେତନର । ବୟସକୁ ପରାଜିତ କରିବାରେ ଦୂରନ୍ତ ଏକ ଭିନ୍ନ ମନସ୍କପଣ । କଥା କହିସାରି ବସୁମତୀ ପଣତକାନିରେ ମୁହଁ ପୋଛିଲା ।

ବାହାର ଚଳଣି ବଦଳେଇଦେଲେ ଆମେ କ'ଣ ନୂଆ ହୋଇଯିବା । ନା ପୋଷାକ, ପ୍ରସାଧନ, ହାଏ-ହାଲୋ, ଆମକୁ ମୁକ୍ତି ଆଣିଦେବ ? ମୁକ୍ତି ଆମ ନିଜ ଭିତରେ-ତାକୁ ଅନୁଭବ କରିବାର ମନ ଦରକାର, ଦୃଷ୍ଟି ଦରକାର । ହେଲେ କିଏ ବୁଝୁଛି ବସୁ, ସମସ୍ତେ ତ 'ଡ୍ରେସ୍' ପଛରେ ଧାଇଁଛନ୍ତି । ଦାଣ୍ଡ ହାଟ, ଘାଟ ବଜାର ସବୁଠି ଏଇ ଭଳିଭଳିକି ଡ୍ରେସ୍‌ର ଝୁଲଣ । ଏମିତି କି ଶାଶୂ-ବୋହୂ, ଜାଆ-ଜାଆ, ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ଏନେଇ ମୁହଁ ଫୁଲାଫୁଲି, ମନାନ୍ତର, ଜିଦି, ବାଦ, ଝିକ୍‌ଝାକ୍ ଲାଗିଛି ।

'ତମେ କିନ୍ତୁ ଭାଗ୍ୟବାନ ବଦୁନାନୀ ସୁନାବୋହୂଟିଏ ପାଇଛ । କିଛି ବାଛିବାକୁ ନାହିଁ' - ଆହୁରି କ'ଣ କହି ଆସୁଥିଲା ଉଷା, ହଠାତ୍ ପରଦା ଉହାଡ଼ରୁ କୁନ୍ତୀ ମୁହଁ ଦେଖେଇ ପଚାରିଲା- 'ବୋଉମ, ଭାଉଜ ପଚାରୁଛନ୍ତି ରାତି ପାଇଁ କେତେ ଅଟା ଚକଟା ହେବ ?' କୁନ୍ତୀ ପ୍ରଶ୍ନରେ ସମସ୍ତେ ସଚେତନ ହେଲେ । ସଞ୍ଜ ହେଲାଣି, ଗପୁଛନ୍ତି ତ ଗପୁଛନ୍ତି । ସମୟ କଥା ମନେନାହିଁ । ସନ୍ଧ୍ୟା ଧୂପର ମିଠା ବାସ୍ନା ସଞ୍ଚରି ଯାଉଛି ସବୁଆଡ଼େ । ବେଦମତୀର ବୋହୂ ମାନୁ ବୋଧେ ସଞ୍ଜ ବସେଇଲାଣି ।

ଉଠ୍ ଉଠ୍ ହେଲା ବସୁମତୀ । ତା' ସହିତ ବେଦମତୀ ବି । କୁନ୍ତୀ ଉଦ୍ଦେଶ୍ୟରେ କହିଲା, 'ରହ ଟିକିଏ । ଏଇତ ସଞ୍ଜ ହେଲା ଏତେ ତରତର କାହିଁକି ବିନୁ ଆସିବନି କି ?' ଆସର ଭାଙ୍ଗିଲା । ବିଦା କରିବାକୁ ବେଦମତୀ ଦୁଆର ଯାଏ ଆସି ଅନୁରୋଧ କଲା - "ଆଜି ତ ଖାଲି ତରବର ହେଲ, ଆଉ ଦିନେ ସମୟ କରି ନିଶ୍ଚୟ ଆସିବ ।" ବସୁମତୀର ହାତ ଧରି ଅନ୍ତରଙ୍ଗତାର ସ୍ପର୍ଶ ଦେଇ କହିଲା, ତୁ ବସୁ, ଆଉଥରକୁ ଆସିଲେ ଯେମିତି ବୋହୂ ହାତର ରାନ୍ଧଣା ଚାଖି ଯିବାକୁ ଭୁଲିବୁନି । ମନେ ରହିଲା ତ ?

ବାଟରେ ଆସୁଆସୁ ତିନିଜଣ ଯାକ ବୋହୂ ପ୍ରଶଂସାରେ ଶତମୁଖ ହୋଇ ଉଠିଥିଲେ ।

କଥାର ଶେଷ ସ୍ପର୍ଶ ଦେଇ ବସୁମତୀ କହିଲା - ବେଦମତୀର ଭାଗ୍ୟ, ଭଲ ବୋହୂଟିଏ ପାଇଛି ।



# ନୀଡ଼

ସୁମତୀ ଗଲା ପରେ, ସେ ଦୁଆର ଦେବାପାଇଁ ତଳକୁ ଓହ୍ଲେଇ ଗଲେ । ହଠାତ୍ ପାହାଚ କୋଣରେ ମୋଞ୍ଚାଏ ମଇଳା ଭଳି କିଛି ପଡ଼ିଥିବାର ତାଙ୍କ ନଜରକୁ ଆସିଲା । ମନେମନେ ବିରକ୍ତ ହେଲେ ସୁମତୀ ଉପରେ; ମନ ଲଗାଇ କିଛି କାମ କରିବନି, କେମିତି ଝାଡୁ ମାରିଦେଲେ ଯାଏ, ସବୁବେଳେ ତରତର ।

ସତାବନ ବର୍ଷର ଝାଉଁଳିଆ ଦୃଷ୍ଟି: ସ୍ପଷ୍ଟଭାବେ କିଛି ଦେଖି ପାରୁ ନାହାଁନ୍ତି ଆଜିକାଲି, ଆଖିରେ ଚଷମା ନାହିଁ, ନିଜେ ନଇଁ ପଡ଼ିଲେ ସଫା କରିବାକୁ । ଆରେ ! ହଠାତ୍ ନିଃଶ୍ୱାସ ରୋକି ହୋଇଗଲା - ଏ ତ କ'ଣ ମଇଳା ନୁହେଁ । ହାତମାରିଲେ, ନରମ, ନରମ ଲାଗିଲା - ହାତ ବାଜିବାରୁ ମୁଣ୍ଡ ଉଠେଇଲା, ଯାଃ ପକ୍ଷୀଟିଏ ! ଆଶ୍ଚର୍ଯ୍ୟ । ଏଇ ଦୋ' ମହଲା କୋଠାଘର ଭିତରକୁ ଆସିଲା କିମିତି !

ଚିହ୍ନିବାକୁ ଚେଷ୍ଟାକଲେ । ଚିହ୍ନା ପକ୍ଷୀ ଭଳି ତ ଲାଗୁନି । ତେବେ ଚକୁଆ କି ଡାହୁକ ହୋଇପାରେ । ଚୁପ୍‌ଚାପ୍ ପଡ଼ିଛି, ଶବ୍ଦ ନାହିଁ। କଣ୍ଠସ୍ୱରରୁ ଅବା ଜାଣି ହୁଅନ୍ତା, ସେ ଯୋଉ ଜାତିର ହେଉ ପକ୍ଷୀଟିଏ ତ ! ବାଟ ଭୁଲି ହୁଏତ ପଶି ଆସିଛି, ଖାଦ୍ୟ ଅନ୍ୱେଷଣ କରୁକରୁ । କିମ୍ବା ଶତ୍ରୁକୁ ଭୟକରି ଘର ଭିତରକୁ ପଶିଆସିଛି ନିର୍ଭୟ ଆଶ୍ରୟ ଭାବି । ଆହା । କ୍ଳାନ୍ତ ଦିଶୁଛି ବିଚରା । ଅନୁମାନ ଲଗେଇ ଆଉ ଟିକିଏ ଭାବିଲେ, ଇଏ ନିଶ୍ଚେ ଡାହୁକ । ପାହାଚରେ ଗୋଟିଏ କୋଣକୁ ଜୋତା ଷ୍ଟାଣ୍ଡ୍ । ତା'ରି ମଝାମଝି ମୁଠାଏ ଜାଗାରେ ପକ୍ଷୀଟି ସାଙ୍କୁଡ଼ିସୁଙ୍କୁଡ଼ି ହୋଇ ଲେପ୍‌ଟେଇ ପଡ଼ିଗଲା ତାଙ୍କ ଆଙ୍ଗୁଠି ଛୁଆଁରେ ଟିକିଏ ଥରି ଉଠି । ତା'ପରେ ସ୍ଥିର ହେଇ ଜୁଳୁଜୁଳୁ କରି ଚହିଁଲା ତାଙ୍କ ମୁହଁକୁ, ଆତ୍ମସମର୍ପଣ କରିବା ଢଙ୍ଗରେ ।

ଏଥର ସେ ଆସ୍ତେ କରି ଉଠେଇ ଆଣିଲେ ଦି'ହାତରେ । ଆଉଁଶି ଦେଲେ ଅଭୟ ଦେଇ । ଭୟ ନାହିଁରେ ପକ୍ଷୀ, ଏଠି ତୋର କେହି ଶତ୍ରୁ ନାହାନ୍ତି । ଏତେ ବଡ଼ କୋଠାରେ ମୁଁ ଏକଦମ୍ ଏକା । ଜାଣେନା, ତୁ କାହିଁକି ଆସିଛୁ । ତେବେ ଭଲହେଲା, କିଛି ସମୟ ତ ଆମେ ଏକାଠି କଟେଇବା, ସୁଖଦୁଃଖ ହେବା । କ୍ଲାନ୍ତି କଟିଗଲେ ପଛେ ତୁ ଚାଲିଯିବୁ, ଯେମିତି ଅନ୍ୟମାନେ ଯାଇଛନ୍ତି । ପକ୍ଷୀଟି ମୁଣ୍ଡ ଟେକି ତାଙ୍କ ମୁହଁକୁ ଚାହିଁଥିଲା, ସତେଯେମିତି ସେ ବୁଝିପାରୁଛି ତାଙ୍କ କଥା ।

ମନେପଡ଼ିଲା ଅନେକ ଦିନ ତଳର କଥା । ଏମିତି ଏକ ଘଟଣା ଘଟିଥିଲା । ସେଦିନ ବି ଏମିତି ଏକ ସକାଳ ଥିଲା । ବାସୁ, ବାସୁଦେବ ତାଙ୍କର ପୁରୁଣା ଡ୍ରାଇଭର, କ୍ଷତାକ୍ତ ମାଛରଙ୍କା ଚଢ଼େଇଟିଏ ଆଣି ତାଙ୍କ ଆଗରେ ଥୋଇଲା– "ମା ଦେଖିଲେ ଗ୍ୟାରେଜ ଖୋଲିଲା ବେଳକୁ ଏଇଟି ଆସି ମୋ ପାଦ ତଳେ ଛଟପଟ ହେଇ ପଡ଼ିଗଲା, ଯେମିତି ଶରଣ ମାଗୁଛି, କ'ଣ ଆଉ କରିଥାନ୍ତି ଯେ, ଦେଖୁନାହାନ୍ତି, ତା' ଡେଣାରେ ଆଘାତ ଲାଗିଛି । ଉଡ଼ି ପାରୁନି ।

ବାସୁଦେବ ଡ୍ରାଇଭର ହେଲେ ବି ଅତି ବିଶ୍ୱସ୍ତ ଥିଲା ଅବିନାଶଙ୍କର । ଅବିନାଶ ଚାଲିଗଲା ପରେ ବି ଅନେକ ବର୍ଷଯାଏ ଥିଲା । ପିଲାଏ ପଢ଼ାସାରି ବିଦେଶ ଗଲାପରେ, ତା' ପାଇଁ ଆଉ କିଛି କାମ ରହିଲାନି । ଅନିଚ୍ଛାସତ୍ତ୍ୱେ ସେ ନିଜପାଇଁ ଅନ୍ୟ ବ୍ୟବସ୍ଥା କରି ଚାଲିଗଲା । ତଥାପି ଆସୁଥିଲା, ମଝିରେ ମଝିରେ ଗାଡ଼ି ସଫା କରି, ଡାକ୍ତରଖାନା କି ମନ୍ଦିର ନେଇ ଯାଉଥିଲା ତାଙ୍କୁ । ଏବେ ଆଉ ଗାଡ଼ି ନାହିଁ, ସେ ବି ଆସିପାରୁନି । ଅସୁସ୍ଥ ହେଇଯାଇଛି ।

ସେଦିନ ଚାହିଁଥିଲେ କିନ୍ତୁ ଚଢ଼େଇଟିକୁ ବାସୁ ଫୋପାଡ଼ି ଦେଇ ପାରିଥାନ୍ତେ, ସେ ତାହା କରିନଥିଲେ । ସେ ନିଜେ ବି ଏତେଟା ନିଷ୍ଠୁର ହୋଇ ପାରିନଥିଲେ । ପକ୍ଷୀଟିକୁ ଯତ୍ନରେ ପୋଛିପାଛି ଔଷଧ ଲଗେଇ ସାଷ୍ଟାମ କରିଥିଲେ । ବାସୁ ନିଜେ ଯାଇ ଛୋଟ ଚୁନାମାଛ କିଣିଆଣି ଦେଉଥିଲା ଏବଂ ସେ ନିଜେ କାଇଦା କରି ଖୁଆଉଥିଲେ । ତା' ଚଞ୍ଚୁରେ ମାଛ ଦେଲା ବେଳକୁ ସେ କାମୁଡ଼ି ଦେଉଥିଲା ମଧ୍ୟ । ସପ୍ତାହେ ଖଣ୍ଡେ ସେ ବ୍ୟସ୍ତ ରହିଥିଲେ ତା' ପାଇଁ, କେମିତି ଗୋଟାଏ ମାୟା ଲାଗି ଆସିଥିଲା ତା' ପ୍ରତି କାହିଁକି କେଜାଣି ।

କ୍ରମଶଃ ପକ୍ଷୀଟି ତାଙ୍କୁ ଭାବୁକ କରି ଦେଇଥିଲା । ଅସୀମା ଭାବିଲେ, ଅର୍ଣ୍ଣବଟା ପିଲାଦିନୁ ଚଗଲା । ଖେଳିବାକୁ ଯାଇ ସବୁବେଳେ ଗୋଡ଼ହାତ ଖଣ୍ଡିଆ କରି ଆସିବ ଆଉ ସେ ତାକୁ ପୋଛାପୋଛି କରି ଔଷଧ ଲଗେଇବେ ଘା' ଭଲ ହେଲା ପର୍ଯ୍ୟନ୍ତ; ଠିକ୍‌ସେମିତି, କିଛିଦିନ ସେମିତି ପକ୍ଷୀଟି ଆବୋରି ରଖିଥିଲା, ଧୀରେ ଧୀରେ ଭରି ଆସିଲା ତା' କ୍ଷତସ୍ଥାନ । ମନେ ମନେ ସେ ଖୁସି ହୋଇଥିଲେ ପକ୍ଷୀଟି ଡେଣା ଝାଡ଼ିଲାଣି ବୋଲି ।

ଦିନେ ସକାଳୁ ଉଠି ଦେଖନ୍ତି ଓ ସେ ଆଉ ନାହିଁ । ଖାଲି ପଡ଼ିଛି ପଞ୍ଜୁରି – ଉଡ଼ିଯାଇଛି । ଉଦାସ ଲାଗିଥିଲା । ଦୀର୍ଘଶ୍ୱାସ ନେଲେ ଅସୀମା । ଭାବିଲେ ଡେଣା ଲାଗିଲେ ସମସ୍ତେ ଏମିତି ଉଡ଼ିଯା'ନ୍ତି । କାହିଁକି ବି ରହନ୍ତା ଯେ । ତାଙ୍କ ସାମ୍ନାରେ ଯେତେବେଳେ ଅନନ୍ତ ଆକାଶ-ମୁକ୍ତ ଜୀବନ ହାତ ଠାରୁଛି ।

ମନେପଡ଼ନ୍ତି ଅବିନାଶ । କେତେ ବା ବୟସ ହୋଇଥିଲା । ଅବସର ନେଇ ନଥିଲେ, ମଣିଷଟା ଏତେ ଶୀଘ୍ର ମାୟା କଟେଇ ଚାଲିଯିବେ ବୋଲି ସେ କଳ୍ପନା ବି କରିନଥିଲେ । ଆଉ ଦଶଜଣଙ୍କ ଭଳି ଖଟ୍‌ରେ ଶୋଇ ହୁକୁମାତି କରି ପଡ଼ି ରହିଥାନ୍ତେ ହେଲେ, କିଛିଦିନ ଦାବି କରିଥାନ୍ତେ ସେବା ଶୁଶ୍ରୁଷା, ତା'ହେଲେ ତ ଅବୁଝା ମନଟା ବୁଝିଥାନ୍ତା ହୁଏତ । ସମୟ ଏମିତି ବୋଝ ହୋଇ ଲଦିହୋଇ ନଥାନ୍ତା ତ... ଦୀର୍ଘଶ୍ୱାସ ନେଲେ ଅସୀମା: ଭାବିଲେ, ମଣିଷ ଚାହିଁଲା ପ୍ରକାରେ ଈଶ୍ୱର ଯଦି ସବୁକଥା ସଜାଡ଼ି ଦେଇଥାନ୍ତେ । ହେଲେ, ଅବିନାଶ ନିଜ ଚାହିଁଲା ପ୍ରକାରେ ହିଁ ବାଟକାଟି ଚାଲିଗଲେ । ବେଳେବେଳେ କଥା ପ୍ରସଙ୍ଗରେ କହୁଥିଲେ- ଭାବିଛ, ତୁମ ସେବାଯତ୍ନ ଲୋଭରେ, ମୋ ବାପାଙ୍କ ଭଳି ଖଟରେ ଶୋଇ ଯନ୍ତ୍ରଣାରେ ସଢ଼ିବି; ମୋଟେ ନୁହେଁ । ତୁମେ ଜାଣ ମଣିଷର ଦୁଃଖ ଯନ୍ତ୍ରଣା ମୁଁ ସହିପାରେନା ମୋ' ପିଲାଙ୍କୁ ମୁଁ ସେଭଳି ଯନ୍ତ୍ରଣା ଭିତରେ କାହିଁକି ଛନ୍ଦିବି ଯେ, ଆଗରୁ ହିଁ ମୋହମୁକ୍ତ ହେଇଯିବି ।

ସତକୁସତ ଦିନେ ସବୁ ମାୟାମୋହ କଟେଇ ଚାଲିଗଲେ ଅବିନାଶ ଆଗକୁ । ସବୁଦିନ ଭଳି ଶୋଇବାକୁ ଯାଇ; ସକାଳୁ ଆଉ ଉଠିଲେନି । ପ୍ରାଣପକ୍ଷୀ ଉଡ଼ିଗଲା ମୁକ୍ତ ହୋଇ । ଡାକ୍ତର କହିଗଲେ କାଡ଼ିଆକ୍ ଆରେଷ୍ଟ । ସେ ପଥର ପାଲଟି ଯାଇଥିଲେ । ଥଟାମଜାରେ କହୁଥିବା କଥା, କେମିତି ଏମିତି ସତ ପାଲଟିଗଲା !

ଖାଲି ପଡ଼ିଗଲା 'ନୀଡ଼' । କେତେ ସରାଗରେ କାଠିକୁଟା ଗୋଟେଇ 'ନୀଡ଼' ରଚିଥିଲେ ସେ ଓ ଅବିନାଶ ମିଶି । ଅର୍ଣ୍ଣବ ଓ ଅନୁପମା ଆସିଲାପରେ, ସେମାନଙ୍କ କାକଳୀରେ 'ନୀଡ଼' ଗୀତିମୟ ହୋଇଉଠିଥିଲା । ମହୋତ୍ସବ ଲାଗୁଥିଲା ନିତିଦିନ । ପକ୍ଷୀ ଶାବକଙ୍କ ଡେଣାରେ ଦମ୍ଭ ଆସିଲା । ଖଣ୍ଡିଉଡ଼ା ଦେଉ ଦେଉ ଖଞ୍ଜି ହେଇଗଲା ଆକର୍ଷଣୀୟ ପରିଚୟ ସବୁ । ପାଦ ତଳେ ଲାଗୁନଥିଲା ଅବିନାଶଙ୍କର ପିଲାଏ ଯୋଗ୍ୟ ହୋଇଛନ୍ତି । ଅର୍ଣ୍ଣବ ଜଣେ ସାଇଣ୍ଟିଷ୍ଟ ହେବ ଆଉ କ'ଣ ଦରକାର ତାଙ୍କର ।

ପ୍ରଥମେ ଅନୁପମା ପରଘରୀ ହେଲା । ଖୋଜି ଖୋଜି ପୁଷ୍କରଙ୍କୁ ଜ୍ୱାଇଁ କରି ଆଣିଥିଲେ ଅନୁ ପାଇଁ । ସେ ଇଂଜିନିୟର ବିଦେଶରେ ରୁହେ । ଝିଅକୁ ଛାଡ଼ିଲାବେଳେ ଟିକିଏ ଭାଙ୍ଗି ପଡ଼ିଥିଲେ ଅବିନାଶ । 'ନୀଡ଼' ଫାଙ୍କା ଲାଗିଥିଲା । ସେଇ ଶୂନ୍ୟପଣକୁ ଭରିବା ପାଇଁ ଖୋଜି ଆଣିଥିଲେ ସୁନାନାକୀ ଅର୍ପିତାକୁ ବୋହୂ କରି ।

ମାତ୍ର କେଇଟା ମାସ ହସି ଉଠିଥିଲା 'ନୀଡ଼' ଇନ୍ଦ୍ରଧନୁର ବର୍ଣ୍ଣୋତ୍ସବରେ । ଅର୍ପିତା ପାଦରୁ ନୂଆବୋହୂର ଅଲତା ଲିଭି ନଥିଲା, ପାଦ କାଢ଼ିଲା ଅର୍ଣ୍ଣବ ବିଦେଶ ଯିବା ପାଇଁ । ଉଜ୍ଜ୍ୱଳ ଭବିଷ୍ୟତ ହାତଠାରି ଡାକୁଚି । କେମିତି ମନା କରିଥାନ୍ତେ ସେ । ଇଏ ତ ଗୌରବର କଥା । ସେ ନିଜେ କିନ୍ତୁ ଭାଙ୍ଗି ପଡ଼ିଥିଲେ ଅନ୍ତର ଭିତରେ । ବାତ୍ସଲ୍ୟ ମମତାର କାରୁଣ୍ୟରେ ବିଳପି ଉଠିଥିଲା ଯଶୋଦା ମା'ର ଦିନରାତି । ସେଇଦିନରୁ ମନକେନ୍ଦରାର ସେଇ କରୁଣ ରାଗିଣୀ କ୍ରମଶଃ ପ୍ରଲମ୍ବିତ ହୋଇ, ଅବିନାଶ ଚାଲିଗଲା ପରେ ଏକାବେଳକେ ତାଙ୍କୁ ଆଚ୍ଛନ୍ନ କରିପକେଇଲା । 'ଶୂନ୍ୟ ନୀଡ଼' ଭିତରେ ଆରମ୍ଭ ହୋଇଗଲା ଅନନ୍ତ ପ୍ରତୀକ୍ଷାର ଜୀବନ ।

ସେ ତ ଠିକ୍ କରିଥିଲେ, 'ନୀଡ଼' ନାଁଟା ଉଠେଇଦେବେ । କେହି ଯେତେବେଳେ ରହିଲେନି ଆଉ ଆବଶ୍ୟକତା କଣ 'ନୀଡ଼'ର । ହେଲେ ଅନୁପମା ଋହିଁଲାନି । "ଇଏ ବାପାଙ୍କର ସ୍ମୃତିର 'ନୀଡ଼', ଥାଉ ।

ଥାଉ "ରହିଲା ମଧ୍ୟ" । ନିଜେ ହିଁ ସେ ଜଗି ରହିଛନ୍ତି 'ନୀଡ଼'କୁ ସେଇଦିନରୁ । ଖରା, ବର୍ଷା, ଶୀତ, କାକରକୁ ପିଠିକରି । କାଳେ କିଏ କେତେବେଳେ ବାଟ ଭୁଲି ପଶି ଆସିବେ ହୁଏତ ! ଅବିନାଶ ଦେଇଥିବା ପରିଚୟର ଖାନଦାନୀ ଖୋଳ ପିନ୍ଧି ସେଇ ଦିନରୁ ସେ ଋହିଁ ବସିଛନ୍ତି ଦୁଆରକୁ, କାହା କାକଳୀ ଶୁଭିବ, ଆଉ ତାଙ୍କର ନିଶୂନ 'ନୀଡ଼' ପୁଣି ଚଳଚଂଚଳ ହୋଇଉଠିବ ବୋଲି । ସେଇ ଗହଳିରୁ ଗୋଟେଇଥିବା ସ୍ମୃତିର ନିଶାରେ ପୁଣି ଗଡ଼ି ଋଲିବ ଜୀବନ ଆଉ କିଛି ବାଟ । କାରଣ ତାଙ୍କ ଆଗରେ ତ ମୁକ୍ତ ଜୀବନ ନାହିଁ-ନାହିଁ ମଧ୍ୟ ଡେଣା, ପରିସର ସୀମିତ ।

ପକ୍ଷୀଟି ତାଙ୍କ କୋଳ ଭିତରେ ଖୁଜୁବୁଜୁ ହେଲା । ତାଙ୍କମନର କଥାକୁ ସତେ ଯେମିତି ଶୁଣିପାରୁଥିଲା । ଅସୀମା କହିଲେ, "ତୋ ଭାଗ୍ୟ ମୋର ନାହିଁରେ ପକ୍ଷୀ ।' ଋଲଋଲ ହୋଇ ସେ ଉପରକୁ ଉଠିଲେ । ଋଲୁଋଲୁ କହିଲେ, 'ମୋଟେ ଭୟ ନାହିଁ । ତୋ ମୋ ବ୍ୟତୀତ ଏଠି ଆଉ କେହି ନାହିଁ । ଆଉ ଯିଏ ଅଛି ବି ସେ ତ ଖଟୁଲିରେ ବସିଛି ଦିଅଁ ସାଜି । ସୁମତୀ ବି ଆଜି ଆସିବନି କହି ଯାଇଛି । ତା' ଝିଅ ଆସିବ ତ ।" ସଭିଙ୍କର କିଛି ନା କିଛି ଅବଲମ୍ବନ ଅଛି । କେହି ନା କେହି ଅଛନ୍ତି । ସମସ୍ତେ ବ୍ୟସ୍ତ ଅଛନ୍ତି କାହା ପାଇଁ ନା କାହା ପାଇଁ, ତାଙ୍କ ଭଳି କେହି ଏକା ନୁହେଁ ।

ଏମିତିରେ ସୁମତୀଟା ଭଲ ମଣିଷ । ପରିଷ୍କାର ପରିଚ୍ଛନ୍ନ ମନ । କାମ କରେ ବି ଭଲ । ବୟସ ପଋଶ ପାଖାପାଖି । ଆଗରୁ ବି' ଓଳି ଘର ସଫା କରିଦେଇ ଯାଉଥିଲା । ଆଜିକାଲି ସଂଜବେଳେ ଆସି ରାତି ପାଇଁ ରୋଷେଇ କରିଦେଇ ଯାଉଛି । ସେ ହିଁ ପ୍ରସ୍ତାବ ରଖିଥିଲା । "ତମେ ମା' ଏକୁଟିଆ ମଣିଷ । ଆଉ କିଏ ଅଛି ଯତ୍ନ ନେବାକୁ ତମର । ବୟସ ବି ତ ହେଲାଣି....."

"... ତ କ'ଣ ହେଇଗଲା ସେଇଠୁ । 'କିଏ ତମର ଅଛି'-ର ମାନେ କ'ଣ ? ସୁମତୀର ଏଇ ଆପଣେଇତିପଣ ତାଙ୍କୁ ଭଲ ଲାଗିନଥିଲା । ସମସ୍ତେ ମୋର ଅଛନ୍ତି । ବାହାରେ ଅଛନ୍ତି ବୋଲି କ'ଣ ପର ହୋଇଯିବେ ପିଲାଏ ... ବଡ଼ ବଡ଼ କଥା କହୁଛି ସୁମତୀଟା ।

ହେଲେ ସେ କିଛି କହିପାରନ୍ତିନି ପାଟି ଖୋଲି । କୋଉଠି ଯେମିତି ତାଙ୍କର ଆଞ୍ଜୁଡ଼ି ହେଇ ପୋଡ଼ାଜଳା କରେ । କ'ଣ କହିଥାନ୍ତେ ସୁମତୀକୁ, ସେ ତ ଅନ୍ଧ ନୁହେଁ । ଦେଖୁଛି 'ନୀଡ଼' ଖାଲି ପଡ଼ିଛି । ବାପା ନିଃଶ୍ୱାସ ନେଇଥିଲେ । ସେ ଗୁମ୍ ହେଇ ବସିବା ଦେଖି ସୁମତୀ କଥାର ଖିଅ ବଦଳାଇ କହିଥିଲା, 'ମନକଷ୍ଟ କଲକି ମା' । ମୁଁ ସେମିତି କିଛି ଭାବି କହିନି ଯେ...'

"କେମିତି କ'ଣ କହିବାକୁ ଚାହୁଁଥିଲୁ, ଖୋଲି କହୁନୁ ? ମନ ଭିତରେ ଗୁଗୁରୁଗୁ ପଣ ଥଣ୍ଡା ପଡ଼ି ଆସିଥିଲା ମନକୁ ମନ । ସୁମତୀଟା ଏମିତିରେ ମନ୍ଦ ନୁହେଁ । ମନଟା ଖୁବ୍ ନରମ । ପୁଣି ପଚାରିଥିଲେ କହ କ'ଣ କହୁଛୁ ।"

ଏଇ ରୋକ୍ଷେଇ କଥା । କେତେ ଆଉ ହନ୍ତସନ୍ତ ହେଉଥିବ । ମୁଁ ଆସି ଦି'ଟା ଫୁଟେଇ ଦିଅନ୍ତି ଆଉ କିଛିଟା ଟଙ୍କା ବଢ଼େଇଦେଲେ...

ସେ ବୁଝି ପାରିଥିଲେ, ସୁମତୀ କ'ଣ କହିବାକୁ ଚାହୁଁଛି । ହେଲେ ଏ ଯାଏ ସେ କାହା ହାତରନ୍ଧା ଖାଇ ନାହାଁନ୍ତି, କୌଣସି ନୀତିନିୟମ କି ସଂସ୍କାରକୁ ଆଗରେ ରଖି ନୁହେଁ – କେବେ ସେ ପ୍ରକାର ସୁଯୋଗ ଆସିନି କି ପରିସ୍ଥିତି ସୃଷ୍ଟି ହୋଇନି ବୋଲି । ସଂସାରର ସବୁକାମ ନିଜେ ହିଁ ସମ୍ଭାଳି ଆସିଛନ୍ତି ।

ତାଙ୍କୁ ଚିନ୍ତିତ ହେବା ଦେଖି ସୁମତୀ କହିଥିଲା, 'ମୁଁ ଭଲ ଘରର ଝିଅ ମା', ପରିସ୍ଥିତି ବାଧ କରିଛି ବୋଲି ସିନା ତୁମମାନଙ୍କ ଘରେ ଚାରିପାଇଟି କରି ଚଳୁଛି । ନହେଲେ ... ।' ଘର ଭିତରେ ଓଦାକନା ବୁଲେଇ ଆଣୁଆଣୁ ସୁମତୀ କହିଥିଲା ।

ମନ ତରଳି ଯାଇଥିଲା ତାଙ୍କର ସୁମତୀର ଅନୁନୟରେ । ସତକଥା, ବିଚାରୀ ଝିଅଟାକୁ ମଣିଷ କରିବ ବୋଲି ଅଣ୍ଟା ଭିଡ଼ି ଦାଣ୍ଡକୁ ଗୋଡ଼ କାଢ଼ିଛି । ସ୍ୱାମୀ ପାଷାଣ୍ଡଟାଏ । ଆଉଜଣେ ସ୍ତ୍ରୀକୁ ନେଇ ଅଲଗା ରହୁଛି । ସଂପର୍କ ରଖିନି । ସୁମତୀ ବି ହାର୍ ମାନିନି । ବିଗତ ବର୍ଷ ଝିଅକୁ ବାହା ଦେଇଛି । ଝିଅଟି ଖୁବ୍ ଶାନ୍ତଶିଷ୍ଟ, ଶାଶୂଘରକୁ ଯାଇ ମଧ ମା'ର ଖବରଅନ୍ତର ବୁଝୁଛି । ବରଂ ସେ ହିଁ ଏକୁଟିଆ । ତାଙ୍କ 'ନୀଡ଼' ଖାଲି ।

ସୁମତୀ ମନକଥା ଜାଣିଲା ଭଳି କହିଥିଲା । ସେ ନିଜେ ବି ନିଜପାଇଁ ଟିକିଏ ସୁଖ ଖୋଜିଥିଲେ । ଚାହୁଁଛି ଯଦି ଆସୁ । କିଛି ନହେଲେ ଗହଳି ଲାଗିବ ତ ଟିକିଏ ମଣିଷଟାଏ ଚଳପ୍ରଚଳ ହେଲେ । ଭଲଲାଗିବ ତାଙ୍କୁ । ତେଣୁ ସେ ମନା କରିନଥିଲେ । ସେଇଦିନରୁ ସେ ଦି'ଓଳା ଆସି କାମ କରି ଯାଉଛି । ସେଇ ଅବସରରେ କିଛି ଅଧିକାର ବି ଛଡ଼େଇ ନେଇଛି ଆତ୍ମୀୟ ଭଳି । ସମୟ ଅସମୟରେ ହାତଗୋଡ଼ ଆଉଁଶି ଦେଉଛି । ମନ୍ଦିର ନେଇ ଯାଉଛି ସାଂଗରେ ଥଣ୍ଡାପାଣି ନ ଗାଧୋଇବାକୁ ତାଗିଦ୍ କରୁଛି । ସେ ବି ତା'ର ଏଇ ଆପଣାପଣକୁ ସ୍ୱୀକାର କରିଛନ୍ତି । ଭାବିଛନ୍ତି-ରକ୍ତ ସଂପର୍କଟା କେବଳ ବଡ଼କଥା ନୁହେଁ । ରକ୍ତ ସଂପର୍କ ବାହାରେ ବି ଭିନ୍ନ ଗୋଟାଏ ସଂପର୍କ ଅଛି- 'ଭାବଗତ ସଂପର୍କ' । ତାକୁ ନେଇ ତ ଏଇ ପୃଥିବୀ ଏତେ ଐଶ୍ୱର୍ଯ୍ୟମୟୀ । ମଣିଷକୁ ମଣିଷ ବାନ୍ଧି ରଖିବାରେ ଏଇ ଭାବ ହିଁ କାମ କରୁଛି । କାରଣ ଏଠି ଦେ'ନେ'ର ସ୍ୱାର୍ଥ ନାହିଁ ।

ଠିକ୍ ସେମିତି ଆଉ ଏକ ସଂପର୍କ ମାନବେତରଙ୍କ ସହିତ, ପଶୁ ହେଉ କି ପକ୍ଷୀ ଏହି ସଂପର୍କ ତ ଆହୁରି ଶୁଦ୍ଧ, ନିର୍ମଳ, ଆନନ୍ଦମୟ କେବଳ । ମନେ ମନେ ହସିଦେଲେ ଅସୀମା । ଭିତରେ ପକ୍ଷୀଟି ତାଙ୍କ କୋଳକୁ ନିରାପଦ ଆଶ୍ରୟ ଭାବି ଆଖି ବୁଜି ଦେଇଥିଲା ।

ଶୋଇପଡ଼ିଲାଣି କି କ'ଣ । ଉଷ୍ମ ଅନୁଭବ କରୁଥିଲେ ଅସୀମା । ମନେ ପଡ଼ିଗଲା ରେବା । ଅର୍ଣ୍ଣବର ଗେଲବସରୀ ଝିଅ । ଭାବନା ସେ ଆଡ଼କୁ ମୁହାଁଇଲା, ଆହା ଅବିନାଶ ତାଙ୍କୁ ଦେଖିନାହାନ୍ତି । ଆଖି ଜକେଇ ଆସିଲା, ଏଇ ନିର୍ମଳ ଆନନ୍ଦରେ ଭାଗ ନେଇ ପାରିଲେନି ବୋଲି । ବାପାଙ୍କ ଅନ୍ତେଷ୍ଟିକୁ ଆସିଥିଲା ଅର୍ଣ୍ଣବ । ରେବା ଛ'ମାସର । ଗୁଲୁଗୁଲିଆଟିଏ ହୋଇଥାଏ । ଏଠିକାର ଜଳବାୟୁ ସହିତ ଅଭ୍ୟସ୍ତ ନ ଥିଲା । ଅସୁସ୍ଥ ହେଇ ପଡ଼ିଲା ବିଚାରୀ । ବିଛଣାରେ ମୋଟେ ଶୋଇଲାନି । ସେ ହିଁ ତାଙ୍କୁ ଘଣ୍ଟାଘଣ୍ଟା କୋଳରେ ଧରି ଏମିତି ଜାକି ରଖୁଥିଲେ । ଆରାମରେ ଶୋଇ ପଡୁଥିଲା ରେବା ।

ସେତିକିବେଳେ ତ ଯାହା, ମାସେ ଖଣ୍ଡେ ରହିଥିଲା ଅର୍ଣ୍ଣବ ତାଙ୍କ ପାଖରେ । ଅନୁପମାର ପୁଅ କିଂଶୁକଟା ଭାରି ଚଗଲା । ତା'ର ହଜାରେ ପ୍ରଶ୍ନ । ଉତ୍ତର ଦେଉଦେଉ ଥକି ପଡୁଥିଲେ । ସେ ପିଲା ଦି'ଟଙ୍କା କଥା ଭାବିବାକୁ ଯାଇ ଭାବୁକ ପାଲଟିଗଲେ ଅସୀମା । ମନ ଛଟପଟ ହେଲା, ପିଲାଙ୍କ ଖୁସିରେ ଖୁସି ହେବାର ଭାଗ୍ୟ ବି ତାଙ୍କର ନାହିଁ । ତିନି ବର୍ଷରେ ଥରେ ଦେଶକୁ ଆସିଲା ବେଳକୁ ପିଲାଏ ବଡ଼ ହୋଇ ସାରିଲେଣି ।

ଏବେ ତ ପାଠପଢ଼ାବେଳ । ଏଣିକି ଅର୍ଣ୍ଣବ ଆଉ ଆସିପାରୁନି । ଏବେ ତ ଚାରିବର୍ଷ ହୋଇଯିବ ଆସିନି । ଅନୁପମା ଆସିଥିଲା ଦେଢ଼ବର୍ଷ ତଳେ ଦିନ ଦି'ଟା ପାଇଁ । ସ୍ୱପ୍ନ ଭଳି ଲାଗିଲା । ଭଲକରି ତା' ମୁହଁକୁ ବି ସେ ଦେଖିନାହାନ୍ତି । ଗଲାବେଳକୁ ଝିଅଟା ତାଙ୍କର ଉଦାସ ହୋଇଗଲା । କହିଲା, "ମୁଁ ତ ଆଉ ଆସି ପାରୁନି ଭାରତ । ତୁ ହିଁ ଚାଲ ମୋ' ପାଖକୁ । କିଛିଦିନ ମୋ'ପାଖରେ, ଆଉ କିଛିଦିନ ଭାଇ ପାଖରେ ରହି ସମୟ କଟେଇଦେବୁ । ଭଲ ଲାଗିବ ତୋତେ, ଅବଶ୍ୟ ଟିକିଏ ସମୟ ଲାଗିବ ସେଠା ପରିବେଶକୁ ଆପେଇବାକୁ, ତେବେ ସେ କିଛି ନୁହେଁ ।

ଚକିତ ଲାଗିଥିଲା ତାଙ୍କୁ ଅନୁପମାର ପ୍ରସ୍ତାବ । ଝିଅ ତାଙ୍କର ପୋଖତ ସଂସାରୀ ହେଲାଣି 'ନୀଡ଼' ନାଁଟା ଉଠେଇ ଦେବାକୁ ଯିଏ ମନା କରିଥିଲା, ସେଇ ଝିଅ ଏବେ ତାଙ୍କୁ ପରାମର୍ଶ ଦେଉଛି ଘରଟା ବିକ୍ରି କରିଦେବାକୁ । କ'ଣ ଅଛି ଆଉ ଏ ଘରଟାରେ ତୋ' ପାଇଁ, ଏକୁଟିଆ କାହିଁକି ପଡ଼ିଥିବୁ ।

ନିଜ ଭିତରେ ଚମକି ପଡ଼ିଥିଲେ ସେ । କେବଳ କହିଥିଲେ, ତମମାନଙ୍କ ପାଇଁ ସିନା କିଛି ନାହିଁ, ହେଲେ ମୋ' ପାଇଁ ତ ଏଇଟା ସ୍ମୃତିର ତୀର୍ଥ । 'ନୀଡ଼' ଛାଡ଼ିଦେଲେ ମୁଁ ରିକ୍ତ ହୋଇଯିବି ଅନୁ ... ବଂଚିପାରିବିନି । ତୁ ବ୍ୟସ୍ତ ହୁଅନା ମା'... ମୁଁ ବେଶ୍ ଚଳିପାରୁଛି ଏଠି । ଅଭିମାନରେ ରୁନ୍ଧି ହୋଇଯାଇଥିଲା କଣ୍ଠ । ସେ ଜାଣୁଛନ୍ତି, ପିଲାଙ୍କ ପାଖରେ ଆଜିକାଲି ସମୟର ଅଭାବ । ସେ ଆଉ ମନେ ପଡୁନାହାଁନ୍ତି, ମାସେ ଦି'ମାସରେ ଫୋନ୍ କରି ଅନୁପମାଟା ତାଙ୍କ ଖବର ବୁଝି ନେଉଛି । ଆଉ ଅର୍ଣ୍ଣବ ।

ବେଳେବେଳେ ମନ ଛଟପଟ ହୁଏ, ପିଲାଙ୍କଠୁ କିଛି ଖବର ନ ଆସିଲେ । ପାପ ଛୁଏଁ

ମନକୁ । ଏଇ ଦି'ବର୍ଷ ତଳେ, ସୁମତୀ ଆସି ନ ଥାଏ ସକାଳର ଘରକାମ କରିବାକୁ । ମଗୁଶୁର ମାସ । ଲକ୍ଷ୍ମୀପୂଜା ଗୁରୁବାର । ବଡ଼ି ସକାଳୁ ଉଠି, ସେ ଦାନ୍ତରେ ବ୍ରସ୍ ଦେଇ ବାଡ଼ିପଟ ପୂଜାଘର ଦୁଆର ଖୋଲି ହଠାତ୍ ଚମକି ପଡ଼ିଥିଲେ । ରାତିରେ ଲେଖିଥିବା ଅଷ୍ଟଦଳପଦ୍ମର ଚିତା ଉପରେ ଧଳା ପେଚାଟିଏ ବସି ନିଧଡ଼କ ଗୋଲ ଗୋଲ ଆଖିରେ ଚାହିଁଛି ତାଙ୍କ ଆଡ଼କୁ । ତଟସ୍ଥ ହୋଇଯାଇଥିଲେ । ଇଏ ପୁଣି କେମିତି, କେତେବେଳେ ଆସିଲା ? ତାଙ୍କର ବି ନଜର ନାହିଁ । ଭାବନାରେ ପଡ଼ିଯାଇଥିଲେ ସେ । ଘଟଣାକୁ କିଭଳି ଗ୍ରହଣ କରିବା ଉଚିତ ହେବ ଭାବି ପାରିନଥିଲେ । ସୁମତୀ ବି ତାଟକା ହୋଇଯାଇଥିଲା ସକାଳୁ ଆସି । କି ବିଚିତ୍ର ସଂଯୋଗ ମା', ଆଜି ଲକ୍ଷ୍ମୀପୂଜା ଘରେ ଘରେ । ଠାକୁରାଣୀଙ୍କର ଅପାର କରୁଣା, ଏଇ ଭାଗ୍ୟ କ'ଣ ସମସ୍ତଙ୍କୁ ମିଳେ ! ଦିଅଁଙ୍କ ପିଣ୍ଡି ପାଖରେ ମୁଣ୍ଡିଆ ମାରି ସୁମତୀ ଭାବରେ ଗଦଗଦେଇ ଉଠିଥିଲା ।

ସେ କିନ୍ତୁ ଆଉ ପ୍ରକାରେ ଭାବୁଥିଲେ । ଭୟ ... ଅଜଣା ଭୟ ! କି ପ୍ରକାର ଅଘଟଣ ଘଟିବାକୁ ବାକି ଅଛି ଆଉ । ପେଚା ପରା ମୃତ୍ୟୁ ଦୂତ !! ହେ ଠାକୁରେ ! ଛାତି ଥରି ଉଠିଥିଲା, ଦି'ମାସ ହେବ ଅର୍ଣ୍ଣବଟା ଫୋନ୍ କରିନି । ସିଏବି ଅଭିମାନରେ ଖବର ବୁଝିବାକୁ ଫୋନ୍ କରିନାହାନ୍ତି ନିଜ ଆଡୁ । ଚେତନ ମନର କାନ୍‌ଭାସ୍ ଉପରେ ଆବୁରୁଜାବୁରୁ କେତେ ପ୍ରକାରର ଛବି ଭାସି ଉଠିଲା– ସେ ଅସ୍ଥିର ହେଇ ଉଠିଥିଲେ । ହେ ପ୍ରଭୁ ! ପିଲାଙ୍କୁ ଘଣ୍ଟ ଘୋଡ଼େଇ ରଖ । ଯିଏ ଯେଉଁଠି ଥା'ନ୍ତୁ ପଛେକେ, ପ୍ରଣାମ ଜଣେଇଥିଲେ ଲକ୍ଷ୍ମୀଙ୍କୁ । କେତେ ନେହୁରା ହୋଇଥିଲେ ।

ଶେଷରେ ସୁମତୀ ପକ୍ଷୀଟିକୁ ଡାବଲ ଭିତରେ ପୂରେଇ ରଖିଥିଲା ତାଙ୍କ କହିବା ପ୍ରକାରେ । ଦିନର ଆଲୁଅରେ ବିଚରାକୁ କୁଆମାନେ ଝୁମ୍ପି ପକେଇବେ । ପୁଣି ସୂର୍ଯ୍ୟ ଉଠିଲେଣି । ଉଡ଼ିପାରିବନି ଆଉ । ଏବଂ ସେଇଦିନ ସଂଜଦୀପ ବସେଇସାରି ଅନ୍ଧାର ଭିତରେ ପକ୍ଷୀଟିକୁ ଉଡ଼େଇ ଦେଇଥିଲେ 'ଯା' ଖୁସିରେ, ସମସ୍ତଙ୍କୁ କଲ୍ୟାଣ କର ।

ସେଇ ରାତିରେ ଫୋନ୍ କରିଥିଲେ ଅର୍ଣ୍ଣବକୁ, 'ବୋଉ ଆଉ ମନେପଡୁନି ନା ତୋର ...' । ଅର୍ଣ୍ଣବର ସେଇ ପଦୁଟିଏ କଥା– 'କାମର ଚାପ ବୋଉ, କ୍ଷମା କରିଦେ ଏଥରକ ମୋତେ...' ବାସ୍ ସବୁ ଅଭିମାନ ଭୁଲିଯାଇଥିଲେ ସେ । ସମସ୍ତେ ଭଲରେ ଅଛ ସେଇ ମୋ ପାଇଁ ଯଥେଷ୍ଟ – ଏଇପଦକ ଶୁଣିବାପାଇଁ କେତେ ବ୍ୟସ୍ତ ଲାଗୁଥିଲା । ସକାଳର ଘଟିଯାଇଥିବା ସେଇ ଅଭାବିତ ଘଟଣାଟି ସଂପର୍କରେ କହୁ କହୁ କହିପକେଇ ଥିଲେ । ଯଦିଓ ଅର୍ଣ୍ଣବ ଘଟଣାଟିକୁ ହସି ଉଡ଼େଇ ଦେଇଥିଲା, ତଥାପି ସେ ମା' ମନର ମନସ୍ତତ୍ତ୍ୱକୁ ବୁଝେଇବାକୁ ଯାଇ କହିଥିଲେ– 'ମୁଁ ଜାଣେ ତମେମାନେ ଯାକୁ ଅନ୍ଧବିଶ୍ୱାସ ବୋଲି କହିବ । ମୁଁ ବି କହୁଛି । ତା' ସତ୍ତ୍ୱେ କାହିଁକି ଯେ ମନଭିତରେ ଅଯଥା ଭୟ ସୃଷ୍ଟି ହୁଏ ଜାଣେନା । ତମମାନଙ୍କ ଆସିବା ବାଟକୁ ଚାହିଁ । ଦିନେ ନୁହେଁ କି ମାସେ ନୁହେଁ, ବର୍ଷ ବର୍ଷ ଧରି 'ନୀଡ଼' ଦୁଆରେ ଏକୁଟିଆ ପକ୍ଷୀ ଭଳି ଚାହିଁ ବସୁ ବସୁ, ଏମିତି କେତେ ଅତିଥି ପଶିଆସନ୍ତିରେ ଅରନେକ; ସେମାନଙ୍କ ସ୍ଥିତି ଜାହିର କରି ମୋ

ସହିତ ସୁଖଦୁଃଖ, ଖୁସି ଆନନ୍ଦ, ବାଣ୍ଟନ୍ତି । କିଏ କିଏ ଭୟ ବିପଦର ଅଶୁଭ ସୂଚନା ବି ଦିଅନ୍ତି – ମୋ ଭିତରର କାକୁସ୍ଥ ମା'ଟି ଏମିତି ବିକଳ ବିବ୍ରତ ହୋଇଉଠେ ସ୍ୱାଭାବିକ ଢଙ୍ଗରେ ।

ଅନେକ ଦିନ ହୋଇଗଲାଣି ଘଟଣାଟି ।

କାଉଟିଏ ବସି ବାଡ଼ିପଟ ନିମଗଛରେ କାଉଁଳୁଥିଲା । କିଏ ଆସିବ ?

କିଏ ଆଉ ଆସିବ ଯେ; ଯିଏ ଆସିବା କଥା ତ ସେ ଆସିଯାଇଛି । ତା' ଛଡ଼ା ସେ ଆଉ ଆଜିକାଲି କାହାକୁ ଅପେକ୍ଷା କରୁନାହାନ୍ତି ।

ପକ୍ଷୀର ନିଦ ଭାଙ୍ଗିଲା । ଉହିଁଲା, ଆଖିଖୋଲି, ସେ ତାକୁ ନେଇ ଯତ୍ନର ସହିତ ଟାବଲ ଭିତରେ ଛାଡ଼ି ପରଦା ଘୋଡ଼େଇ ଦେଲେ । ଭାବିଲେ, ପକ୍ଷୀଟି ଭୋକିଲା ଅଛି । ହେଲେ ତା'ର ଖାଦ୍ୟ ତ ନାହିଁ ତାଙ୍କ ପାଖରେ । କହିଲେ, ମୁଁ ନାଉରରେ ପକ୍ଷୀ, ଖାଦ୍ୟ ଦେଇପାରୁନି ତୋତେ । ହେଲେ ଝରକା ଖୋଲା ରଖିଛି, ପାରିବୁ ଯଦି ନିଜ ଖାଦ୍ୟ ଖୋଜିଲୋଡ଼ି ସାଉଁଟି ନେ' ଘର ଭିତରୁ । ମୁଁ ଏବେ ଯାଉଛି ।

ଅନେକ କାମ ବାକି ପଡ଼ିଥିଲା । ଫେରି ଆସୁଆସୁ, ମନେ ପଡ଼ିଗଲା ଧୂର୍ତ୍ତ ବିରାଡ଼ି ଆସି କାଳେ ଆକ୍ରମଣ କରିବ ପକ୍ଷୀଟିକୁ ଅସତର୍କ ଅବସ୍ଥାରେ । ପୁଣି ଯାଇ ଦରଜା ବନ୍ଦ କଲେ । ମନେମନେ କହିଲେ ଝରକା ତ ଖୋଲା, ଇଚ୍ଛା କଲେ ଉଡ଼ିଯାଇ ପାରିବ । ତାର ସ୍ୱାଧୀନତା ଅଛି ।

ସେ ତ କେବେ କାହା ସ୍ୱାଧୀନତାରେ ହସ୍ତକ୍ଷେପ କରିନାହାନ୍ତି । କରିବାକୁ ବି ଉହାଁନ୍ତିନି । ସେ ମଣିଷ ହେଉ କି ପଶୁପକ୍ଷୀ । ଫି ବର୍ଷ ବାଡ଼ିପଟର ଖୋଲା ରାସ୍ତା ଦେଇ ଅଗଣା ଭିତରକୁ କେତେ ପ୍ରାଣୀ ପଶି ଆସିଛନ୍ତି । ସମସ୍ତେ ଖାଦ୍ୟଲୋଭରେ ନୁହଁ, ବରଂ ଦେହଦୁଃଖ କି ଛୁଆ ଜନ୍ମ କରିବାର ଥିଲେ । ଦି ଉରିଦିନ ଚୁପ୍‌ଉପ୍ ଶୋଇ, ସୁସ୍ଥ ଅନୁଭବ କଲେ ଅଥବା ଛୁଆ ସମର୍ଥ ହେଲେ ଉଲିଯାନ୍ତି ଆପଣା ଖାଉନ୍ଦମାନଙ୍କ ପାଖକୁ ହୁଏତ, ତେବେ ସେଇ କେଇଟା ଦିନ ତାଙ୍କୁ ଅଚ୍ଛ ବହୁତେ ଅତିଥି ଚର୍ଚ୍ଚା କରିବାକୁ ପଡ଼େ ।

ବେଳେବେଳେ ତାଙ୍କୁ ଆଶ୍ଚର୍ଯ୍ୟ ବି ଲାଗେ ଖାଉନ୍ଦମାନଙ୍କ କଥା ଭାବିଲେ । କେତେ ସ୍ୱାର୍ଥପର, କ୍ଷୀର ଖାଇବେ ଅଥଚ ପ୍ରାଣୀଟିର ସେବାଯତ୍ନରେ ସ୍ପୃହା ନାହିଁ । ଥରକର ଘଟଣା ତ ତାଙ୍କ ମନ ଭିତରେ ଗଭୀର ରେଖାପାତ କରିଦେଇଥିଲା । ଏ ଯାଏ ବି ସେ ଭୁଲିପାରିନାହାନ୍ତି ।

ସେଥର ଅର୍ଣ୍ଣବ ଆସିଥାଏ ଆମେରିକାରୁ । ରେବା ଦି'ବର୍ଷର ହୋଇଥିଲା ।

ବାହାରର ବୁଲା କୁକୁରଟିଏ ଖୋଲା ବାଡ଼ିପଟ ଅଗଣାର ପାହାଚ ତଳେ ନିଜ ଆସ୍ଥାନ ଜମେଇଥିଲା । ରେବା ମନ ଖୁସି । ଛାତ୍ରି ଭିତରୁ ସେ ତା' ସହିତ ବଂଧୁତା ବାଂଧି କେତେ କ'ଣ ଗପୁଥାଏ । ତା' ବାପାମା'ଙ୍କ ପସନ୍ଦ ନଥିଲା । ଜାତିଆ ଖାନଦାନୀ କୁକୁର ନୁହେଁ । ତଥାପି ଯାଉନଥିଲା ତଡ଼ିଲେ ବି । ଦିନେ ସକାଳୁ ଦେଖିଲା ବେଳକୁ ଗୁଲୁଗୁଲିଆ କଳାଧଳା ମିଶା ତିନୋଟି ଛୁଆ କୁଁ କୁଁ ହେଉଛନ୍ତି । ରେବା ଆହୁରି ଖୁସି ହେଲା । ଅର୍ଣ୍ଣବ କିନ୍ତୁ ବ୍ୟସ୍ତ

ହେଲା, ବିରକ୍ତ ହେଲା, ଅପରିଷ୍କାର ଅପରିଚ୍ଛନ୍ନତା ପାଇଁ । ରୋଗ ସଂକ୍ରମଣର ଭୟ ମାଡ଼ି ବସିଥିଲା ତା' ମନରେ ।

ସ୍ୱାଭାବିକ ମଧ୍ୟ ସେମାନଙ୍କ ଦେଶର ପରିଚ୍ଛନ୍ନତାକୁ ନେଇ କୌଣସି ପ୍ରଶ୍ନ ନାହିଁ । ମଣିଷ ପାଇଁ ଯେତିକି ସୁବିଧା, ପଶୁ ପାଇଁ ବି ସେତିକି ରଖାଯାଇଛି ସେଠି ସୁଖସୁବିଧା । ସେମାନଙ୍କର ସିଭିକ୍ ସେନ୍ସ ଖୁବ୍ ବେଶି ଯାହା ଆମ ଦେଶରେ ମୋଟେ ନାହିଁ । ଏଠି ତ ଆମେ ପଶୁ ମଣିଷ ଗୋଳିଆମିଶା, ଏକାକାର । ଧୂଳି ମାଟି ଗୋବର ଭିତରେ ଗୋଳେଇ ହୋଇ ଜୀବନ ଜିଉଁଛି ମଣିଷ । ସେଇଥିପାଇଁ ଖାସ୍ ସବୁ ସବୁ ସୁଖ, ସୁବିଧାର ସୁଯୋଗ ପାଉଛନ୍ତି ବୋଲି, ଥରେ ସେଠିକି ଗଲେ ଆଉ ଫେରିବାକୁ ମନ କରୁନାହାନ୍ତି କେହି । ମା' ମାଟି ପର ମନେହେଉଛି । ନହେଲେ କ'ଣ ନାହିଁ ଏ ଦେଶରେ । କେବଳ ଲୋକ ହାଉଯାଉ ଆଉ ମଇଳା । ସପ୍ତାହେ ଖଣ୍ଡେ ଗଲା ।

ଦିନେ ଅର୍ଣ୍ଣବ ମନକୁ କ'ଣ ଜୁଟିଲା କେଜାଣି, ବାଲଟିଏ ପାଣି ନେଇ କୁକୁର ଶୋଇବା ଜାଗାରେ ସ୍ପ୍ରେ କରିବାକୁ ଲାଗିଲା । ଭାବିଲା ବୋଧେ କୁକୁରଟା ଛୁଆଙ୍କୁ ନେଇ ଚାଲିଯିବ ପାଣି ପଡ଼ିଲେ । ଆଉ ତା' ଝିଅ ସଫା ଅଗଣାରେ ମନଖୁସିରେ ଖେଳିବ ।

କିନ୍ତୁ ଆଶ୍ଚର୍ଯ୍ୟ ! ମା' କୁକୁରଟି ହଠାତ୍ ପ୍ରତିବାଦ କରିବା ଆରମ୍ଭ କଲା ତା' ଭାଷାରେ । ତା'ର ପ୍ରତିକ୍ରିୟା ଭିତରେ ସ୍ପଷ୍ଟ ବାରିହୋଇ ପଡୁଥିଲା ସେଇକଥା । ଭୁକୁଥିଲା, ଲେପ୍‌ଟେଇ ପଡୁଥିଲା ଜାଫ୍ରି ପାଖରେ ଆଖିରୁ ଲୁହ ଝରି ପଡୁଥିଲା ପଶୁଟାର । ଯେମିତି ଅନୁନୟ କରୁଥିଲା – ଏଭଳି ଅତ୍ୟାଚାର କର ନାହିଁ ମୋ' ଛୁଆଙ୍କ ଉପରେ ଆଶ୍ରା ଖୋଜି ଆସିଛି । ପାହାଚ ଚଢ଼ି ଆସୁଥାଏ ଓହ୍ଲେଇ ଯାଉଥାଏ । ଶେଷରେ ଉପର ମହଲାକୁ ଉଠିଆସିଲା ଘରମାଲିକାଣୀଙ୍କ ପାଖରେ ଅଭିଯୋଗ କରିବାକୁ, ଅଥୟ ହୋଇଯାଉଥାଏ । ଭୁକିଭୁକି, ଯେମିତି କହୁଥାଏ, ତମେ ସବୁ ନିର୍ଦ୍ଦୟ, ଅବିବେକୀ । ମୁଁ ତ ପଶୁ ହେଲେ ତମେମାନେ ମୋ'ଠୁଁ ବି ଆହୁରି ପଶୁ । ମୁଁ ସଂଭ୍ରାନ୍ତ ଜାତିର ନୁହେଁ ସତ, ତଥାପି ତ ଦୂରରେ ଥାଇ ତମ ପିଲାଙ୍କ ଖୁସିରେ ଖୁସି ହେଉଛ । ତମେମାନେ କିନ୍ତୁ ବୁଦ୍ଧିମାନ ମଣିଷ ହୋଇ ମୋ ଆଖି ଖୋଲି ନ ଥିବା ପିଲାଙ୍କୁ ଜାଣିଜାଣି ହରକତ କରୁଛ । ଧିକ୍ ତମ ମଣିଷପଣ... ବିଚାରୀ କାନ୍ଦୁଥାଏ, ଲୁହ ଝରି ପଡୁଥାଏ, ନେହୁରା ହେଉଥାଏ ସତେକି ଦୀର୍ଘ ପନ୍ଦର ମିନିଟ୍‌ରୁ ଅଧିକା ସମୟ ହେବ । ତଟସ୍ଥ ହେଇଯାଇଥିଲେ ସମସ୍ତେ । ବିଶ୍ୱାସ କରିପାରୁନଥିଲେ ପଶୁଟା ଭିତରେ ଏତେ ତୀବ୍ର ବୋଧଶକ୍ତି କାମ କରିପାରେ । କେବଳ ସେତିକି ନୁହେଁ, ଉପରମହଲାକୁ ଲାଗି ପଡ଼ିଶା ଘର, ସେ' ଘରକୁ ଯାଇଁ ମଧ୍ୟ ସେ ସାହାଯ୍ୟ ମାଗୁଥିଲା ତା ଭୁକିଲା ସ୍ୱରରେ । ନ ଦେଖିଲେ ଜଣେ ବିଶ୍ୱାସ କରିପାରିବନି । ଶେଷକୁ ସେ ନଇଁଯାଇଥିଲେ । ନିଜକୁ ଖୁବ୍ ଛୋଟ ମନେ ହୋଇଥିଲା ସେଦିନ ପଶୁଟା ପାଖରେ । ତଳକୁ ଓହ୍ଲେଇ ଯାଇଥିଲେ, ଅର୍ଣ୍ଣବକୁ ଆଦେଶ ଦେବା ପାଇଁ ସ୍ପ୍ରେ ବନ୍ଦ କର ବାପା, ଛୁଆଗୁଡ଼ାକ ମରିଯିବେ ଥଣ୍ଡାରେ । କୁକୁରଟି ବି ଓହ୍ଲେଇଯାଇଥିଲା ତାଙ୍କ ସହିତ ତଳକୁ କୃତକାର୍ଯ୍ୟ ହୋଇ, ଗୃହକର୍ତ୍ତ୍ରୀଙ୍କୁ ସେ ମନେଇ ପାରିଛି ଧର୍ମଘଟ କରି ।

ଅର୍ଣ୍ଣବକୁ ବୁଝେଇଥିଲେ ଅସୀମା, ପ୍ରାଣୀଜଗତରେ ସବୁ ମା' ଏକାଭଳି - ପିଲାଙ୍କର ରକ୍ଷା କବଚ କହିବାକୁ ଗଲେ । ପଶୁ ଆଉ ମଣିଷ ଭିତରେ କିଛି ତଫାତ୍ ନାହିଁ । ଅର୍ଣ୍ଣବ ପାଇଁ ବି ବିସ୍ମୟର ସୀମା ନ ଥିଲା, ଆ'ମ ସରି ବୋଉ । ମୁଁ କଳ୍ପନା କରିପାରି ନ ଥିଲି ପଶୁଟା ଭିତରେ ଏତେ ମମତା ।

କୁକୁରଟି କ୍ଲାନ୍ତ ହୋଇ ପଡ଼ିଥିଲା ଭୁକି ଭୁକି ପିଲାଙ୍କ ଉପରକୁ ବିପଦ ଟଳିବା ଦେଖି ନିଶ୍ଚିନ୍ତ ହୋଇ, କୃତଜ୍ଞତାରେ ନଇଁପଡ଼ିଲା ସତେ କି । ଖୁସି ପ୍ରକାଶ କରି ଲାଙ୍ଗୁଡ଼ ହଲେଇଥିଲା । ଯିମିତି କହିଲା, 'ମୁଁ ତ ତୁମକୁ ବିଶ୍ୱାସ କରୁଛି, ମୋ ପିଲାଏ ଏଥର ନିରାପଦରେ ରହିବେ । ମାତୃତ୍ୱର ଜୟ ହେଉ ।'

ଛୁଆଙ୍କ ଆଖି ଖୋଲିଲା ପରେ ସେ ଚାଲିଯାଇଥିଲା ଛୁଆଙ୍କୁ ନେଇ । ତଥାପି ସେ ମଝିରେ ମଝିରେ ବୁଲିଆସେ ଛୁଆଙ୍କୁ ନେଇ କୃତଜ୍ଞତା ଜଣେଇବା ପାଇଁ । ବାଡ଼ିପଟ ପାହାଚ ତଳେ ଥାଇ ଭୁକେ-ଜଣେଇଦିଏ ତା'ର ଉପସ୍ଥିତି । କୁହେ ଯିମିତି 'ତମ ଦୟାରୁ ମୋ ପିଲାଏ ଭଲ ଅଛନ୍ତି ଦେଖ ।'

ଅସୀମା ବୁଝନ୍ତି ତା' ମନର ଭାଷା । ରୁଟି ଖଣ୍ଡେ କି ଭାତ ମୁଠେ ଦେଇ କୁହନ୍ତି - 'ଆସିଛୁ ଯେତେବେଳେ ଖାଇ ଦେଇ ଯା' ।

ତା'ପରେ ବି ସେ ଆସୁଥିଲା । ଏକା, ପିଲାଏ ନ ଥିଲେ । ବଡ଼ ହୋଇଗଲା ପରେ ମାଁ'ର ତ ଆଉ ଆବଶ୍ୟକତା ନ ଥାଏ । ତାଙ୍କରି ଭଳି ବୟସ ମାଡ଼ି ଆସିବ । ତେଣିକି ଆସିଲେ ଖାଲି ଶୋଇରହେ ବିଚାରୀ, ଖାଏନା, ଖାଇବାର ଲୋଭ ନ ଥାଏ... କେବଳ କୃତଜ୍ଞତାବୋଧ ।

ଏଇ ସମ୍ବେଦନଶୀଳ ଘଟଣାଟି. ଏ ପର୍ଯ୍ୟନ୍ତ ତାଙ୍କ ଚେତନାକୁ ଆବୋରି ରଖିଛି । ଲିଭିନି ମନରୁ ।

ଏଥର ଅସୀମା ତଳକୁ ଓହ୍ଲେଇ ଆସି ଠାକୁର ବସେଇଲେ ଧୂପ, ଦୀପ, ନୈବେଦ୍ୟ ଦେଇ ପୂଜା ସାରି ରୋଷେଇଘରକୁ ଆସିଲେ ନିଜ ପାଇଁ ଖାଇବା ବ୍ୟବସ୍ଥା କରିବାକୁ ।

ଦାଣ୍ଡ ଦୁଆରେ କିଏ ଠକ୍‌ଠକ୍ କଲା ।

ଦୁଆର ଖୋଲି ଦେଖନ୍ତି ତ ସୁମତୀ ଠିଆ ହୋଇଛି, ହସିଲା ତରାଟ ଫୁଲ ଭଳି ।

କିରେ ତୋର ପରା ଆଜି ଆବିବାର ନ ଥିଲା, ଝିଅ ଆସିଲାନି କି ?

ଘର ଭିତରକୁ ପାଦ ବଢ଼େଇ ସୁମତୀ କହିଲା, 'ଆସିଛି ମା', ସେଇ ତ କହିଲା ବୋଲି ଆସିଲି । ଫେଣାଏ ପାଚିଲା କଦଳୀ ଥୋଇଦେଇ କହିଲା ସୁମତୀ, ଝିଅ ଆଣିଥିଲା ତା' ବାଡ଼ିର କଦଳୀ; କହିଲା 'ଯା' ସାନ୍ତମା'ଙ୍କୁ ଦେଇ ଆସିବୁ, ଭୋଗ ଲଗେଇବେ ଦିଅଁଙ୍କୁ, କାଲି ଏକାଦଶୀ ଅଛି । ଆଉ ଏକାବେଳେ ରୁଟି କରିଦେଇ ଆସିବୁ ରାତି ପାଇଁ । ମୁଁ ଆସିବି ବୋଲି ତୁ ମା'ଙ୍କୁ ହଇରାଣ କଲୁ ମିଛରେ ।'

ଉଲ୍ଲସିତ ଅସୀମା, ନିଜ ଅଜାଣତରେ ତରଳି ଯାଉଥିଲେ । କେଡ଼େ ଆପଣାପର, ଏଇ ସ୍ନେହ ଶ୍ରଦ୍ଧା ପାଇଁ କ'ଣ ନିହାତି ରକ୍ତର ସଂପର୍କ ଆବଶ୍ୟକ ? କେବଳ ବଡ଼ମାପର ହୃଦୟଟି ହିଁ ଦରକାର । ଧନୀ-ଦରିଦ୍ର, ଜାତି-ଅଜାତିର ମାନେ କିଛି ନାହିଁ । ବାହାରକୁ ଦିଶୁଥିବା ଚେହେରାଟା ସବୁବେଳେ ଅସଲି ବୋଲି କହିହେବନି । ସୁମତୀ ଆଉ ସୁମତୀ ଝିଅର ସେଭଳି ମନଟିଏ ଅଛି ।

ସୁମତୀ କାମର ଫାନ୍ଦରେ କଥା କହିଚାଲିଥିଲା । ଅସୀମା ଖାଇବାକୁ ବସି, ଦି'ଚାରିପଦ ଭଲମନ୍ଦ ପଚାରିଲେ । କଥା ପ୍ରସଙ୍ଗରେ ଝିଅର ପ୍ରଶଂସା କରି କହିଲେ, 'ତୋର ବଡ଼ ଭାଗ୍ୟ ଲୋ ସୁମତୀ, ଝିଅଟା ଭଲ ଘର-ବର ପାଇଛି । ନିଜର ଏତେ ଜଂଜାଳ ଛାଡ଼ି ତୋତେ ଦେଖିବାକୁ ଆସୁଛି ।'

"କେମିତି ଆସିବନି ମା', ଏଇ ପେଟରେ ପରା ତାକୁ ନ'ମାସ ଧରିଛି, ତେରବର୍ଷର କରି ଶାଶୂଘରକୁ ଛାଡ଼ିଛି । ମା'କୁ ଭୁଲିବ କିମିତି, ଯେତେ ବଡ଼ ଶାଶୂଘର ହେଉ । ବାପ ଭାଇ ନ ଥିଲେ କ'ଣ ହେଲା, ମୁଁ ତ ଅଛି । ଶାଗ ତୋରାଣି ପିଇ ଦିନ ଦିଟା ନ ରହିଲେ ତା' ମନ ବୁଝିବ ନା ମୋ' ମନ ବୁଝିବ !

ଅସୀମାଙ୍କ ଛାତି ଭିତରଟା କିମିତି ରୁନ୍ଧି ହୋଇଗଲା ଏକ ଅକୁହା ବେଦନାରେ । ଭାବିଲେ, ପାର୍ଥିବ ଜଗତର ଐଶ୍ୱର୍ଯ୍ୟଭରା ସୁଖର ଜୀବନ ଯାହାର ନାହିଁ, ଅଥବା ଧନସଂପଦ କ୍ଷମତା ଭଳି ପ୍ରାଚୁର୍ଯ୍ୟର ହାତ ଯୋଉଠି କି ପହଞ୍ଚି ପାରେନା, ସେଠି କେବଳ ଏଇ ହୃଦୟର ଘେନାଘେନି ହିଁ ତ ସଂପର୍କକୁ ଦୃଢ଼ କରି ବାନ୍ଧି ରଖେ । ମନ ପାଇଁ ମନ କାନ୍ଦେ । ଏ ଦୃଷ୍ଟିରୁ ସୁମତୀ ବଡ଼ ଭାଗ୍ୟବତୀ । ଅନ୍ତତଃ ତାଙ୍କ ଭଳି ଶୂନ୍ୟତାର ଉଦାସ ଝାଂଜିରେ ସେ କେବେ ସିଝୁନଥିବ ଛଟପଟ ହୋଇ ।

ସୁମତୀର ଭବିଷ୍ୟତ ସ୍ଥିର । ସୁମତୀ ମଝିରେ ମଝିରେ ଝିଅ ସହିତ କଥା ହୁଏ । ସେ ନିଜେ ତା'ର ନମ୍ବର ଲଗାଇ ଦିଅନ୍ତି । ଝିଅର ବି ଗୋଟାଏ ମୋବାଇଲ୍ ଅଛି । ଜ୍ୱାଇଁ ମାଧବର ଛୋଟମୋଟର ସଉଦା ଦୋକାନ ଅଛି । ଚଉଆକିଆ ପିଲାଟି । ଭଲରେ ଚଳଉଛି ପରିବାର ।

ସୁମତୀ ବେଳେବେଳେ ପଚାରେ - 'ସାନବାବୁ ଫୋନ୍ କରିଥିଲେ ମା', ଭଲ ଅଛନ୍ତି ସମସ୍ତେ ? ସେ ଛୋଟିଆ 'ହଁ'ଟିଏ କରି, କଥା ଆଡ଼େଇବାକୁ ଚାହିଁଲେ ବି, ସୁମତୀ ସନ୍ତୁଷ୍ଟ ହୁଏନା ସେତିକି ଉତ୍ତରରେ । ଲମ୍ବା ଉତ୍ତରକୁ ଅପେକ୍ଷା ରଖେ ।

ବାଧ୍ୟ ହୋଇ ସେ କୋହ ଲୁଚାନ୍ତି ଅଭିମାନର ପାହାଡ଼ ଭିତରେ । କୁହନ୍ତି, କ'ଣ ଆଉ କରିବ କହୁନ, ସବୁବେଳେ ତ କାମର ଚାପ ସେଇ ଦେଶରେ । ସମୟ ମିଳିଲେ ତ ମନଖୋଲି କଥା କହିବ । ଅଥଚ କହିପାରନ୍ତିନି ଯେ, ପୁଅ ହାତରେ ସମୟ ନଥିଲେ ବି ବୋହୂ ତ ଅଛି କରିପାରନ୍ତା । ହେଲେ ନା, ତାକୁ ବି ବେଳ ନାହିଁ । ମା'କୁ ଭୁଲିଗଲେଣି । ନହେଲେ କି

ଦି'ମାସ ହୋଇଯିବ ଫୋନ୍‌ଟିଏ କରନ୍ତାନି । ମନ ଘାଣ୍ଟି ଚକଟି ହେଲା ବୋଲି ସେ ନିଜେ ନିଜ ଆଡୁ ଫୋନ୍ କରିଥିଲେ ଅନିଦ୍ରା ରହି ।

ଅର୍ଣ୍ଣବ ଥିଲା ଘରେ । ଫୋନ୍ ବି ଧରିଲା । ଚିରାଚରିତ ଢଙ୍ଗରେ ଦି' ଘରିପଦ କଥା ହେଇଛି କି ନାହିଁ କାଟିଦେଲା । କହିଲା, 'ସମୟ ଅଭାବ । ଅନେକ କାମ ଅଛି ବୋଉ । ଅଫିସ୍‌ର ବଡ଼ ଦାୟିତ୍ୱ ସମ୍ଭାଳିବାକୁ ପଡୁଛି । ଗପ କରିବାକୁ ବେଳ ନାହିଁ । ଜାଣୁଛି, ତମେ ଭଲ ଅଛ । ଭଲରେ ଥାଅ । ଯେମିତି ତମକୁ ଆନନ୍ଦ ଲାଗୁଛି, ସେଇଭଳି ଭାବରେ ସମୟ ବିତେଇବାକୁ ଚେଷ୍ଟା କର । ଅସୁବିଧା ହେଲେ ଜଣାଅ ମୋତେ । ବର୍ତ୍ତମାନ ପାଇଁ ରଖୁଛି, ସମୟର ବରବାଦ କରିବାକୁ ଚାହୁଁନି । ନିଜର ଯତ୍ନ ନିଅ । ବାସ୍ ।' ସବୁ ଯାନ୍ତ୍ରିକ, ଯନ୍ତ୍ରମଣିଷ ହୋଇଯାଇଛି ତାଙ୍କ ପୁଅ । ସମୟ ଏବଂ ଅର୍ଥକୁ ସେ କେବଳ ଚିହ୍ନିଛି, ମା'ର ମନକୁ ନୁହେଁ । ତେଣୁ ସେ ଅଯଥା ସମୟ ବରବାଦ କରି ଆସିବ କାହିଁକି ବୁଢ଼ୀମା'କୁ ଦେଖିବ ବୋଲି । ତା' ଯାନ୍ତ୍ରିକ ମନର ସେଇ ଶକ୍ତି ନାହିଁ । କ'ଣ ଆଉ କହିଥାନ୍ତେ ସେ । ହଜାର ହଜାର ମାଇଲ ଏପଟେ 'ଶୂନ୍ୟନୀଡ଼' ଭିତରେ ସମୟକୁ ବୋଝ କରି ବଞ୍ଚିଥିବା ଜୀବନଟା ମନକୁ ମନ ହିଁ ବୁଝାଏ, ସାନ୍ତ୍ୱନା ଦିଏ । ପୁଣି ଆରମ୍ଭ ହୁଏ ପ୍ରତୀକ୍ଷା ... କିଏ ଆଉ ଆସିବ ବୋଲି ନୁହେଁ, ଜୀବନର ଶେଷ ଦେଖିବାକୁ ।

ସୁମତୀ ପୁଣି ପଚାରେ, କୁହେ, 'ଯେତେ ଯାହା ହେଲେ ବି ଥରୁଟିଏ ବର୍ଷରେ ଆସିବେନି ମା'କୁ ଦେଖିବାକୁ ? ସେମାନେ ବି ତ ବାପ-ମା' ହୋଇଛନ୍ତି !' କୌଣସି ଘୋଡ଼ଣି ନ ରଖି ବିଚାର ଥୁଏ ସୁମତୀ। ଭଲ ଲାଗେନି ଅସୀମାଙ୍କୁ। ଗୁମ୍ ହୋଇ ବସିଯାନ୍ତି ଥରେ ଥରେ। ନହେଲେ ନିଜର ବିରକ୍ତିଭାବ ପ୍ରକାଶ କରନ୍ତି ଦି'ପଦ ଶୁଣେଇ ଦେଇ। ତୋର କି ଲାଭ ଯେ ସେମାନେ ଆସିଲେ, କିଛି ଟଙ୍କା ଦି'ଚାରି ଲୁଗାପଟା ନହେଲେ ପାଉଡ଼ରଟିଏ କି ଅତର ଟିକେ ଏଇଯାତ ମାଗିନେବୁ ଝିଅ ପାଇଁ, ଏଇୟା ତ ?'

"ସୁମତୀ ନାକ କାନ ଧରି କାଇଲି ହୁଏ । ମୁଁ କ'ଣ ଏତେ କଥା ଭାବି କହୁଛି ମା' ! ତୁମ କଲ୍ୟାଣ କ'ଣ କମ୍ ହୋଇଛି ମୋ ଝିଅ ପାଇଁ ! କଥାକୁ କଥା ପଦେ କହିଲାବେଳେ କିଏ କ'ଣ ଏସବୁ ଭାବେ ? ତା' ଛଡ଼ା ତମ କଷ୍ଟ ସହିପାରେନା । ପଶୁ ପକ୍ଷୀ ସମସ୍ତଙ୍କୁ ତମେ ସ୍ନେହ କର, କିଏ ଆସିଲେ ଗଲେ ତମ ପାଦ ତଳେ ଲାଗେନା, ମୁଁ କ'ଣ ଦେଖୁନି । ମଣିଷ ଦେଖିଲେ ରଙ୍କୁଣୀ ହୋଇଯାଅ । କେଡ଼େ ବାଧିକିରେ ପଡ଼ିଲେ, କେହି ଆସିଲେନି ଥରୁଟିଏ । ଅବଶ୍ୟ କିଛି ଅଚଳ ହେଲାନି ସତ... । ଛାଡ଼, ଭୁଲିଯାଅ ସବୁ । ଯିବା କି ମନ୍ଦିର ଆଡ଼େ ? ସୁମତି କଥା ବୁଲାଏ । ମନକୁ ଆଉଁଶି ଦିଏ ।"

ସେ ବି କ'ଣ ଅବିବେକୀ ଯେ, ସୁମତି କଥା ବୁଝିପାରିବେନି । ବୁଝନ୍ତି । ଏହା ବି ଜାଣନ୍ତି ଯନ୍ତ୍ରଣାଟା ସୁମତୀ କଥାରେ ନ ଥାଏ, ଥାଏ ଆଉ ଠାଏଁ, ଯାହା ଦିଶେନି ଆଖିକୁ । ସେ ମଧ୍ୟ ଚାହାନ୍ତି ଦେଖେଇବାକୁ । ସୁମତୀ ମା'ଟିଏ ବୋଲି ମା' ମନକୁ ଚିହ୍ନିପାରିଲା ସିନା !

ଥରେଥରେ ବି କୁହେ ସୁମତୀ, 'ତମେ ତ ମା' କେବଳ ଅଭିମାନ କରୁଚ, ଅଧିକାର ଜଣେଇ ପାରୁନ, କହିପାରୁନ ଯେ ମା'କୁ ଦେଖିବା ପାଇଁ, ଜନମମାଟିକୁ ଆସିବା ପାଇଁ କେବେ କ'ଣ ସମୟ ନଷ୍ଟ ହୁଏ ? ନା ପଇସା ହିସାବ କରିବାକୁ ପଡ଼େ ? ଏଇଥିପାଇଁ ତମକୁ ପେଟରେ ଧରିଥିଲି ? ପଚାରିଲନି ଥରେ, କ'ଣ ଉତ୍ତର ଦେଇଥାନ୍ତେ !

କୌଣସି ଉତ୍ତର ନ ଥାଏ ତାଙ୍କ ପାଖରେ । ସୁମତୀ ସରଳ, ସେ କାହିଁକି ବୁଝିବ ଆଜି ମଣିଷର ଜଟିଳ ମନୋଭାବନାକୁ । କିମିତି ବଞ୍ଚୁଛି ମଣିଷ, କି କି ପ୍ରକାରର ସମସ୍ୟାକୁ ସାମନା କରୁଛି ସେ, କିଛି ବୁଝେଇ ବି ପାରନ୍ତିନି ତାକୁ । ଅସରନ୍ତି ସମୟ ଆଉ ଅଖଣ୍ଡ ଶୂନ୍ୟତା ଭିତରେ ଆଉଟୁପାଉଟୁ ହୁଅନ୍ତି କେବଳ । ଅଭିମାନ କି ଅଭିଯୋଗ, ଦାବି କି ଅଧିକାର, କୌଣସି ପ୍ରଶ୍ନ ତାଙ୍କର ନାହିଁ କାହା ପାଖରେ । ସମସ୍ତେ ନିଜନିଜ ଜୀବନ ଜିଉଁଛନ୍ତି ନିଜ ପ୍ରକାରେ ।

ମନେମନେ ହସିଲେ ଅସୀମା । ଠିକ୍ ସେ ଜାଣିପାରୁଛନ୍ତି ପିଲାଙ୍କ ଭୟ କୋଉଠି । ଅନୁପମା କହୁଛି, ତୁ ଚାଲିଆସ ବୋଉ, ମୋ ଘରେ ନ ରହିଲେ ନାହିଁ । ଏଠି ଫ୍ଲାଟ୍‌ଟିଏ ନେଇ ରହିବୁ । ସମସ୍ତେ ଏଠି ସେମିତି ରହନ୍ତି, ସ୍ୱାଧୀନ ଭାବେ । ମୁଁ ତ ଅଛି, ସବୁବେଳେ ଏବେସିନା ତୁ ସୁସ୍ଥ ଅଛୁ ... ଅନୁପମା ଅନାଗତ (ଭବିଷ୍ୟତ) ସମୟକୁ ମନେମନେ ଭୟ କରେ । ଭୟ ଦେଖାଏ ବି ।

ସେ ଜାଣନ୍ତୁ ସବୁ । ହେଲେ ସେ କାହା ଉପରେ ବୋଝ ହେବାକୁ ଚାହାଁନ୍ତିନି । ଯାହା ଘଟିବା କଥା ଘଟିବ, ଘଟିଯାଇଛି ମଧ୍ୟ । କାହାର ସାଧ୍ୟ ନାହିଁ ଅଟକେଇବାକୁ । ସେଇ ଅନ୍ତିମ ସମୟଟା ଆସିବ ହିଁ । ଆସୁ ତା' ବାଟରେ । ଏବେ ତ ନିଜ ଯତ୍ନ ନିଜେ ନେଇପାରୁଛନ୍ତି । କାହା ସାମାଜିକ ଓ ବ୍ୟକ୍ତିଗତ ଛବିରେ ଦାଗ ଲାଗିବାକୁ ଦେବେନି କି ଏଇ ସ୍ମୃତିତୀର୍ଥକୁ ଛାଡ଼ିପାରିବେନି । କୁହନ୍ତି - 'ମୋର ଯେତେବେଳେ ଏଠି ଠିକଣାଟିଏ ଅଛି, ତୋ' ବାପା ରଖିଯାଇଛନ୍ତି, ମୁଁ ଏକା ନାହିଁମା', ଯା' ଭିତରେ ଅସରନ୍ତି ସ୍ମୃତି । ମୁଁ ତା' ଭିତରେ ଉବୁଟୁବୁ ହେଉଛି । ଏଇ ମାଟି ପବନ ମୋର ଏକାନ୍ତ ଆପଣାର, ଚିହ୍ନା । ତା'ର ଗୋଟିଏ ଆଶ୍ୱାସନା ଅଛି, ଦମ୍ଭ ଅଛି । ତମେ କେହି ବ୍ୟସ୍ତ ହୁଅନା । ନିଜନିଜ କର୍ତ୍ତବ୍ୟ କର...' କହି ଅସୀମା ପିଲାଙ୍କୁ ଦାୟିତ୍ୱମୁକ୍ତ କରିଦେଇଛନ୍ତି ।

ଉପର ମହଲାରେ ସୁମତି ବୋଧେ ଘରସଫା କରୁଛି । ଦୁଆର ଝରକା ଖୋଲାହେବାର ଶବ୍ଦ ଶୁଭୁଛି । ଖୁଟ୍‌ଖାଟ୍ ଶବ୍ଦରେ ଭାବନା ଦୋହଲିଗଲା । ମନେ ପଡ଼ିଗଲା ସକାଳର ଅତିଥି । ମନ ଚଂଚଳ ହେଲା । ଅଛି କି ଉଡ଼ିଗଲାଣି କେଜାଣି । ପୂଜା ସାରି ଥରେ ଯାଇ ସେ ନଜର ପକେଇ ଆସିଥିଲେ କବାଟ ଫାଙ୍କରେ । ଡେଣା ଝାଡ଼ି ବୁଲୁଥିଲା ଘରସାରା ନିର୍ଭୟରେ । ଚଂଚୁ ଘଷୁଥିଲା ଚଟାଣରେ । କିଛି ଖାଦ୍ୟ ପାଇଥିବ କି କ'ଣ । କୌଣସି ପ୍ରକାର ବ୍ୟାଘାତ ନ କରି ଚାଲି ଆସିଥିଲେ । ତା'ପରେ ତ ସୁମତୀ ଆସିଲା, ଗପୁଛନ୍ତି । ମନେ ନାହିଁ ତା' କଥା ।

ବାହାରେ ଖରା ମଉଳିଲାଣି । ଏଥର ସୁମତି କାମ ସାରି ଯିବ । ସେ ଉଠିବେ ସଂଜ ଦେବାକୁ । ଦେଖିବେ କ'ଣ କରୁଛି ପକ୍ଷୀଟା । ଯିବା ଉଚିତ ମନେହେଲେ, ସଂଜ ପୂର୍ବରୁ ଛାଡ଼ିଦେବେ ।

ଭାବନା ଅଟକିଲା, ଉପରୁ ସୁମତି କ'ଣ କହୁଥିଲା ତାଙ୍କ ଉଦ୍ଦେଶ୍ୟରେ, କାନ ଡେରିଥିଲେ । ସୁମତି ପାହାଚ ଉପରେ ଥାଇ ପଚାରିଲା, "କିଏ ଆସିଛି କି କୁଣିଆ, ଉପର ଗେଷ୍ଟରୁମ୍‌ଟା ଖୋଲା, ଅବଶ୍ୟ ଅଧା ଆଉଜା ଅଛି । ସଫା ନ କରି ମୁଁ ଫେରିଆସିଛି ବୁଝିବାକୁ । ମୋତେ ତ କହିନ ଗୁଟି ଅଧିକା କରିବାକୁ, ଭୁଲିଯାଇଛ କି କ'ଣ ।"

ଅସୀମା ହସି ପକେଇଲେ । ନିର୍ମଳ ହସର ଉଜ୍ଜ୍ୱଳ ଆଭା ଚହଟିଗଲା ମୁହଁ ଉପରେ । ଭୁଲିଯାଇଛି, କହିନି ତୋତେ । ଅତିଥି ଆସିଛନ୍ତି ଯେ, ଖାଇପିଇ ଗଲାଭଳି ଅତିଥି ନୁହେଁ କିନ୍ତୁ ।

ସୁମତୀ ବୋଧେ କିଛି ବୁଝିପାରିଲାନି - ଇଏ ପୁଣି କି ପ୍ରକାର ଅତିଥି ଯେ ! ଚାହିଁଲା ନିର୍ବୋଧଙ୍କ ଭଳି ବଲବଲ ହୋଇ ।

"ବୁଝିପାରିଲୁନି ନା ? ଅସୀମା, ହସି ହସି କହିଲେ, କେହି ନୁହେଁ ମ ! ପକ୍ଷୀଟିଏ ।" ଚକିତ ହେଇ ସୁମତୀ କହିଲା, "ପକ୍ଷୀ ? କାହିଁ କୋଉ ପକ୍ଷୀ ତ ନାହିଁ, କି ପକ୍ଷୀ ଯେ ? ଭାବୁଛି, ଡାହୁକ ହୋଇଥିବ । ମନେ ନାହିଁ, ଚିହ୍ନିପାରିନି, କୋଉ ପିଲାଦିନେ ଆମ ଗାଁ ନଈ ପଠା କି ପୋଖରୀ କୂଳେ ଦେଖିଥିଲି । ତୁ ଦେଖିନୁ ତାକୁ ? ଭଲକରି ଦେଖି ଆସୁନୁ, କୋଉଠି ଲୁଚିଯାଇଥିବ ଢାବଲ ଭିତରେ ।" ସୁମତୀ ପୁଣିଥରେ ଉଠିଗଲା ସନ୍ତର୍ପଣରେ । ଚାହିଁଲା ଭିତରକୁ... "କେହି କୋଉଠି ନାହିଁ, ବୋଧେ ଉଡ଼ିଯାଇଛି, ଝରକା ଖୋଲା ଥିଲା ତ, ଢାବଲ ବି ଖାଲି ପଡ଼ିଛି ମା' ।"

"ତୁ ଠିକ୍ ଦେଖିଛୁ ତ ?"

ହଁ ମା, ଥିଲେ ନିଶ୍ଚେ ଆଖିରେ ପଡ଼ନ୍ତା ।"

ଅସୀମାଙ୍କ ହସଚହଟା ମୁହଁ ହଠାତ୍ ମଉଳିଗଲା । ଆଖିରେ ଛାଇଗଲା ଶୂନ୍ୟତାର କଳାବାଦଲ । ବୁଦ୍ଧିମତୀ ସୁମତୀ ଆଖିରୁ ବାଦ୍ ପଡ଼ିଲାନି । ଆହାପଣରେ ଓଦା ହୋଇଗଲା ତା'ର ଦରଦୀ ମନ ।

ଓଜନିଆ ପାଦ ପକେଇ ଉଠି ଯାଉଯାଉ ପାହାଚ ଉପରେ ଠିଆ ହୋଇଗଲେ ଅସୀମା ଦୀର୍ଘଶ୍ୱାସଟିଏ ନେଇ । ସ୍ୱଗତୋକ୍ତି କଲା ଭଳି ଗୁଣୁଗୁଣେଇଲେ- 'ମୁଁ ଜାଣିଥିଲି ସେ ନିଶ୍ଚୟ ଉଡ଼ିଯିବ । ସମସ୍ତେ ତ ଆସନ୍ତି ଏମିତି ଉଡ଼ିଯିବା ପାଇଁ...' ମଉଳା ମୁହଁରେ ଉକୁଟି ଉଠୁଥିଲା ରହସ୍ୟମୟ ହସ ଟିକେ ।

ମା'ଙ୍କ କଥାର ବ୍ୟଞ୍ଜନା ସୁମତୀ ବୁଝିପାରିଲା କି ନାହିଁ କେଜାଣି, ହସଟା କିମିତି ଅବାଗିଆ ମନେହେଲା । ଯେମିତି ସେ ନକହି ନକହି ଅନେକ କିଛି କହି ପକଉଛନ୍ତି ।



# ହଜିଲା ଅତୀତର ଛାଇ

... ବିବାହ ପାଇଁ ଗୋଟିଏ ବୟସ ଥାଏ ... ସେଇ ବୟସ ଆସିଲେ ଘରଚଟିଆ ବି ବସା ବାନ୍ଧିବାକୁ କାଠିକୁଟା ଗୋଟାଏ - ଡହଳ ବିକଳ ହୁଏ ସାଥୀ ଖୋଜିବାରେ । ହେଲେ, ମୋ' କ୍ଷେତ୍ରରେ ସେଇ ଚିରନ୍ତନ ନିୟମଟା ଲାଗୁ ହୋଇନଥିଲା...., ମୋ ଆଖିରେ ପ୍ରଶ୍ନବାଚୀ ?

"... ସେଇ ସମୟଟା ହିଁ ଅଲଗା ଥିଲା, ପରିସ୍ଥିତି ଭିନ୍ନ ଥିଲା । ଆଜିକାଲିର କଥା ହେଇଥିଲେ, କେଜାଣି ଅବା କ'ଣ ହୋଇଥାନ୍ତା । ଏବେ ସିନା ସରକାରୀ ନିୟମ ହୋଇଛି, ଅଠରବର୍ଷ ତଳକୁ ସମସ୍ତେ ନାବାଳକ ... ହେଲେ ମୋ କଥା ଭିନ୍ନ ... ମୁଁ ସେକାଳର ତ, ଛ'ଦଶନ୍ଧି ତଳର କଥା । ଯଦିଓ ସେଇ ସମୟକୁ ଆମ ଦେଶ ସ୍ୱାଧୀନ ହୋଇ ସାରିଥାଏ । ନୂଆ ନୂଆ ସ୍ୱାଧୀନତା । ପୁଣି ନିପଟ ମଫସଲ ଭିତରକୁ ସ୍ୱାଧୀନତାର ଉଚ୍ଛ୍ୱାସ ପଶିଆସି ଥିବ କି ନାହିଁ କିଏ ଜାଣେ । ମୁଁ ବି ଏକଥା ଅନେକ ବର୍ଷ ପରେ ଜାଣିଥିଲି, ହେତୁ ନାହିଁ କେବେ...

କହୁ କହୁ ଅପଳା ମୁହୂର୍ତ୍ତେ ଅଟକି ଗଲା, ଶୂନ୍ୟ ଦୃଷ୍ଟିରେ ଦୂର ଦିଗନ୍ତକୁ ଋହିଁ ଅତୀତକୁ ଜୀବନ୍ୟାସ ଦେବାକୁ ପ୍ରୟାସ କରୁଥିଲା ହୁଏତ । ଏବଂ ମୁଁ ତା' ମୁହଁକୁ ଏକାଗ୍ର ଦୃଷ୍ଟିରେ ଋହିଁଥିଲି, ତା' ମୁହଁର ଭାଷା ପଢ଼ିବାକୁ । କେତେବେଳେ କପାଳରେ କୁଞ୍ଚିତ ରେଖା ଫୁଟି ଉଠୁଥିଲା ତ, କେତେବେଳେ ଆଖିବୁଜି ସେଇ ସମୟର ଘଟଣାଗୁଡ଼ିକୁ ଏକାଠି ଗୋଟେଇ ସଜାଡ଼ିବ ବୋଲି ପ୍ରସ୍ତୁତ ହେଉଥିଲା ।

"... ନିଜ ବାହାଘର କଥା ମୋର ମନେ ନାହିଁ । ପ୍ରମାଣ ବି କିଛି ନାହିଁ । ମନେରଖିବା ଭଳି ବୟସ ମୋର ହୋଇନଥିଲା ତ ! ଶୁଣିଛି ପଛରେ ... କାଖ ହେବା ବୟସରେ ମୋ ବାହାଘର । ଠିକ୍ କଣ୍ଢେଇ ବାହାଘର ଭଳି । ବୟସ ମାତ୍ର ଛ' ବର୍ଷ । ସେଇ ବୟସରେ କିଏ

ବାହା ହୁଏ, କହିଲାବେଳେ ଅପଳା ଓଠରେ ବ୍ୟଞ୍ଜନାର ହସ ଫୁଟି ଆସୁ ଆସୁ ଲିଭିଯାଇଥିଲା - ମୁଠାଏ ତିକ୍ତ ନିମପତ୍ରକୁ ସତେ ଯେମିତି କିଏ ତା' ପାଟିରେ ପୂରେଇ ଦେଇଛି ... ମୁଁ ଲକ୍ଷ୍ୟ କରୁଥିଲି ତା' ମୁହଁର ଭାବାନ୍ତରକୁ । ମୋ' ଭିତରେ ମୁଁ ଅପ୍ରସ୍ତୁତ ବୋଧ କଲି, ଭାବିପାରିଲିନି ଏଇ ଭାବାନ୍ତର ତାଚ୍ଛଲ୍ୟର ନା, ଯନ୍ତ୍ରଣାର - ଜୀବନକୁ ଅନେକ ବାଟରେ ଭେଟିଛି ତ ଅପଳା ।

... ମୁଁ କିନ୍ତୁ ବାହା ହୋଇଥିଲି । ... ନିପଟ ମଫସଲରେ ଆମଘର, ମାଟିପଦର ଗାଁ' । ପାଖକରେ ଜଙ୍ଗଲ, ଆଉ ତିନିପଟେ ଚଷଜମି, ହିଡ଼ବାଡ଼, ନେଳିପୋଖରୀ, ଭଣଭଣ ମଶା ଡାଆଁଶ, ଗାଈଗୋରୁ, ଖତଗୋବର, ଘସିଧୂଆଁ, ନୂଆଁଣିଆ ଘଳ ମାଟିଘର, ସନ୍ତସନ୍ତିଆ କଉମାଟିର ନାଳି ରାସ୍ତା କେଁକଟର ଶଗଡ଼ ଶବ୍ଦ... ଗାଁ ମୁଣ୍ଡରେ ମଶାଣି ଛୋଟଦେଉଳ ଭିତରେ ସିନ୍ଦୂରବୋଳା ପଥର ଦିଅଁ.:. ସବୁ ମିଶିମାସି ଆମ ଗାଁ । ତାକୁ ହିଁ କୋଳେଇ ଧରିଥିବା ମୋ' ପିଲାଦିନ । ସେଠି ଇସ୍କୁଲ କାହିଁ ଯେ, ଅଗଷ୍ଟ ପନ୍ଦର କି ସ୍ୱରାଜ କଥା କାନରେ ବାଜିବ - ତ୍ରିରଙ୍ଗା ପତାକା ଉଡ଼ିବ । 'ସହର' ଶବ୍ଦ ବି ଶୁଣିନଥିଲି ଅନେକ ବର୍ଷ ଯାଏ । ଗାଁରେ ହାଟବଜାର କି ଦୋକାନ ନ ଥିଲା । ପାଖ ଗାଁରୁ ତେଲଲୁଣ, କିରାସିନି ଆସେ । ଜାମା ପୋଷାକ ଜାଣିନଥିଲି - ଲମ୍ବା ଗାମୁଛାକୁ ଗୁଡ଼େଇତୁଡ଼େଇ ଦେହ ଘୋଡ଼େଇ ହେବା କଥା । ବାଡ଼ିର ପନିପରିବା, ପାଟ ପୋଖରୀରୁ ମାଛଧରି ଆଣିଲେ କରେଇରେ ପଡ଼େ ।

ସେଇ ସମୟରେ ମୋ' ବାହାଘର । ହେତୁ ହେଲା ବେଳକୁ ମୁଁ ମୋ' ପରିଚୟ ବଦଳି ଯାଇଥିଲା । ମୁଁ ବିଷୋଇ ଘର ବୋହୂ ହୋଇଯାଇଥିଲି । ସବୁକାଳେ ଝିଅଟିର ଭାଗ୍ୟ ହିଁ ସେଇୟା । ପାଠଘର ଶୂନ । ଇସ୍କୁଲ, ସିଲଟ ଖଡ଼ି ସହିତ ମୋର ପରିଚୟ ନାହିଁ । ଅକ୍ଷର ଚିହ୍ନିନି । କେହି କେହି ପୁଅପିଲା ପାଖ ଗାଁକୁ ସିଲଟ ଧରି ପାଠ ପଢ଼ିବାକୁ ଯାଉଥିଲେ - ସେଠି ଚଟ୍ଟହାଳୀ ଓ ଅବଧାନେ ଥିଲେ । ନହେଲେ ଝିଅଙ୍କ ଭାଗ୍ୟରେ ସେଇ ସୁବିଧା ନାହିଁ । ଝିଅଟିଏ ଜନ୍ମହେଲେ ବାପା ମା'ଙ୍କ ମୁଣ୍ଡରେ ପାହାଡ଼ ଲଦି ହେଇଯାଉଥିଲା । ତାର ଭବିଷ୍ୟତ ନେଇ ଚିନ୍ତା.... । ଭବିଷ୍ୟ କହିଲେ ... ଶାଶୂଘର... ବରଘରେ ମୁଠେ ଖାଇ ଖଣ୍ଡେ ପିନ୍ଧିଲା ଭଳି ସ୍ଥିତି ଥିଲେ ଯଥେଷ୍ଟ ।

ହଠାତ୍ ସେ ମୋ ମୁହଁକୁ ଚାହିଁ ଚିନ୍ତା ପ୍ରକଟ କରିବା ଭଳି କହିଲା, ... ଏମିତି ଦେଖିଲେ ସମାଜର ପ୍ରଚଳିତ ବ୍ୟବସ୍ଥା ତ ହଠାତ୍କରି ବଦଳି ଯାଏନା, ମଣିଷ ନିଜ ଭିତରେ ପୋଷି ରଖିଥିବା ଧାରଣା, ପରଂପରା, ଆମେ ତାକୁ ଅନ୍ଧବିଶ୍ୱାସ କି କୁସଂସ୍କାର ଯାହା କହୁ ନା କାହିଁକି ତାକୁ ତ ଛାଡ଼ି ପାରୁନା, ଝିଅକୁ ବାପଘରେ ଆଠବର୍ଷ ହୋଇଗଲେ ପିତୃପୁରୁଷଙ୍କର ନର୍କଗତି ହୁଏ - ପୁରୁଣା ବିଶ୍ୱାସ । ତେଣୁ ହିଁ ବାଲ୍ୟବିବାହର ପ୍ରଚଳନ । ମୁଁ ବଡ଼ହେବା ପରେ ଶାଶୂ ଘରେ ଶୁଣିଛି, ଗାନ୍ଧିଜୀ କୁଆଡ଼େ ନାରୀ ଶିକ୍ଷା କଥା ପ୍ରଚାର କରୁଥିଲେ ।

ତଥାପି ଗାଁ ଗହଳିର ଅଶିକ୍ଷିତ ରକ୍ଷଣଶୀଳ ମଣିଷ ତା'ର ମାନ୍ଧାତା ଅମଳର ବିଚାରକୁ ନିଜ ଚେତନା ଭିତରୁ ପୋଛି ଲିଭେଇ ଦେବା ସମ୍ଭବ ନୁହେଁ... କହିଲାବେଳେ ତା' ମୁହଁ ଖୁବ୍

କରୁଣ ଦିଶୁଥିଲା । ଆଖି ଓଦା ହୋଇ ଯାଉଥିଲା, କଣ୍ଠରୁଦ୍ଧ ହୋଇ ଆସୁଥିଲା ମଝିରେ ମଝିରେ ଦୀର୍ଘଶ୍ୱାସ ନେଉଥିଲା, ଆଉ ମୁଁ ଅସୀମ ଧୈର୍ଯ୍ୟ ନେଇ ଶୁଣି ଯାଉଥିଲି ପରିଣତ ବୟସର ପାହାଚରେ ଠିଆ ହୋଇ ସତ୍ୟପାଠ କରୁଥିବା ନାରୀଟିକୁ, ଯିଏ ଆଜି ଦୂର ଅତୀତର ଇତିହାସ ପାଲଟି ଯାଇଛି ।

"... ମାଟିପଦର ଗାଁର ଭୁବୁନି ପରିଡ଼ା, ମୋ' ବାପା । ମୁଁ ତାଙ୍କର ଏକମାତ୍ର ଝିଅ, ମୋ ମା' ବିଦୁଲତା ବାପାଙ୍କର ଦ୍ୱିତୀୟ ପକ୍ଷର ସ୍ତ୍ରୀ । ମୋତେ ଛ'ବର୍ଷ ବେଳକୁ ବାପା ମୃତ୍ୟୁଶଯ୍ୟାରେ, ଅଜଣା ରୋଗ । ପେଟକୁ ପାଣିଟୋପେ ଯାଉନଥିଲା । ଛଟପଟ ହେଉଥିଲେ ଯନ୍ତ୍ରଣାରେ କୁଆଡ଼େ । ମୋର କିଛି ମନେ ନାହିଁ । ବାପା ମୁହଁ ବି ମନେନାହିଁ । ପରେ ଶୁଣିଛି ଏକଥା । ରୋଗର ଚିକିତ୍ସା ସମ୍ଭବ ନଥିଲା ତ ... ସବୁକୁ ଠାକୁରେ ଥିଲେ, ଚେରମୂଳି, କାଟପାଣିରେ ମଣିଷ ଜୀବନର ଅନ୍ତ ଘଟୁଥିଲା ।

ଲମ୍ବା ଏକ ଦୀର୍ଘଶ୍ୱାସ ନେଲା ଅତୀତ । "ଏମିତି ଅନେକ ରୋଗ, ଶୋକ, ଯନ୍ତ୍ରଣାର ସମସ୍ୟା ଭିତରେ ଛଟପଟ ହେଉଥିଲା ମଣିଷର ଜୀବନ । ସେଥିରେ ପୁଣି ବାପାଙ୍କର ଇଚ୍ଛା ହୋଇଥିଲା ଏକମାତ୍ର କନ୍ୟାର ବିବାହ ଦେଇ, କନ୍ୟାଦାୟରୁ ଋଣ ମୁକ୍ତ ହେବେ ଏବଂ କନ୍ୟାଦାନର ପୁଣ୍ୟ ଅର୍ଜନ କରିବେ ପରଲୋକକୁ ଯିବା ପୂର୍ବରୁ । କି ବିଡ଼ମ୍ବନା ସତରେ !! ଅପଳା ଆଖିରେ ବିଦ୍ରୂପର ସ୍ପଷ୍ଟ ଇଙ୍ଗିତ ବ୍ୟଞ୍ଜିତ ହୋଇ ଉଠିଲା ନିଜ ପାଇଁ ନିଜ ଜୀବନ ପାଇଁ । ... ମୋର ଏଇ ନିଉଛୁଣା ଜୀବନର କି ଆବଶ୍ୟକତା ଥିଲା - କେଜାଣି କି ଗୌରବ ଥିଲା ମୋର ଏଇ ଜନ୍ମର । କାହିଁକି ସେ ଜନ୍ମ ହେଲା ଯେ । କାହାର କି ଲାଭ ହେଲା ଏଥିରେ ... ବରଂ ଏଇ ଜନ୍ମ ନ ହୋଇଥିଲେ ଆଉ ଗୋଟିଏ ଜୀବନ ତ କଲବଲ ହୋଇନଥାନ୍ତେ... କିନ୍ତୁ ହେଲା... ହେବାର ହିଁ ଥିଲା । ଏକଥା ମୁଁ ଅନେକ ଥର ଭାବିଛି ... ଯେତେଥର ଭାବିଛି ଘୃଣା ହୋଇଛି ଏଇ ଜନ୍ମ ନେଇ । ଅସହ୍ୟ ଲାଗିଛି ଜୀବନଯନ୍ତ୍ରଣା । ଜୀବନକୁ ଶେଷକରି ଦେବାଟା ବି ତ ମୋ ହାତରେ ଥିଲା... ହେଲେ ମୁଁ ପାରିଲିନି । କେମିତି ପାରିଥାନ୍ତି ଯେ, ଏତେ କଥା ବୁଝିଲା ବେଳକୁ, ଆଉ ଦି'ଟା ନିରୀହ ଜୀବନକୁ ମୁଁ ଜନ୍ମ ଦେଇ ସାରିଥିଲି... ସେମାନଙ୍କ ଦାୟ ଦାୟିତ୍ୱ ତ ମୋର । କେମିତି ମୁଁ ସେଭଳି ନିର୍ମମ ନିଷ୍ପତ୍ତି ନେଇ ପାରନ୍ତି ମା'ଟିଏ ହୋଇ କହିଲ... ଛାଡ଼ !

ହଁ ବାପାଙ୍କର ଶେଷ ଇଚ୍ଛାକୁ ପୂରଣ କରିବା ପାଇଁ ଘର ଭିତରେ ଚହଳ ପଡ଼ିଗଲା । ହାତରେ ସମୟ ନାହିଁ... ଆଖପାଖ ଗାଁ ଭିତରୁ ଖୋଜାହେଲା ବରପାତ୍ର । ତରବର ହେଇ ଖୋଜୁ ଖୋଜୁ ଦିନେ ସୁନାନଈ କୂଳ ସୋମପଡ଼ା ଗାଁର ଶିବ ବିଷୋୟୀଙ୍କ ଦୁଆରେ ଯାଇ ଠକ୍‌ଠକ୍ କଲେ କନ୍ୟାପକ୍ଷ । ଏଇଠି ଅଛି ବର । ବୀରେନ୍ଦ୍ର, ବୟସ ତେର, ନବମ ଶ୍ରେଣୀର ଛାତ୍ର ... ସୁନାନଈର ଛାତି ଡେଇଁ ସେପାରି ଗାଁରେ ହାଇସ୍କୁଲ, ନିତି ନାଆରେ ବସି ବୀରେନ୍ଦ୍ର ଯା'ନ୍ତି ପାଠ ପଢ଼ିବାକୁ... ବାସ୍, ଏଇ ଢ଼େର .. ଆମ ଅପଳା ପାଇଁ ଯୋଗ୍ୟବର । କଥା

ବିଆନିଆ ହୋଇଗଲା – ଉଭୟ ପକ୍ଷ ରାଜି । ସ୍ୱର୍ଗରେ ସ୍ୱୟଂ ଈଶ୍ୱର ହିଁ ବରକନ୍ୟାଙ୍କ ଯୋଡ଼ି ସଜାଡ଼ି ରଖିଥାନ୍ତି... ସେଇ ସମୟର ବିଶ୍ୱାସ । ଆଉ କାହା ମତାମତର ଆବଶ୍ୟକ ହୁଏନା ।

ଠିକ୍ ହୋଇଗଲା ଦିନ ବାର । ବାଜା ପେଁକାଳୀ, କାହାଳୀର ବିଲମ୍ବିତ ସ୍ୱର ଭିତରେ ସମ୍ପନ୍ନ ହୋଇଗଲା ବାହାଘର । ଈଶ୍ୱର ଓ ସମାଜ ସ୍ୱୀକାର କରିନେଲେ ଆମ ବାହାଘରକୁ । ଜାନିଯୌତୁକ ବୋଇଲେ ସାଇକଲଟିଏ – ସେ ଯୁଗକୁ ଚାହିଁ ଯଥେଷ୍ଟ । ସେତେବେଳେ ଏତେ ଶୋଷଣ ନ ଥିଲା ତ ଯୌତୁକର ।

ବାହାଘରର ମାତ୍ର ଦିନ କେଇଟା ପରେ ବାପାଙ୍କର ଦେହାନ୍ତ ହୋଇଯାଇଥିଲା । ଏଥର ଅପଲା, କଥା ବନ୍ଦ ରଖି ମୋ ଆଡ଼କୁ ଚାହିଁ ଟିକିଏ ହସିଦେଲା... କହିଲା, ବୁଝିଲ ଅପା, ଅତୀତଟା ଏତେ ପଛରେ ଅଛି ଯେ, ପଛକୁ ଫେରି ଚାହିଁଲେ ସବୁ ଧୂଆଁଳିଆ ଦିଶୁଛି, କାନ ଡେ଼ରି ଶୁଣିଲେ ବି ଅସ୍ପଷ୍ଟ ଶୁଭୁଛନ୍ତି, ସେଦିନର ଯେତେସବୁ ଅତୃପ୍ତି ଅସନ୍ତୋଷର ଶବ୍ଦରୂପମାନେ । ଅନେକ ଘଟଣା, ଅଘଟଣା ହଜିଯାଇଛି ବି ସମୟର ଗଳିକନ୍ଦି ରାସ୍ତାରେ ।

ମୁଁ ମୁଣ୍ଡ ହଲେଇ ତା' କଥାକୁ ସମର୍ଥନ ଜଣେଇଲି । ସେ ହଠାତ୍ ଉଠିପଡ଼ି କହିଲା, "କପେ ଚା' ଆଣେ ଅପା ତମ ପାଇଁ, ଚା ଟିକିଏ ଖାଇଲେ ସହଜ ଲାଗିବ... ନହେଲେ ଏଇ ଅଲଣା କାହାଣୀରେ କି ସୁଆଦ ଅଛି ଯେ... ଶୁଣିବ । ପ୍ରତିବାଦର ସ୍ୱରରେ ମୁଁ କହିଲି, ନା, ନା, ମୋଟେ ଅଲଣା କାହାଣୀ ନୁହେଁ ଇଏ । ବରଂ ଜୀବନ୍ତ ଉପନ୍ୟାସର ପୃଷ୍ଠା, ଲୁହ ଲହୁରେ ଲେଖା ... କେତେ କେତେ ଘଟଣା, ଅନୁଭବ ଅକୁହା ଯନ୍ତ୍ରଣାରେ ଅଭିବ୍ୟଞ୍ଜିତ – ହୋଇଥିବା ବେଦନା ବିଦଗ୍ଧ, ନିପୀଡ଼ିତା ନାରୀର ମାର୍ମିକ ସତ୍ୟପାଠ ଇଏ ।

ଅପଲା କୌଣସି ଉତ୍ତର ନ ଦେଇ ଘର ଭିତରକୁ ଚାଲିଗଲା ଷ୍ଟୋଭ୍ ଜାଳି ଚା' କରିବାକୁ । ମୁଁ ଭାବିବାକୁ ଲାଗିଲି ... ଘର ଭିତରୁ ଚା'ର ଉତ୍ତେଜକ ବାସ୍ନା ପବନରେ ଭାସିଆସି ସ୍ନାୟୁମାନଙ୍କୁ ଉତ୍ତେଜିତ କଲା, ଭାବନା ବଉଳି ଉଠିଲା । ଭାବିଲି, ସତରେ ତ ନାରୀର ଏଇ ଦୁର୍ଗତି ମୂଳରେ ସମାଜର ରକ୍ଷଣଶୀଳ ମନୋବୃତ୍ତି, କୁସଂସ୍କାର ଏବଂ ଅନ୍ଧବିଶ୍ୱାସ ଯେତିକି ପରିମାଣରେ ଦାୟୀ ତା' ତୁଳନାରେ 'ଅଶିକ୍ଷା' ବି କିଛି କମ୍ ଦାୟୀ ନୁହେଁ ଅଥଚ ଦିନେ ଆମ ବୈଦିକ ସଂସ୍କୃତିରେ ନାରୀକୁ ସର୍ବୋଚ୍ଚ ସମ୍ମାନ ଦିଆଯାଉଥିଲା ବିଶ୍ୱବନ୍ଦ୍ୟା, ଯଶସ୍ୱିନୀ ନାରୀମାନଙ୍କ ଯଶୋଗାନରେ ଆମ ବେଦଶାସ୍ତ୍ର ପୁରାଣମାନେ ଶତମୁଖର । ଭାବିଲେ ବିସ୍ମିତ ଲାଗେ, ଆଜି ଆମେମାନେ କୋଉଠି ଆସି ପହଞ୍ଚିଛୁ !

ସମୟର ଇତିହାସ ତ ଅନେକ କଥା କୁହେ, ତେବେ ଏକଥା ସତ ଯେ, ଆମ ସମାଜିକ ଜୀବନର ଅଧୋଗତି ଘଟିଛି । ପୁରୁଷଶାସିତ ସମାଜ ବ୍ୟବସ୍ଥା ନାରୀକୁ ନିଜ ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ମନଇଚ୍ଛା ବ୍ୟବହାର କରିଆସିଛି । ଆଜିବି ନାରୀର ମୁକ୍ତି ନାହିଁ । ସମୟ ବଦଳିଛି ସତ... ଶୋଷଣର ଶେଷ ହୋଇନି... ସମୟ ସାଥେ ସାଥେ ତା'ର ଚେହେରା ବଦଳିଛି କେବଳ ।

.... ବସି ବସି ଏତେ କ'ଣ ଭାବୁଛ ଅପା.... ଚା' କପ୍ ଥୋଇ ଅପଲା ନିଜେ

ବସିଗଲା ସାମନାରେ । ମୁଁ ଚା’ କପ୍ ଉଠେଇ ନେଇ କହିଲି ଭାବୁଥିଲି ତୋରି କଥା ... ‘ମାଟିପଦର’ ଗାଁରୁ ସୁନାନଈ କୂଳ ସୋମପଡ଼ା’କୁ କେବେ ଗଲ ସେକଥା ତ କହିଲନି ... କଥା ଅଧାରହିଲା ଯେ...

ଚା’ କପରୁ ସୁଡୁକାଏ ଶୋଷି ନେଉନେଉ ଅପଲା ମ୍ଳାନ ହସଟିଏ ଫୁଟେଇ କହିଲା– “ବାହାଘର, ବର, ଶାଶୂଘର ଏସବୁ କଥାର ମାନେ ସେଇ ଛ’ବର୍ଷ ବୟସରେ ମୁଁ କିଛି ବୁଝିନଥିଲି ସିନା, ବୟସ ବଢ଼ିବା ସଂଗେ ସଂଗେ ମନ ଭିତରର ଆବେଗ, ନୂଆ ଜୀବନ ପାଇଁ କିଛି ସ୍ୱାଭାବିକ ସ୍ୱପ୍ନ, ହେଉପଛେ ଗାଉଁଲିଆ.... ସ୍ୱପ୍ନ ତ ଦେଖିଥିଲା ... ସ୍ୱପ୍ନକୁ ପଣତରେ ବାନ୍ଧି ଶାଶୂଘରେ ପାଦ ଦେଇଥିଲି ଚଉଦବର୍ଷ ବୟସରେ । ସ୍ୱାଭାବିକ ଢଙ୍ଗରେ ଶାଶୂଘର ଘରକରଣାକୁ ଆଦରି ନେଇଥିଲି ବି । ଶାଶୂ ଭଲ ମଣିଷଟିଏ ଥିଲେ । ଶ୍ୱଶୁର, ଜେଜିମା’ଙ୍କୁ ନେଇ ଭଲ ଚାଲିଥିଲା ସଂସାର । ସ୍ୱାମୀ ବୀରେନ୍ଦ୍ର ନଈ ପାରି ହୋଇ ପାଠପଢ଼ି ଯାଉଥିଲେ, ଜେଜିମା’ ଘାଟ ପାଖେ ଚାହିଁ ବସୁଥିଲେ କେତେବେଳେ ଫେରିବ ବୀରୁ । ଭାରି ସ୍ନେହ କରୁଥିଲେ ନାତିକୁ । ବୀରେନ୍ଦ୍ର ମୁଁ ଗଲାବେଳକୁ ପ୍ରାଇମେରୀ ସ୍କୁଲ ଶିକ୍ଷକ ଥିଲେ । ଖୁବ୍ କମ୍ ଦରମା ଥିଲା । ଟିଉସନ୍ କରି ଅଭାବକୁ ଭରଣା କରୁଥିଲେ । ଟିକିଏ ବଂଦରାଗୀ ମିଜାଜର । ସାମନାକୁ ଯିବାକୁ ଭୟ ଲାଗେ । ସଂସାର କଥା ବୁଝିବାକୁ ଶାଶୂଶ୍ୱଶୁର, ଜେଜିମା’ ଥାଉ ଥାଉ ମୁଁ କାହିଁକି ମୁଣ୍ଡ ପୂରାନ୍ତି... ତେବେ ମୁଁ ପାଠ ପଢ଼ିନଥିଲି, ପଢ଼ା କଥା ମୁଁ କିଛି ଜାଣେନା । ଜାଣିନଥିଲି ପ୍ରେମ କ’ଣ, କାହାକୁ କୁହନ୍ତି, କିମିତି କରାଯାଏ । ବୀରେନ୍ଦ୍ରଙ୍କର ଅନେକ ବଡ଼ବଡ଼ ସ୍ୱପ୍ନ ସେଇ କଅଁଳ ବୟସରେ ମୁଁ ବୁଝିପାରୁନଥିଲି ସ୍ୱପ୍ନର ଅର୍ଥ – ତାଙ୍କ ସ୍ୱପ୍ନ ଜଗତ ସହିତ ମୁଁ ଖାପ ଖାଇ ପାରୁନଥିଲି । ସେ ସେତେବେଳେ ତରୁଣ । ଦେଖିବାକୁ ରାଜପୁତ୍ରର ଚେହେରା – ତାଙ୍କ ସରିସମାନ ମୁଁ ହୋଇପାରୁନଥିଲି ନିଶ୍ଚୟ । ମେନକା ଉର୍ବଶୀର ରୂପ ମୋ’ ପାଖରେ ସିନା ନ ଥିଲା ନୂଆ ଫୁଟିଥିବା ଫୁଲର ସୌନ୍ଦର୍ଯ୍ୟ ଓ ମହକ ତ ଥିଲା ମୋ’ ପାଖରେ ନିଶ୍ଚୟ ।

ଅପଲା ଛୋଟ ଛୋଟ ଦୀର୍ଘଶ୍ୱାସ ନେଇ ଅତୀତର ସ୍ମୃତିକୁ ସାଉଁଟି ଚେଷ୍ଟା କରୁଥିଲା ମୋ’ ଆଗରେ ଥୋଇବା ପାଇଁ । ସହଜ ସାଧାରଣ ନାରୀଟିଏ ସେ, ନିଜ ଜୀବନର ଅନ୍ତରଂଗ ମୁହୂର୍ତ୍ତ ଆଉ ସ୍ୱାମୀଙ୍କ ସହିତ ଅନ୍ତରଂଗ ସଂପର୍କର କଥାକୁ ସେତେଟା ସହଜ ସରଳ କରି କହିବା ସହଜ ନୁହେଁ ନିଶ୍ଚୟ ତା’ ପକ୍ଷେ । ବିତିଯାଇଥିବା ଘଟଣାଗୁଡ଼ିକୁ ପ୍ରକାଶ କଲାବେଳେ କୁଣ୍ଠା, ସଂକୋଚ ସହି ସମ୍ଭ୍ରମତା ଘୋଡ଼େଇ ପକାଉଥିଲା । ଅନେକ ସମୟରେ ଶବ୍ଦର ଅଭାବ ତାକୁ ଅସହଜ, ଅପ୍ରସ୍ତୁତ କରି ପକାଉଥିଲା । ମୁଁ ଅନୁଭବ କରିପାରୁଥିଲି ତେଣୁ ତାକୁ ଟିକିନିଖି କରି ସବୁକଥା ପଚାରି ବୁଝିବାକୁ ଚାହୁଁନଥିଲି ମଧ୍ୟ । ସେ ଅପ୍ରସ୍ତୁତ ବୋଧ କରିବନି ଯେମିତି, ସେ କଥାକୁ ମୁଁ ଲକ୍ଷ୍ୟ ରଖିଥିଲି ବି । କାରଣ, ଜୀବନ ଯୁଦ୍ଧରେ କ୍ଷତବିକ୍ଷତ ମଣିଷଟିଏ ସେ ତା’ ଭିତରର ପ୍ରବୃତ୍ତି, ତା’ ଇଚ୍ଛା ଅନିଚ୍ଛାର କଥା ତ କେବେ କିଏ ପଚାରି ନ ଥିବ, କିମ୍ବା ତା’ ସ୍ୱପ୍ନ କ’ଣ ଜାଣିବାକୁ କେବେ ପ୍ରୟାସ କରିନଥିବ ଏମିତି ତାର ସବୁଠୁ ଆପଣାର ଅନ୍ତରଂଗ ମଣିଷଟି

ବି । ସବୁ ଆଶା, ଆକାଂକ୍ଷା, ସ୍ୱପ୍ନକୁ ସିଧାସଳଖ ଗାଉଁଲି ଢଙ୍ଗରେ ସ୍ୱାମୀ ଆଗରେ ସମର୍ପଣ କରିଦେବା ହିଁ ସେ ଜାଣେ । ସେ ଆଧୁନିକ ଯୁଗର ସ୍ମାର୍ଟନେସ୍‌କୁ ଆପଣେଇ ନଥିଲା – କେମିତି ଶାଢ଼ି ପିନ୍ଧିବ, ମୁଣ୍ଡ ବାନ୍ଧିବ, ସଜେଇ ସାଜେଇ କଥା କହିବ, ମନ କିଣିବାର ଯେତେ ସବୁ ଉପାୟ ଅଛି, ସେସବୁ ସହିତ ତା'ର ପରିଚୟ ନଥିଲା । ଏଇ ତଫାତ୍, ଏଇ ଅଭାବ ହିଁ ସୌଖିନ ବୀରେନ୍ଦ୍ର ଆଉ ତା' ମଧ୍ୟରେ ବିରାଗ ଆଉ ବିସ୍ୱାଦର ସୀମାରେଖା ଟାଣିବାରେ ପ୍ରମୁଖ କାରଣ ପାଲଟି ଯାଇଥିଲା । ବୀରେନ୍ଦ୍ର ତାରୁଣ୍ୟର ଉଚ୍ଛ୍ୱାସରେ ପ୍ରଗଳ୍‌ଭ । ଆଉ ସେ ଲଜ୍ଜାର ଅରଣ୍ୟ ଭିତରେ ମୁହଁ ଲୁଚେଇ ବସେ । ମଧ୍ୟଯୁଗୀୟ କାବ୍ୟନାୟିକାର ବୈଦଗ୍ଧ୍ୟ, ରସଗ୍ରାହୀତା ତା' ପାଖରେ ନ ଥିଲା । ସେ କେବଳ ପତ୍ନୀଟିଏ ହେବାକୁ ଋହିଁଥିଲା, ବୀରେନ୍ଦ୍ର କିନ୍ତୁ ତା' ଭିତରେ ପ୍ରେମ ବିଦଗ୍ଧା ପ୍ରଣୟିନୀଟିକୁ ବୋଧେ ଖୋଜୁଥିଲେ ଏବଂ ହତାଶ ହେଉଥିଲେ । "ଆବେଗଶୂନ୍ୟ କାଠଗଡ଼କୁ କି କେବେ ପ୍ରେମ କରାଯାଇପାରେ – ବିରକ୍ତି ପ୍ରକାଶ କରୁଥିଲେ ବୀରେନ୍ଦ୍ର । ସେତେବେଳକୁ ପ୍ରଥମ କନ୍ୟା ଆଦ୍ୟା ଏବଂ ପୁଅ ଜନ୍ମ ହୋଇସାରି ଧୀରେଧୀରେ କ୍ରମଶଃ ଦାମ୍ପତ୍ୟ ଜୀବନରେ ଶୂନ୍ୟସ୍ଥାନ ସୃଷ୍ଟି ହେଉଥିଲା । ବୀରେନ୍ଦ୍ର ଜଣେ ଭଲ ସଙ୍ଗଠକ ଥିଲେ – ପତ୍ନୀ, ସଂସାର ପୁଅଝିଅଙ୍କ ଆଡୁ ମୁହଁ ଆଡ଼େଇ ନେଇ ସେ ବାହାର ଦୁନିଆରେ ନିଜ ପରିଚୟ ଖୋଜିବାକୁ ଲାଗିଲେ ।

ଅପଳା ଅନେକ ସମୟ ଚୁପ୍ ହେଇ ବସି ରହିଲା – ହୁଏତ ତା' ମନରେ କିଛି ପ୍ରଶ୍ନ ଉଠି ତାକୁ ଅସ୍ତବ୍ୟସ୍ତ କରି ପକାଉଥିଲା ଏବଂ ନିଜ ଭିତରେ ତା'ର ଉତ୍ତର ଖୋଜିବାକୁ ଯାଇ ସେ କିଛି ସମୟ ମାଗିନେଲା ।

ମୁଁ କିନ୍ତୁ ତା'ର ଏକାଗ୍ରତା ଭାଙ୍ଗିବାକୁ ଋହୁଁନଥିଲି... ନେଉ ସେ କିଛି ସମୟ ତା' ଅନ୍ତଃକରଣରେ ସୃଷ୍ଟି ହେଉଥିବା ଦହନ ପ୍ରକ୍ରିୟା ନିର୍ବାପିତ ହେଉ, ନିଜ ସ୍ଥିତି ଭିତରକୁ ଆସିଲେ ନିଜେ ହିଁ ସେ ନିଜକୁ ପ୍ରକାଶ କରିପାରିବ । ଅପଳା ଘନଘନ ନିଃଶ୍ୱାସ ନେଉଥିଲା, ଆଖିରେ ଶୂନ୍ୟତା ଭରି ରହିଥିଲା ଏବଂ ସେ କାନ୍ଦୁଥିଲା ନିଜ ଭିତରେ ହୁଏତ । ଅନ୍ୟ ଆଗରେ ନିଜର ଦୁର୍ବଳତାକୁ, ଲୁହକୁ ଦେଖେଇବାକୁ ଋହୁଁ ନଥିଲା ନିଶ୍ଚୟ ।

ଏଇ କିଛିମାସ ହେଲା ମୋ' ସହିତ ତାର ବଂଧୁତା... ମୁଁ ଏଠାକାର ବେସରକାରୀ କଲେଜରେ ଅଧ୍ୟାପନା କରେ ଏବଂ ଅପଳା ତା' ପୁଅ ଅନୁପମ ସହିତ ଏଠି ରୁହେ – ମୋ ବସାଘରକୁ ଲାଗି ତା' ବସାଘର – ସେଇ ସୂତ୍ରରେ ତା'ସହିତ ମୋର ସଂପର୍କ । ଏଇ ସଂପର୍କ କେଜାଣି କେମିତି ଅନ୍ତରଂଗତାରେ ପରିଣତ ହେଇ ଦୁହିଁଙ୍କୁ ଏକାଠି ବାନ୍ଧି ରଖିଛି । ସେଇ କ୍ରମରେ ପରସ୍ପର ପରସ୍ପରର ସୁଖଦୁଃଖ ବାଣ୍ଟୁବାଣ୍ଟୁ ଅପଳାର ହଜିଲା ଅତୀତ ସଂଜିବୀତ ହେଇ ମୋତେ ଚକିତ କରିଛି । ଆଶ୍ୱିନର ଏଇ ଉଦାସ ଦି'ପହର ସେଇ ଦୁଃଖିନୀ, ନିପିଡ଼ୀତା ନାରୀଟିର କରୁଣ କାହାଣୀରେ କିଛିଟା ଭାରାକ୍ରାନ୍ତ ହେଇଉଠିଛି – କହିଲେ ଅତୁକ୍ତି ହେବନି ।

ଆମ ଦେଶରେ ଅନେକ ସ୍ୱାମୀ ପରିତ୍ୟକ୍ତା ନାରୀ ଅଛନ୍ତି । ସମସ୍ତେ ଦୋଷଦୁଷ୍ଟ ନୁହଁନ୍ତି,

ସଭିଙ୍କୁ ଏକାମାପରେ ମପାଯାଇ ପାରେନା । ଆଜି ସମୟ ବଦଳିଛି – ନାରୀ ନିଜକୁ ସ୍ୱାଧୀନ ବୋଲି ଦାବୀ କରିପାରୁଛି – ସ୍ୱାବଲମ୍ବୀ ହୋଇଛି । ନିଜ ଜୀବନର ଦାୟିତ୍ୱ ନିଜେ ନେବା ପାଇଁ ସମର୍ଥ । କିନ୍ତୁ ସେଦିନର ନାରୀ ପାଇଁ ଏସବୁ କିଛି ନ ଥିଲା । ସେ ଖୁବ୍ ଅସହାୟ ଥିଲା । ତଥାପି ସେ ସମର୍ପିତା ସ୍ୱାମୀ ପାଇଁ; ସ୍ୱାମୀ ପରିବାର ପାଇଁ – ବିବାହକୁ ପବିତ୍ର ବନ୍ଧନ ବୋଲି ମାନିନେଇ ପ୍ରତୀକ୍ଷା କରୁଥିଲା ଜନ୍ମଜନ୍ମାନ୍ତରକୁ ।

– ତା'ରି ମଙ୍ଗଳ କାମନା କରି ବ୍ରତ ଉପବାସ କରୁଥିଲା । ଏଇ ନିଷ୍ଠା ଏବଂ ପାତିବ୍ରତ୍ୟ ଅନ୍ତରାଳରେ ପ୍ରେମ ହିଁ ତ କାମ କରୁଥିଲା – ନିରୋଳା ଭଲପାଇବା ନ ଥିଲେ ଜଣେ କି କେବେ ନିଜ ସମଗ୍ର ଜୀବନ ଯୌବନକୁ ବଳି ଦେଇପାରେ ? ଅଥଚ ନାରୀର ଏଇ ଅନ୍ତଃସୌନ୍ଦର୍ଯ୍ୟକୁ ସ୍ୱାମୀ ନାମକ ପୁରୁଷଟି କେମିତି ଖୋଜି ପାଉନଥିଲା କେଜାଣି । ପରନାରୀ, ଅନ୍ୟଯୁବତୀଙ୍କ ଭିତରେ ସେଇ ପ୍ରେମ କୁ ସେ ଖୋଜି ବସୁଥିଲା ! ଅପଳା ମନରେ ଆଜି ଏଇ ପ୍ରଶ୍ନ ବାରଂବାର ଉଠି ତାକୁ ଅସ୍ତବ୍ୟସ୍ତ କରୁଛି – ସେଇଟା କି ପ୍ରକାର 'ପ୍ରେମ' ? ତା'ର ରୂପ କ'ଣ ?? ଆଜିଯାଏ ଏଇ ପରିଣତ ବୟସରେ ବି ତା'ର ଉତ୍ତର ସେ ଖୋଜି ପାଇନି ।

ହଠାତ୍ ଅପଳା କହିବାକୁ ଆରମ୍ଭ କଲା... ଶାଶୂଘରକୁ ଯିବା ଛ'ସାତ ବର୍ଷ ବି ଯାଇନି, ଆମ ଦାମ୍ପତ୍ୟ ଜୀବନ ଅଚଳ ହୋଇ ପଡ଼ିଲା – ସେତେବେଳକୁ ସେ ଅଧ୍ୟାପକ ଥିଲେ – କହୁଥିଲେ ସାହିତ୍ୟ ସାଧନା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ । ସତ କହୁଛି, ମୁଁ ସାହିତ୍ୟ କ'ଣ ବୁଝି ନଥିଲି କିନ୍ତୁ ଜୀବନକୁ ଚିହ୍ନିଥିଲି, ମା'ଟିଏର ହୃଦୟ ନେଇ ତାଙ୍କ ପିଲାଙ୍କ ଯତ୍ନ ନେଉଥିଲି, ଗୁରୁଜନଙ୍କ ସେବା କରୁଥିଲି, ଆତ୍ମୀୟସ୍ୱଜନଙ୍କ ମନ କିଣି ପାରିଥିଲି । ଚେଷ୍ଟା କରିଥିଲି ଜଣେ ସୁଗୃହିଣୀ ହେବା ପାଇଁ । ଦିନଦିନ ଧରି ଅପେକ୍ଷା କରୁଥିଲି ସ୍ୱାମୀ ନାମକ ପୁରୁଷଟି ପାଇଁ ଅଥଚ ମୁଁ କ'ଣ ଜାଣିଥିଲି ସେଇ ପ୍ରତୀକ୍ଷା ମୋର ପ୍ରତୀକ୍ଷାରେ ହିଁ ରହିଯିବ !...

... ବାହାରେ ବୀରେନ୍ଦ୍ରଙ୍କର ଆଦୃତି ବଢ଼ିଥିଲା । ସାହିତ୍ୟ, ସାହିତ୍ୟ ସଭା ଲେଖାଲେଖି କରି ସେ ନିଜ ପରିଚୟକୁ ମଜବୁତ କରିଥିଲେ... ଘର ସଂସାର ପୁଅଝିଅ, ବାପା-ମା', ପତ୍ନୀ ସବୁକିଛି ଭୁଲିଗଲେ – ଦାୟିତ୍ୱ ଶୂନ୍ୟ ହୋଇଗଲେ । ବାହାରେ ଗୁଜବ ଶୁଭିଲା ସେ ବାଟ ହୁଡ଼ିଛନ୍ତି ... ପ୍ରବୃତ୍ତିର ଶିକାର ହୋଇଛନ୍ତି । ଅତୀତ ଅତୀତ ହୋଇଯାଇଛି ... ବର୍ତ୍ତମାନର ଝକଚକ୍ୟ, ତାରୁଣ୍ୟର ସହଜ ଚପଳତା ଭିତରେ ତାଙ୍କ ଜୀବନ ଭିତରକୁ ଅନେକ ତରୁଣୀ ପଶି ଆସିଛନ୍ତି ।

ପରିବାରର ଲୋକେ ମନ କଷ୍ଟ କରିଥିଲେ ଏକଥା ଶୁଣି । କେହି କେହି ଅନେକ ପ୍ରକାର ଉପଦେଶ ବି ଦେଇଥିଲେ ମୋତେ – ମୁଁ ବା କ'ଣ କରିପାରିଥାନ୍ତି ... ମୁଁ ମୋ ସ୍ୱଧର୍ମରୁ କିମିତି ବିଚ୍ୟୁତ ହୋଇଥାନ୍ତି । ବୁଢ଼ାବୁଢ଼ୀ, ପିଲା ଦିହିଁଙ୍କୁ ନେଇ କୋଉ ବଣରେ ପଶିଥାନ୍ତି – ଏମାନଙ୍କ ଦାୟିତ୍ୱ ତ ମୋ' ଉପରେ । ଅପେକ୍ଷା କରିବା ଛଡ଼ା ଆଉ ବିକଳ୍ପ କିଛି ନଥିଲା ମୋ' ଆଗରେ – ସମୟ ଆଗଉ ଥିଲା... ପିଲାଏ ବଡ଼ ହେଉଥିଲେ ... ଆଖି ଆଗରେ ଅଂଧାର ...

ଦିନରେ କର୍ତ୍ତବ୍ୟ... ରାତିରେ ଲୁହ – ଏତିକି ହିଁ ଥିଲା ମୋର ସାଥି । ଅପଳା ଆଖିରୁ ଲୁହ ଝରିଲା ଏଥର ।

ଅପଳାର ଅସହାୟତା ମୋ' ଆଖିଆଗରେ ବିଶ୍ୱରୂପ ନେଇ ଠିଆ ହୋଇଥିଲା । ସତେତ, ଷାଠିଏ ଦଶକ ତଳେ ସମୟର ସ୍ଥିତି ତ ଏତେ ସହଜ ନଥିଲା । କ'ଣ କରିଥାନ୍ତା ଯୁବତୀ ବୋହୂଟିଏ । ସାମାଜିକ ରୀତି ବି ତ ତାକୁ କ୍ଷମା ଦେଇପାରି ନଥାନ୍ତା । କହିପାରିଥାନ୍ତା କି ସେ ମୁକ୍ତ ସ୍ୱାଧୀନ ହେବାକୁ ଚାହେଁ । ଏଇ ଲମ୍ପଟ ପ୍ରକୃତିର ମଣିଷକୁ ନେଇ ଘର କରି ପାରିବନି । ତା'ର ଆତ୍ମ ମର୍ଯ୍ୟାଦା ଅଛି ... ସେ ଖେଳନା ନୁହେଁ, କି ବସ୍ତୁ ନୁହେଁ – ସେ ମଧ୍ୟ ଅପରିହାର୍ଯ୍ୟ ହୋଇପାରେ – ନା, ସେ ପାରିନଥାନ୍ତା । ପାରିଥିଲେ ବି, ସମାଜ କ୍ଷମା ଦେଇ ନଥା'ନ୍ତା କେବେ । ବରଂ କୋଳେଇ କୁଟେଇ ଖାଇନେଇଥାନ୍ତା ତା' ଜୀବନକୁ ।

ଲୋକାପବାଦକୁ ପିଠି କରିଦେବା ତା' ପକ୍ଷେ ସମ୍ଭବ ନ ଥିଲା । ତା' ମନକୁ କିନ୍ତୁ ଚିହ୍ନିପାରିଲେନି ବୀରେନ୍ଦ୍ର, ଅଥବା ମନ ଭିତରକୁ ପଶିବାକୁ ହିଁ ଚାହିଁଲେନି । ସରଳତା ତା' ଜୀବନର କାଳ ହୋଇଗଲା । ବୀରେନ୍ଦ୍ରଙ୍କୁ ଥରେ ସେ ଗ୍ରହଣ କରିନେଇଛି ସ୍ୱାମୀ ଭାବେ ଅଗ୍ନିଙ୍କୁ ସାକ୍ଷୀ ରଖି । ତା' ହୃଦୟରେ ସେଇ ବସିଛନ୍ତି-ସମର୍ପିତା ସେ । ଏଇ ଐକାନ୍ତିକତା, ନିଷ୍ଠାର ଅଭାବରେ ଆଜି କେତେ ଦାମ୍ପତ୍ୟ ଜୀବନ ଭିତରେ ଫାଟ ସୃଷ୍ଟି ହେଉଛି, ତା'ର ହିସାବ ନାହିଁ – ମୋ' ଭିତରଟା ଆନ୍ଦୋଳିତ ହୋଇ ଉଠୁଥିଲା ଭାବୁ ଭାବୁ । ଅଥଚ ନିରୀହା ଅପଳା ଶିକାର ହୋଇଗଲା ।

"ବୀରେନ୍ଦ୍ର ସହିତ ତମର କେବେ ଏ ବିଷୟ ନେଇ ଆଲୋଚନା ହୋଇଛି ଅପଳା ?..." "ମୋର ଏତେ ସାହସ ନ ଥିଲା ଯୁକ୍ତିତର୍କ କରିପାରିଲା ଭଳି । ତା' ଛଡ଼ା, ଯୁକ୍ତିତର୍କ ଦେଇ, ଜବରଦସ୍ତ କାହାକୁ ନିଜର କରିହୁଏ ଅପା ? ସିଏ ପରା ମଣିଷ ! ତା'ର ତ ଗୋଟାଏ ମନ ଅଛି । ମୁଁ ମୂର୍ଖ, ନିରକ୍ଷରା ସତ, ଯା'ବୋଲି ମୋ' ଅନ୍ତରର ସୁଖଦୁଃଖ ଭାବଭାବନା, ଆବେଗ, ଅନୁଭବ କ'ଣ ପାଠୁଆ ଝିଅଠୁ ଭିନ୍ନ ? ଏତେବର୍ଷ ପୁଅଝିଅ ନେଇ ଏକା ଛାତତଳେ ଘରକଲା ପରେ ଏକଥା ପୁଣି ଖୋଲି କହିବାକୁ ହେବ ?" ... ସତେ ତ ଅପଳାର ପ୍ରଶ୍ନରେ କିଛି ଭୁଲ ନାହିଁ, "ତଥାପି... ନିଜ ବିଚାରକୁ ଥରେ ବୀରେନ୍ଦ୍ରଙ୍କ ଆଗରେ ଥୋଇବା ପାଇଁ କେବେ ଚିନ୍ତା କରିନ... ପଚାରିଲି ମୁଁ ..." କରିଛି, ଅଭିମାନରେ ଲୁହ ଝରେଇଛି । ଫଳ କିଛି ହେଇନି । ସେ ସ୍ପଷ୍ଟ ଭାବେ ଦିନେ ଜଣେଇ ଦେଇଥିଲେ, "ଆମ ଦୁହିଁଙ୍କ ବିଚାର ଭିନ୍ନ ରାସ୍ତା ଭିନ୍ନ ଦୁହେଁ ଦୁହିଁଙ୍କର ପରିପୂରକ ହେଇପାରିବାନି କେବେ । ମୋ' ଜୀବନର ବଡ଼ ଗୋଟିଏ ସ୍ୱପ୍ନ ଅଛି । ସେଇ ସ୍ୱପ୍ନକୁ ମୁଁ ସାକାର କରିବାକୁ ଚାହେଁ ... ତା' ପାଇଁ ମୋତେ ଲମ୍ବା ରାସ୍ତା ଚାଲିବାକୁ ପଡ଼ିବ । ତମେ ପାରିବନି । ମୋ ସହିତ ପାଦ ମିଶେଇ ଚାଲିପାରିବନି । ବରଂ ମୁଁ ଏକା ଚାଲିଲେ ଖୁବ୍ ଶୀଘ୍ର ଲକ୍ଷ୍ୟ ସ୍ଥଳରେ ପହଞ୍ଚି ଯିବି... ।"

ଏକଥା ଶୁଣି ମୁଁ ସେଦିନ ପଥର ପାଲଟି ଯାଇଥିଲି – ମୋ ରକ୍ତପ୍ରବାହ ବରଫ ପାଲଟି

ଯାଇଥିଲା - ଆଖି ଆଗରେ ଅନ୍ଧାରର ସମୁଦ୍ର - ଅନେକ ସମୟ ଧରି ମୋ ମୁହଁରୁ କଥା ଫିଟି ନ ଥିଲା । ଭାବୁଥିଲି, ବାହାରେ ତାଙ୍କର ଅନେକ ପ୍ରଶଂସକ - ତା' ଛଡ଼ା ସମାଜ, ଈଶ୍ୱର, କିମ୍ବା ସଂସ୍କାରକୁ ତାଙ୍କର ଖାତିରି ନ ଥିଲା... "ଲୋକେ କେତେଦିନ କହିବେ, କହି କହି ତ ଥକିଯିବେ ଦିନେ- କୁହନ୍ତୁନା ସେମାନଙ୍କ କହିବାକୁ ଖାତିରି କରି ଦୁର୍ଲଭ ଜୀବନଟାକୁ ନଷ୍ଟ କରିଦେବିନି ତ-" ଯାହା ହୋଇଯାଇଛି, ହୋଇଯାଇଛି ଅତୀତ ପାଖରେ ମୁଁ ବନ୍ଦି ହୋଇ ରହିପାରିବି ନାହିଁ..." ।

ଏହାପରେ ମୋ' ପାଖରେ ଆଉ କ'ଣ କହିବା ପାଇଁ ଥିଲା ଅପା, ସବୁକଥା ତ ଏଇ ପଦକରେ ଶେଷ ହୋଇଗଲା । ସେ କ'ଣ ଚାହୁଁଥିଲେ, କ'ଣ ଖୋଜୁଥିଲେ, ଜାଣେନା ମୁଁ । "-ଏକଥା କ'ଣ ବୀରେନ୍ଦ୍ର ଭାବିପାରି ନ ଥିଲେ- ନାରୀର ନାରୀତ୍ୱ ନେଇ ଖେଳିବା ଆଗରୁ ନିଜ ପସନ୍ଦ ଅପସନ୍ଦ କଥା ଚିନ୍ତା କରିବାର ଥିଲା - ପୁଣି ଦୁଇ ଦୁଇଟି ସନ୍ତାନର ବାପ ହୋଇସାରିବା ପରେ, ଜଣେ ଦାୟିତ୍ୱସଂପନ୍ନ ପୁରୁଷଠାରୁ ଏଭଳି"... ... ମୋ'ପାଟିରୁ କଥା ଛଡ଼େଇ ନେଇ ଅପଳା ବଡ଼ କରୁଣ ସ୍ୱରରେ କହିଲା, ସେ ପୁରୁଷ ଅପେକ୍ଷା ବେଶି ପ୍ରେମିକ ଥିଲେ ପ୍ରେମର ମନ୍ଦିର ପ୍ରତିଷ୍ଠା କରି ବସେଇଥିଲେ ପ୍ରେମର ଦେବୀଙ୍କୁ । ମାଧବୀ ତାଙ୍କର ପ୍ରଣୟିନୀ - ପତ୍ନୀର ମର୍ଯ୍ୟାଦା ନେଇ ସେ ଘରକୁ ଆଣିଥିଲେ । ସେ କୁଆଡ଼େ ଉପଯୁକ୍ତ ସିଙ୍ଗିନୀ । ନୂଆ ଘର, ନୂଆ ସଂସାର ନେଇ ସେ ମସ୍‌ଗୁଲ୍ । ମୁଁ ପଡ଼ି ରହିଲି ତୁଠପଥର ଭଳି ଗାଁରେ । ଅବଶ୍ୟ ଶାଶୂ ଶ୍ୱଶୁର, ଆତ୍ମୀୟସ୍ୱଜନ ମୋତେ ସମର୍ଥନ କରିଥିଲେ । ଆଜି ବି ମୁଁ ବିଷୋୟୀ ବଂଶର ବୋହୂ । ବୀରେନ୍ଦ୍ରଙ୍କ ପ୍ରଥମା ପତ୍ନୀ, ପରିତ୍ୟକ୍ତା । ଏମାନଙ୍କ ସାହାଯ୍ୟ ଏବଂ ସହଯୋଗ ନ ପାଇଥିଲେ ମୋ' ସ୍ଥିତି ଯେ କ'ଣ ହୋଇଥାନ୍ତା ମୁଁ ଭାବିପାରୁନି । ମାନସିକ ସ୍ତରରେ ମୋ' ପାଇଁ ମୋ ପିଲାଙ୍କ ପାଇଁ ଏତିକି ହିଁ ସାନ୍ତ୍ୱନା । ଦୀର୍ଘଶ୍ୱାସ ନେଲା ଅପଳା । ତା' ଆଖିରୁ ଲୁହ ଝରିଆସିଲା ।

ମୁଁ ଚକିତ ହେଇ ଚାହିଁଥିଲି ତା' ମୁହଁକୁ । କି ପ୍ରକାର ଆଶ୍ୱାସନା ତାକୁ ଦେବି ! କୋଉ ଆଶ୍ୱାସନା ତା' ଭିତରର ଦହନକୁ ଶୀତଳ କରିବାରେ ସମର୍ଥ ହେବ ! ଅପଳା ନିଜ ପାଇଁ କେବେ ଲଢ଼ିନି । ପତ୍ନୀର ଅଧିକାର ମାଗିନି ଅଭିମାନରେ । ତା' ଚଲାବାଟ କୁସୁମିତ ହୋଇନି, ବରଂ ଆଞ୍ଜୁଳା ଆଞ୍ଜୁଳା ନିଆଁ ପିଇଛି - ନିଆଁରେ ଚାଲିଛି ଓ ଚାଲୁଛି ମଧ୍ୟ ଆଜିଯାଏ ।

ବୀରେନ୍ଦ୍ର କିନ୍ତୁ ବାହାରେ ନିଜ ଦୁନିଆକୁ, ନିଜ ଘରିପାଖର ପୃଥିବୀକୁ ଚମତ୍କାର ଭାବେ ସଜାଡ଼ି ରଖିଛନ୍ତି । ସ୍ତାବକଙ୍କ ଜୟଗାନରେ ତାଙ୍କର ତାରୁଣ୍ୟ - ପ୍ରତିଟି ମୁହୂର୍ତ୍ତରେ ଉଛୁଳି ଉଠିଛି । ଜୀବନ ଯୌବନକୁ ଭରପୂର ଉପଭୋଗ କରିଛନ୍ତି । ସେ ଯଶପ୍ରିୟ, ତା' ପାଇଁ ସେ କ୍ଷେତ୍ର ପ୍ରସ୍ତୁତ ବି କରି ରଖିଛନ୍ତି ।

ତାଙ୍କର ପ୍ରଶଂସକମାନେ କୁହନ୍ତି - ବୀରେନ୍ଦ୍ର ବିଶ୍ୱର ମଂଗଳ ପ୍ରକ୍ରିୟାରେ ଜଡ଼ିତ । ତାଙ୍କ ଜୀବନ ଦେଶଦଶର ମଂଗଳ ନିମିତ୍ତ ସମର୍ପିତ । ସେ କେବଳ ଚିର ସବୁଜ ନୁହନ୍ତି, ମହତାଙ୍କାକ୍ଷୀ ମଧ୍ୟ । ସକାରାତ୍ମକ ଚିନ୍ତା ସବୁବେଳେ - ସେଇ ଶିକ୍ଷା ହିଁ ସେ ଦେଇ ଆସିଛନ୍ତି

ତାଙ୍କର ପ୍ରିୟଜନଙ୍କୁ କୁଆଡ଼େ । ସବୁବେଳେ ଆଦର୍ଶର କଥା ତୁଣ୍ଡରେ - ତାଙ୍କ ସାମ୍ରାଜ୍ୟ ସୁଖର,. ତାଙ୍କର ସମଗ୍ର ଜୀବନ ବସନ୍ତର, ସେ ଜଣେ ସଂଗଠକ, ସମାଜସେବୀ ... ଆହୁରି ଅନେକ କିଛି ।

.... ସ୍ୱାମୀ ବୀରେନ୍ଦ୍ରଙ୍କ ଗୁଣାବଳୀର ହିସାବ ଦେଉ ଦେଉ ଅପଳା ହସିଲା ସେଇ ହସ ଭିତରେ କେତେ ବିତୃଷ୍ଣା, କେତେ ବିସ୍ୱାଦ, କେତେ କାରୁଣ୍ୟ ଲୁଚି ରହିଥିଲା, ପାଟି ଖୋଲି ନ କହିଲେ ବି, ମୁଁ ଉପଲବ୍ଧି କରିପାରୁଥିଲି, ସେ ତାଚ୍ଛଲ୍ୟର ବ୍ୟଞ୍ଜନାକୁ । ଜୀବନ ତାକୁ କିଛି ଦେଇନି ସତ, ହେଲେ ଜୀବନର ଅଭିଜ୍ଞତା କିଛି କମ୍ ନୁହେଁ । ବୀରେନ୍ଦ୍ର ନିଜ ଅପରାଧବୋଧକୁ ବହୁ ପ୍ରକାରେ ଘୋଡ଼େଇ ଦେଇଛନ୍ତି । ଖୁବ୍ ମେଳାପୀ, ବେଶ୍ ସାମାଜିକ ସେ, ତାଙ୍କର କୌଣସି ଆତ୍ମଗ୍ଲାନି ନାହିଁ - ଅତୀତକୁ ପଛରେ ରଖି ଆଗାମୀ ଦିନ ପାଇଁ ନିଜକୁ ପ୍ରସ୍ତୁତ ରଖିବା ତାଙ୍କର ଅଭ୍ୟାସ । ଏବେ ସମସ୍ତେ ମନେ ରଖିଛନ୍ତି ସମାଜସେବୀ, ବିଶିଷ୍ଟ ସଂଗଠକ, ସାହିତ୍ୟିକ, ବାଗ୍ମୀ ବୀରେନ୍ଦ୍ର ବିଷୋୟୀଙ୍କୁ । ହେଲେ କେହି ମନେ ରଖିନଥିବେ - ସୋମପଡ଼ା ସୁନାନଈ ଏକୂଳରେ ଭରା ଯୌବନର ତରୁଣୀଟିଏ ଅବୋଧ ଶିଶୁ ଦିଓଟିଙ୍କୁ ନେଇ, ନଈ ସେପାରି ଶୂନ୍ୟ ବାଲୁବନ୍ତକୁ ଚାହିଁ ... ଜଣକ ପାଇଁ ଅନନ୍ତ ପ୍ରତୀକ୍ଷା କରୁକରୁ ଦୀର୍ଘଶ୍ୱାସ ଛାଡୁଥିବ - କେହିବି ମନେ ପକାଉନଥିବେ ଏତେଗୁଣ, ଆଉ ବିଶେଷଣର ଅଧିକାରୀ ବୀରେନ୍ଦ୍ର ବିଷୋୟୀଙ୍କ ସଫଳ ଜୀବନର ବିଜୟ ବୈଜୟନ୍ତୀ ଯେ, ଏଇ ଶୋଷିତା, ଲୁଣ୍ଠିତା, ନିପୀଡ଼ିତା ନାରୀଟିର ଅସୀମ ତ୍ୟାଗର ଏକାନ୍ତ ଫଳଶ୍ରୁତି - କେହି ମନେପକାଉ ନଥିବେ ଏକଥା । ଏହା ହିଁ ନାରୀ ଜୀବନର ବିଡ଼ମ୍ବନା ।

ଆଜିବି ଏଇ ପରିଣତ ବୟସରେ ଝିଅ-ଜୋଇଁ, ପୁଅ-ବୋହୂ ନାତି-ନାତୁଣୀଙ୍କ ଗହଳରେ ଥାଇ ମଧ୍ୟ ଅପଳା ଆଖିରୁ ଲୁହ ଝରୁଛି । ସେ ଭାବୁଛି ତା'ର ସମଗ୍ର ଜୀବନଟା ଯେମିତି ଅନ୍ୟମାନଙ୍କର ଦୟାର ଦାନ । ନିଜକୁ ଯେତେ ସ୍ୱାଧୀନ ବୋଲି ଭାବିଲେ ମଧ୍ୟ ତାର ନିରପରାଧ ଆତ୍ମା ବାହୁନୁଛି ଲୁଚେଇ ଲୁଚେଇ, ସେ ଅନେକ କିଛି ପାଇ ପାରିଥାନ୍ତା-ସୁଖ, ଅଧିକାର, ଗୌରବ, ମର୍ଯ୍ୟାଦା, ପରିଚୟ ଅନେକ କିଛି । ଏସବୁ ତ ତା'ର ପାଇବାର ଥିଲା, ତା' ପିଲାଙ୍କର ପାଇବାର ଥିଲା ... କହିଲାବେଳେ ଅପଳା ଆଖିରେ ଅଗ୍ନିର ସ୍ଫୁଲିଙ୍ଗ ଝଲସି ଉଠିଲା ମୁହୂର୍ତ୍ତକରେ ।

ମୁଁ ହଠାତ୍ ପ୍ରତିବାଦର କଣ୍ଠରେ କହିଲି, ନା, ଅପଳା, ନା ତୁମେ ନିଜକୁ ବଂଚିତ ମନେ କରନ୍ତି । ତୁମେ ଅନ୍ୟକୁ ସମସ୍ତ ସୁଖ ସଂପଦ, ଐଶ୍ୱର୍ଯ୍ୟ, ପରିଚୟ ଏବଂ ଅଧିକାରକୁ ଦାନ ଦେଇ ରିକ୍ତ ହେଇନ ବରଂ ପରିପୂର୍ଣ୍ଣା ହେଇଯାଇଛ । ତୁମେ ଏସବୁ ଦେଇନଥିଲେ ଅନ୍ୟଜଣକ କେମିତି କୋଉଠୁ ପାଇଥାନ୍ତା ? ବରଂ ସେମାନେ ତୁମ ପାଖରେ କୃତଜ୍ଞ । ତୁମ ଦୟାର ଦାନରେ ତା'ର ତଥାକଥିତ ପ୍ରେମର ସାମ୍ରାଜ୍ୟ । ତୁମ ତ୍ୟାଗ, ତୁମ ଦାନ, ତୁମ କ୍ଷମାର ତୁଳନା ନାହିଁ, ଏଇ ତ ଭାରତୀୟ ନାରୀର ଅନନ୍ୟ ଗୁଣ । କିଛି ସମୟ ସ୍ଥିର ଭାବେ ମୋ

ମୁହଁକୁ ଚାହିଁ ରହିଲା ଅପଳା । ସତେଯେମିତି ସେ ନିଜକୁ ନୂଆକରି ଚିହ୍ନିଲା, ଅଥବା ତାକୁ ଆଶ୍ଚର୍ଯ୍ୟ ଲାଗୁଥିଲା ମୋର ବ୍ୟାଖ୍ୟା ।

ମୁଁ କିନ୍ତୁ ଅନ୍ୟକଥା ଭାବୁଥିଲି; ଭାବୁଥିଲି ଏକ ସୁସ୍ଥ, ସ୍ୱାଭାବିକ, ଶୃଙ୍ଖଳିତ ସୁଖୀ ପାରିବାରିକ ଜୀବନ ଗଢ଼ିବାକୁ ହେଲେ ଆମ ନିଜ ଦୃଷ୍ଟିକୋଣକୁ ବଦଳେଇବାକୁ ହେବ ଏବଂ ତା' ସହିତ ସମାଜର ଦୃଷ୍ଟିକୋଣକୁ ମଧ୍ୟ । କେବଳ ପ୍ରବୃତ୍ତିର ଦୋଷ ନ ଦେଇ ନିଜକୁ ସଂଯମିତ କରିବା ଆବଶ୍ୟକ । ପ୍ରବୃତ୍ତି ତ ସଭିଙ୍କ ଭିତରେ ଅଛି ରହିବ ବି । ସେଥିରେ ଭାସିଗଲେ ତ ହେବନି । ଏଥିରେ ପାରିବାରିକ ଜୀବନ ବିପର୍ଯ୍ୟସ୍ତ ହୋଇଯିବ । ନାରୀ ହନ୍ତସନ୍ତ ହେଉଥିବ । ଏବଂ ପୁରୁଷ ନିଜ ସୁଖ, ସୁବିଧା ସ୍ୱାଚ୍ଛନ୍ଦ୍ୟ ଓ ଅଧିକାର ଆଳରେ ନାରୀକୁ ଶୋଷଣ ଓ ଲୁଣ୍ଠନ କରି ଚାଲିଥିବ ଅଥଚ ନାରୀଟିଏ ହସିଲେ, କାଶିଲେ କି ଆଖି ଉଠେଇ ଚାହିଁଦେଲେ ସମାଜ ତାକୁ କ୍ଷମା କରିବନି, କଳଙ୍କିନୀର ଆଖ୍ୟା ଦେବାକୁ ପଛେଇବନି । କିନ୍ତୁ ପୁରୁଷ ପାଇଁ କୌଣସି ଲକ୍ଷ୍ମଣରେଖା ନାହିଁ – ସେ ବିପଥଗାମୀ ହେଲେ କେହି କହିବେନି ତାକୁ ଦୁଃଶ୍ଚରିତ୍ର ବୋଲି ବରଂ ଯୁକ୍ତି ଥୋଇବେ, ଏସବୁ ପୁରୁଷପଣ । ନହେଲେ ଆଜି ବୀରେନ୍ଦ୍ରଙ୍କୁ ସମାଜ ଏତେ ଜୟଜୟକାରରେ ପୋତିପକାନ୍ତା କିମିତି !! କୁହନ୍ତା କିମିତି, ଚନ୍ଦ୍ରରେ ବି ତ କଳଙ୍କ ଅଛି - ସିଏ ସୁନ୍ଦର ମନୋମୁଗ୍ଧକର, ବୀରେନ୍ଦ୍ରଙ୍କର ଏଇଟା ପୌରୁଷ – ଅବଶ୍ୟ ଏଇଟା ଅପଳାର କ୍ଷୋଭୋକ୍ତି ।

ମୁଁ ମଧ୍ୟ ତା'ର ଆରୋପକୁ ପ୍ରତ୍ୟାଖ୍ୟାନ କରିପାରିଲିନି । ତଥାପି ନାରୀ ଚିରକାଳ କ୍ଷମାମୟୀ । ସେ ବୀରେନ୍ଦ୍ରଙ୍କୁ କ୍ଷମା କରିଛି ତା' ଲୁହର ବିନିମୟରେ । କଥା ସାରିଲା ବେଳକୁ ଆଶିଣ ଆକାଶରେ ସଂଜ ଆସିବ ଆସିବ ହେଉଥିଲା । ଚମତ୍କାର ଆଲୁଅର ଆଭାରେ ଅପଳାର ବିଷଣ୍ଣ ମୁଖମଣ୍ଡଳ ଝଲସି ଉଠିଲା ମୁହୂର୍ତ୍ତକ ପାଇଁ । ମୋତେ ଲାଗିଲା ଇଏ ମାନବୀ ନୁହେଁ, ସହନଶୀଳତାର ମୂର୍ତ୍ତିମନ୍ତ ଦେବୀ କ୍ଷମାମୟୀ ।

ଭାବର ଆବେଗରେ ମୁଁ ହଠାତ୍ ଉଠିପଡ଼ିଲି ଯୋଡ଼ହସ୍ତ ହୋଇ । ଅପଳା ଚମକି ଉଠିଲା ମୋର ଏଇ ପ୍ରଣାମ ମୁଦ୍ରା ଦେଖି । କହିଲା, ଏ କ'ଣ ଅପା, କାହାକୁ ପ୍ରଣାମ କରୁଛ ?

ତୁମକୁ । ତୁମ ଭିତରର ସେଇ ଅନନ୍ୟ ନାରୀକୁ ! ଯିଏ ଅନ୍ୟମାନଙ୍କ ସୁଖ ପାଇଁ ସମଗ୍ର ଜୀବନକୁ ଉତ୍ସର୍ଗ କରିଦେଇଛି ।



# ଅନୁଭବର ଫ୍ରେମ୍‌ରେ ବୟସ 'ଅଠାବନ'

ବର୍ଷ କି ମାସରେ ନୁହେଁ, ସପ୍ତାହ କି ଦିନରେ ନୁହେଁ, ଘଣ୍ଟାରେ ମାପିଲେ ଆଉ ମାତ୍ର ଛବିଶ ଘଣ୍ଟାରୁ ବି କମ୍, ତାଙ୍କୁ ଅଠାବନ ପୂରିବ, ସରକାରୀ ଭାବେ । ତିଥି ଦେଖିଲେ ଆଉ ଛ'ସାତ ଦିନ ଏପାଖସେପାଖ । ତେବେ ଯୋଉଦିନ ଏଇ ସାମ୍ନା କାନ୍ଥରୁ କ୍ୟାଲେଣ୍ଡରଟା ସୂଚେଇଦବ ଯେ, ଆଜି ତିରିଶ ତାରିଖ, ତିନି-ଆଉ ଶୁନ୍ ମିଶି ଏକ ହୋଇଯିବେ ଏବଂ କହିବେ, ଆମେ ତିରିଶ୍ କହୁଛୁ- 'ତମ ସମୟ ସରିଗଲା ଏଥର' ।

ଏଇ ମାସ ଶେଷରୁ ତାଙ୍କ କାର୍ଯ୍ୟକାଳ ପୂରିଯିବ ଏବଂ ସେ ଅବସର ନେବେ । ଅବଶ୍ୟ ସେ ଜନ୍ମ ହେଇଥିଲେ ବାଇଶ ତାରିଖରେ । ସରକାରୀ ନିୟମ ଅନୁସାରେ ଆଠ ଦିନ ଅଧିକା ପାଇଲେଣି ।

ନିତିଦିନ ଭଳି ଆସୁଥିବା 'ତିରିଶ ତାରିଖ'- ଦିନଟାର ବି ସେମିତି କିଛି ନୂତନତା ନ ଥିବ । ସେଇ ପୁରୁଣା ସୂର୍ଯ୍ୟ, ପୁରୁଣା ପୃଥିବୀ, ସବୁ ପୁରୁଣା । ଅନନ୍ତକାଳ ଧରି ବହିଆସିଛି ଗୋଟାଏ ନିର୍ଦ୍ଦିଷ୍ଟ ଧାରାରେ, ରୂପରେ, ଛନ୍ଦରେ । ତଥାପି ... ବ୍ୟକ୍ତିଗତ ଅନୁଭବର ମାନଚିତ୍ରରେ ଗୋଟିଏ ଗୋଟିଏ ଦିନ କାହିଁକି ଯେ ଏମିତି ଆଙ୍କି ହେଇ ରହିଯାଏ, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । କେତେ ବିଚିତ୍ର ଏଇ ସମୟର ଖେଳ ! ପୁଣି ଲାଗେ, ଏମିତି ରେଖାଙ୍କିତ ନ ହେଇଥିଲେ, ମଣିଷ ମାପନ୍ତା କେମିତି ସମୟକୁ, ଦିନକୁ, ମାସକୁ, ବର୍ଷକୁ ଓ ସର୍ବୋପରି ଆପଣାକୁ ।

ଭାବୁ ଭାବୁ ଦୀର୍ଘଶ୍ୱାସ ପକେଇଲା ଅରିନ୍ଦମ ।

କେଡ଼େ ଶୀଘ୍ର ସମୟ ସରିଆସିଲା । ଦେଖୁ ଦେଖୁ ଅଠାବନ ବର୍ଷ । ଅଥଚ ଭାବିଲେ କେଡ଼େ ଲମ୍ବା ରାସ୍ତା, କେତେ ଦୀର୍ଘ ସମୟ । ଘଟଣାବହୁଳ, ସରିଗଲା ତ କେମିତି ।

ଅରିନ୍ଦମ ଆଶ୍ଚର୍ଯ୍ୟ ହେଇ ନିଜକୁ ଋହିଁଲେ । ସତେ ଯେମିତି ନୂଆକରି ନିଜକୁ ଦେଖୁଛନ୍ତି, ସେଇମିତି ଋହିଁଲେ । ତାଙ୍କୁ ଲାଗିଲା, ହେଇତ ସେ ସ୍କୁଲରୁ ଫେରୁଛନ୍ତି ବ୍ୟାଗ୍ ବସ୍ତାନି ଧରି । ମାଟ୍ରିକ ପରୀକ୍ଷା ଫଳ ବାହାରିଛି । ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଛନ୍ତି । ଏଥିପାଇଁ କି ପରିଶ୍ରମ ! ବାପା ବୋଉ, ଶିକ୍ଷକ ସମସ୍ତେ ଆଶା ରଖିଥିଲେ ତାଙ୍କଠି । ସବୁବେଳେ ତାଗିଦ୍ ବାପା ବୋଉଙ୍କୁ, 'ପାଠ ପଢୁ ପଢୁ ତ ଶୋଉଛୁ, କିଛି କରିପାରିବୁନି ଜୀବନରେ... ଅଳସୁଆଟା ।' ଛାଡ଼, ଦୀର୍ଘଶ୍ୱାସ ଛାଡ଼ିଲେ ଅରିନ୍ଦମ । ଯାହା ବି ହେଉ, ସବୁ ପିଲାଙ୍କ ଆଗରେ ତ ସେ ଥିଲେ । ସ୍କୁଲ ଜୀବନରେ ସେ ସବୁଶ୍ରେଣୀରେ ସବୁବେଳେ ପ୍ରଥମରେ ହିଁ ରହୁଥିଲେ । ସେଥିପାଇଁ ଶିକ୍ଷକ ମହଲରେ ତାଙ୍କର ଆଦର ବେଶି ଥିଲା । ତା'ପରେ କଲେଜ ଜୀବନ - ବିଜ୍ଞାନ ପାଠ । ସବୁ ମନେ ଅଛି । ପ୍ରତିଟି ବିଷୟକୁ ଟିକିନିଖି କରି ନ ବୁଝିଲେ ସେ ହଟୁନଥିଲେ ।

ଭାବିଥିଲେ, ଇଞ୍ଜିନିୟରଟେ ହେବେ । ହେଲେ ଭଲ ଲାଗିଲାନି । ଖରାତରା ସମ୍ଭାଳି ଫିଲଡ୍‌ରେ କାମ କରିବା ତାଙ୍କ ପାଇଁ ସମ୍ଭବ ହେବନି । ବରଂ ଡାକ୍ତରଟିଏ ହେବେ । ତାଙ୍କ ଜିଜ୍ଞାସୁ ମନ ମଣିଷର ଭିତର ବାହାର ସବୁ ଦେଖିବାକୁ ତତ୍‌ପର ହେଇ ଉଠିଥିଲା । ଠିକ୍ କରିଥିଲେ ସେ ମଣିଷର ସେବା କରିବେ । ପୂର୍ବପୁରୁଷରୁ ଚଳି ଆସିଛି, ଏଇ ସେବା ପରଂପରା । ବାପା, ଜେଜେବାପା ସମସ୍ତେ ଏଇ ସେବା କରି ଆସିଛନ୍ତି । କେତେ ମାନସମ୍ମାନ ସେମାନଙ୍କର ସମାଜରେ । ସେ ଉଜ୍ଜ୍ୱଳ ପରଂପରାକୁ ସେ ମଧ୍ୟ ଋଲୁ ରଖିବେ ଏବଂ ଶେଷରେ ସେ ଡାକ୍ତରଟିଏ ହିଁ ହେଲେ ।

ଆଜିକୁ ଚଉତିରିଶି ବର୍ଷ ପୂର୍ବେ ସେ ଆରମ୍ଭ କରିଥିଲେ ଋକିରି ଜୀବନ ସରକାରୀ ଭାବେ । କିନ୍ତୁ ବାପା, ଦଦେଇ ପରାଧୀନ ଭାରତବର୍ଷରେ ସ୍ୱାଧୀନ ଭାବେ ନିଜ ବ୍ୟବସାୟ ଆରମ୍ଭ କରିଥିଲେ । ଅବଶ୍ୟ ସେମାନେ ବ୍ୟବସାୟୀ କମ୍, ମଣିଷ ସେବା ହିଁ ବେଶି କରୁଥିଲେ, ତା' ସହିତ ଥିଲା ଦେଶସେବା । ସ୍ୱାଧୀନତା ଆନ୍ଦୋଳନର ବେଳ । ଗାନ୍ଧିଜୀଙ୍କ ଡାକରା, ମଣିଷଠୁ ଆଉ କିଛି ବଡ଼ ନୁହେଁ । ମୂଲ୍ୟବୋଧ ଅଲଗା ଥିଲା । ତଥାପି ସଂସାର ଚଳେଇବାକୁ ହେବ । ସେଇଥିପାଇଁ ଯାହା ତାକୁ ବ୍ୟବସାୟ ନାଁ ଦେବା କଥା । ଆୟୁର୍ବେଦ ଶାସ୍ତ୍ରରେ ସେମାନେ ଧୁରୀଣ ଥିଲେ । ରୋଗ, ରୋଗୀ ଦେଖିବା ବାହାନାରେ ଜନଜାଗରଣ ସୃଷ୍ଟି କରିବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ।

ଆଉ ସେ ସ୍ୱାଧୀନ ଭାରତରେ ସରକାରୀ ଋକିରି କରି ପରାଧୀନତା ବରଣ କରିଥିଲେ ବୋଲି ତାଙ୍କର ସ୍ୱାଧୀନତା ସଂଗ୍ରାମୀ ବାପା ଋକିରିରେ ଯୋଗ ଦେବାପାଇଁ ଯିବା ପୂର୍ବରୁ ଆଶୀର୍ବାଦ ନେବାକୁ ଗଲାଦିନ, ବେଶ୍ କଠୋର ଭାବେ ଟିପ୍ପଣୀ ମଧ୍ୟ କରିଥିଲେ ।

ସେ କିନ୍ତୁ କୌଣସି ଉତ୍ତର ନ ଦେଇ ପାଦଛୁଇଁ ଉଠିଯାଇଥିଲେ ଚୁପ୍‌ଋପ୍ । ବାପାଙ୍କର ଭାବାବେଗ ତାଙ୍କୁ ଅଜଣା ନ ଥିଲା । ସେମାନଙ୍କ ଜୀବନ ଥିଲା ଉତ୍ସର୍ଗୀକୃତ । ଏବେ ସମୟ ବଦଳିଛି । ଶିଖିବା ପାଇଁ ଅନେକ ଦିଗନ୍ତ ଖୋଲା ହେଇଛି ପୁଣି ତାଙ୍କ ଆଗରେ ଅନେକ

ଦାୟିତ୍ୱ ବି । ଆଦର୍ଶକୁ ବିକିଭାଙ୍ଗି ତ ପେଟ ପୋଷି ହେବନି । ନିଜ ସହିତ ଆହୁରି ଚାରି ପାଞ୍ଚଟା ପେଟ କଥା ଚିନ୍ତା କରିବାକୁ ପଡ଼ିବ । ଏ ସ୍ଥଳେ ତାଙ୍କ ପାଇଁ ଚାକିରିର ସୁରକ୍ଷା ନିହାତି ଆବଶ୍ୟକ । ତଥାପି ତାଙ୍କର ଗର୍ବ ଥିଲା ଯେ, ସ୍ୱାଧୀନ ଭାରତବର୍ଷରେ ସେ ଚାକିରି କରିଛନ୍ତି । ନିଜ ଦେଶ, ଆପଣା ମଣିଷର ସେବା କରିବେ, ଲଜ୍ଜିତ ହେବାର କିଛି ନାହିଁ । ଏହି ଅଙ୍ଗୀକାର ନେଇ ସେ ଯୋଗ ଦେଇଥିଲେ ଚାକିରିରେ । କ୍ଷେତ୍ର ଥିଲା ଆଦିବାସୀ ଅଧ୍ୟୁଷିତ ଜିଲ୍ଲା ଫୁଲବାଣୀର ଗୋଟାଏ ସ୍ୱାସ୍ଥ୍ୟକେନ୍ଦ୍ର । ଆଜି ତା' ପରିଚୟ କିଛିଟା ଭିନ୍ନ । ଅନେକ ସୁବିଧା ହେଲାଣି । ସେ ସବୁଦିନର ରୋମାଟାଙ୍କୁରା କଥା ଶୁଣିଲେ ପିଲାଙ୍କ ଛାତି ଆଜି ଥରି ଉଠୁଛି । କିଏ ଯିବ ସେସବୁ ଯାଗାକୁ । ପାହାଡ଼, ଜଙ୍ଗଲ, ମ୍ୟାଲେରିଆ, ଡାଉଁଶ ଭିତରେ ପଶିପଡ଼ିବାକୁ । ସେଠି ସେବାଦାନ କଲେ କିଏ ଚିହ୍ନିବ ତମକୁ । ଆଜିର ମଣିଷ ପାଇଁ ନିଜ ପରିଚୟଟା ବଡ଼ କଥା । ସମୟ ସାଥିରେ ତା'ର ପରିଚୟ ବଦଳି ବଦଳି ଚାଲିଛି । ଭାବିଲେ ଅରିନ୍ଦମ । ସତରେ କେତେ ଶୀଘ୍ର ବଦଳିଗଲା ସବୁ !! ମାପରେ ମାପିଲେ ତ ତାଙ୍କର ଜୀବନଟାଏ ମାତ୍ର !

କି ଭୟଙ୍କର ଜାଗା ସେ ନ ଥିଲା ! ପାହାଡ଼ ଆଉ ପାହାଡ଼ ଆହୁରି ପାହାଡ଼ ପରସ୍ତ ପରସ୍ତ ହୋଇ । ପିଲାଦିନଟାରେ ବି ସେ କେବେ ଖୁବ୍ ବଡ଼ ଗୋଟାଏ ପାହାଡ଼ ଦେଖି ନ ଥିଲେ । ସମୁଦ୍ରକୂଳିଆ ଅଞ୍ଚଳ, ନଡ଼ିଆ, ଝାଉଁ, ତାଳ, ପଣସର ହାଲୁକା ସବୁଜିମା ଭିତରେ କୈଶୋର କଟିଥିଲା । ତା'ପରେ ସହର ଜୀବନ, ପାଠପଢ଼ା ବେଳ ।

ସେ'ଦିନ କିନ୍ତୁ ସୁଦୀର୍ଘ ବସ୍ ଯାତ୍ରା ପରେ, ସାଇକଲ ଏବଂ କିଛିବାଟ ପାଦଚଲା ରାସ୍ତା ଦେଇ ପାହାଡ଼ର ଏକ ସମତଳ ଅଞ୍ଚଳରେ ପହଞ୍ଚିଥିଲେ, ସେଇ ଥିଲା ଡାକ୍ତରଖାନା । ପ୍ରଥମ ରୋମାଂଚ ।

ଗୋଡ଼ ଭାଙ୍ଗି ପଡୁଥିଲା । କ୍ଳାନ୍ତି ଅବସନ୍ନତା ମାଡ଼ି ଆସୁଥିଲା । ତଥାପି ମନରେ ଉତ୍ସାହ ଥିଲା । ଗୋଟାଏ ଅଫୁରନ୍ତ ଆନନ୍ଦ । ଆତ୍ମବିଶ୍ୱାସ ଦାନା ଧରୁଥିଲା, କିଛି କରିପାରିବାର, କିଛି ଗୋଟାଏ ହେଇପାରିବାର ନୂଆ ଉନ୍ମାଦନା । କହିବାକୁ ଗଲେ ସ୍ୱତନ୍ତ୍ର ପରିଚୟଟିଏ ଗଢ଼ିବାର ଭିତ୍ତି ପଡ଼ିଥିଲା ସେ'ଦିନ ସେଇ ପାହାଡ଼ିଆ ଜଙ୍ଗଲର କୁହୁଡ଼ିଘେରା ଘଞ୍ଚ ସବୁଜ ଇଲାକାରେ । ମନେ ନାହିଁ ତିଥି କ'ଣ ଥିଲା । ବାର ହୁଏତ ଲେଖାଥିବ ଡାଏରୀରେ, ଦେଖିଲେ ହବ । ମନେ ମନେ କେତେ କଥା ସେ କହିଯାଉଥିଲେ ସବୁଜ ବନାନୀକୁ । ଆଖି ଆଗରେ ମାଳ ମାଳ ପାହାଡ଼ସବୁଙ୍କୁ - "ତମେସବୁ ମୁଣ୍ଡଟେକି ଠିଆ ହେଇଛ ତ ଗରିମା ଦେଖେଇ ... ଦେଖିବ, ମୁଁ ବି କିଛି କମ୍ ନୁହେଁ ।" ବୋଧେ ସେଇଦିନଠୁ ଟେକାମୁଣ୍ଡିଆ ପାହାଡ଼ ଆଉ ସବୁଜ ଘଞ୍ଚ ବନାନୀର ପ୍ରେମରେ ସେ ପଡ଼ିଯାଇଥିଲେ । ସେମାନଙ୍କର ଗମ୍ଭୀର ନିରବତା ଏବଂ ପ୍ରାଣୋଚ୍ଛ୍ୱଳ ସବୁଜିମା ତାଙ୍କୁ ଏକାନ୍ତ ଆପଣାର ମନେ ହୋଇଥିଲା । ଜୀବନକୁ ଦେଖିବାର, ଶିଖିବାର ଓ ଅନୁଭବିବାର ଅଲଭ୍ୟ ମୁହୂର୍ତ୍ତମାନଙ୍କୁ ସେଇଠି ସେ ସାମ୍ନା କରିଛନ୍ତି । ଘରଠୁ ଏତେ ଦୂରରେ, ଆତ୍ମୀୟସ୍ୱଜନ, ବାପା ବୋଉଙ୍କୁ ଛାଡ଼ି ଏକୁଟିଆ ରହିବାର ଦୁଃଖକୁ ସେ କେବଳ ଏଇ

ପାହାଡ଼ମାନଙ୍କୁ ଦେଖି ଭୁଲି ଯାଇଥିଲେ । ତାଙ୍କୁ ଭାରି ଭଲ ଲାଗିଥିଲା ସେମାନଙ୍କର ଆଦର୍ଶ । ସବୁବେଳେ ଉନ୍ନତ । ଟେକା ମୁଣ୍ଡ । ସବୁଜ ସତେଜ । ଅନେକ ପ୍ରଭାବ ପକେଇଥିଲା ତାଙ୍କ ଉପରେ ।" ଏଇ ଯୋଉ ଅଠାବନ ବର୍ଷର ଜୀବନଯାତ୍ରାରେ, ସେ କ'ଣ କେବେ କୋଉଠି ମୁଣ୍ଡ ନୁଆଁଇଛନ୍ତି ??

ଅନେକ ଦିନର ସେସବୁ କଥା... ।

ତା' ପରଠୁ ସେ କେବେ ପଛକୁ ଉହିଁନାହାନ୍ତି ଆଜିଯାଏ । ସଫଳ ହେଇଛନ୍ତି ବି ବିଫଳ ହେଇଛନ୍ତି ତାଙ୍କ ଚଲାବାଟରେ, ଭାବି ନାହାନ୍ତି ମଧ୍ୟ । ଯଦି ଭାବିଛନ୍ତି କର୍ତ୍ତବ୍ୟ କଥା । କ'ଣ କରିବା ଉଚିତ, କ'ଣ କରିବାକୁ ହେବ - କର୍ତ୍ତବ୍ୟ ଆଉ କର୍ତ୍ତବ୍ୟ । ଘରେ, ବାହାରେ, କର୍ମକ୍ଷେତ୍ରରେ, ନିଜ ଚିନ୍ତା ଆଉ ଚେତନାରେ ସବୁଠି । ଘଟଣା, ଦୁର୍ଘଟଣା, ଅଘଟଣାର ଉଠାପକା ଭିତରେ ବାଟ ଚାଲୁଚାଲୁ ହଠାତ୍ ଆଜି ଅଚାନକ ଏଇ ଅଠାବନବର୍ଷ ବୟସଟା ତାଙ୍କୁ ଚିଆଁ ଲଗେଇ ଦେଇ, ସତେ ଯେମିତି ଚେତା କରେଇ ଦେଇଛି । ଚେତେଇ ଦଉଛି ଯେ, ଆଉ ମାତ୍ର କେଇଟା ଘଣ୍ଟା ପରେ ତମେ ସରକାରୀ ସ୍ତରରେ ଅପାରଗ ଘୋଷିତ ହେବ । ଅଦରକାରୀ, ଅନାବଶ୍ୟକ । ଗାର କାଟିଲା ଭଳି, ଦାଗ ଦେଲା ଭଳି- ଏଇଠୁ ବାସ୍ । ତମ କଳା ହରଣ ହେଇଯିବ । ଧରିପାରିବନି ଗାଣ୍ଡିବ । ମାତ୍ର ଆଉ କେଇଟା ଘଣ୍ଟା ବାକି । ସଜାଡ଼ି ହେଇ ବସ । ହେଜ ସବୁ କଥା ।

ଘୂରାଚଉକି ଉପରେ ବସି ଭାବୁଥିଲେ ଅଫିସ୍‌ର ଦୁଇ ନମ୍ବର କର୍ତ୍ତା ଡାକ୍ତର ଅରିନ୍ଦମ । ଏହି ଅଫିସ୍ ର ଭାର ସେ ମାତ୍ର ଏଇ ଏଗାର ମାସ ହେବ ନେଇଥିଲେ । ଏହି ପ୍ରାଶାସନିକ ପୋଷ୍ଟ୍ ପାଇଁ ସେ ମୋଟେ ଆଗ୍ରହୀ ନ ଥିଲେ । ହେଲେ କ'ଣ ହେବ, ଏଇ ଭଙ୍ଗା ମୂଲ୍ୟବୋଧ ଆଉ ବିପର୍ଯ୍ୟସ୍ତ ପରିସ୍ଥିତି ଭିତରେ ତାଙ୍କ ଇଚ୍ଛାର ମାନେ କିଛି ନାହିଁ, ପରିସ୍ଥିତିର ଦାସ ସେ ।

ଅଥଚ ଏଇ ଅଳ୍ପଦିନ ଭିତରେ ବି ତାଙ୍କ ଆଖପାଖର ମଣିଷମାନେ କେତେ ଆପଣାର ହେଇଗଲେଣି । ଆଗରୁ ଏମାନେ କେହି ନଥିଲେ, ଆଗକୁ ବି ଏମାନେ ନ ଥିବେ । ଅଥଚ ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି, ମଣିଷ ସହିତ ମଣିଷର ସଂପର୍କ କଥା । ଏମାନଙ୍କୁ ଛାଡ଼ିଯିବାକୁ ହେବ, ଏଇ କଥା ଭାବିଲା ବେଳକୁ ଛଟପଟ ଲାଗୁଛି, ଅଥୟ ହେଇଯାଉଛି ଛାତି ଭିତରଟା । ଯେମିତି ଏଇମାନେ ସବୁ ତାଙ୍କ ଜୀବନର ଗୋଟାଏ ଗୋଟାଏ ଅଂଶ । ପତ୍ନୀ ଅନୁପମା, ଭାଇ ଶ୍ରୀମନ୍ତ, ଝିଅ ସଂପନ୍ନା, ଆଉ ପୁଅ ସାନୁଭବ ଭଳି, ପିଅନ ଅପର୍ତ୍ତି, ଷ୍ଟେନୋ ପତିମହାପାତ୍ର, କ୍ଲର୍କ ସୁଦର୍ଶନ, ବୈରାଗୀ ଡ୍ରାଇଭର, ସୁକଣ୍ଠ ଭଳି ସହକର୍ମୀ ଅଧସ୍ତନ ଏବଂ ଅଭି ପରମାଣିକ, ଶାନ୍ତନୁ ଜଗତି, ଉଦ୍ଧବ ଶ୍ରୀଚନ୍ଦନ ଭଳି ସହୃଦୟ ବଂଧୁ - କିଏ ପର ? କାହାକୁ ବି ତ ପର ବୋଲି ଭାବି ହେଉନି ଏଇ ମୁହୂର୍ତ୍ତରେ । ଏମିତିକି ଏଇ ଟେବୁଲ୍ । ଟେବୁଲ୍ ଚାରିକଡ଼ର ଚେୟାର, ଟେବୁଲ୍ ଉପରେ ଥିବା ଫାଇଲ୍-ଯୋଉଠି ତାଙ୍କର ଶତାଧିକ ଦସ୍ତଖତ, ହାତଲେଖା ଟିପ୍ପଣୀ, ମନ୍ତବ୍ୟକୁ ଧରି ଅପେକ୍ଷା କରିଛନ୍ତି ଆଦେଶକୁ । ଏଇ କମ୍ପ୍ୟୁଟର, ଆଗାମୀ ପାଇଁ

ଯୋଜନା, ଖସଡ଼ା, କେତେ ଚିଠା ସବୁକୁ ସବୁ ତାଙ୍କରି ଆଦେଶରେ ନିର୍ଦ୍ଦେଶରେ ପ୍ରସ୍ତୁତ ହେଇ କିଛି କାର୍ଯ୍ୟକାରୀ ହେଇ କିମ୍ବା ହେବାପାଇଁ ଅପେକ୍ଷା କରିଛି । ସମସ୍ତେ, ସବୁ ତ ନିଜର ନିଜର ଲାଗୁଛି । କାହାକୁ ଆଡ଼େଇଲା ବେଳକୁ ଦୁଃଖ ଲାଗୁଛି, ମାଡ଼ି ପଡୁଛି । ସବୁର ସଂପର୍କ କିମିତି କେଜାଣି ଛନ୍ଦାଛନ୍ଦି ହେଇ ତାଙ୍କୁ ଛନ୍ଦି ପକାଉଛନ୍ତି ଓଲଟି । ତାଙ୍କୁ କିନ୍ତୁ ଏ ସମସ୍ତର ବନ୍ଧନ କାଟିବାକୁ ହେବ, ଆଉ ମାତ୍ର କେଇଟା ଘଣ୍ଟା ଯାହା ବାକି ।

ଅଥଚ ସବୁ ସିମିତ ରହିଯିବ । ସେ କିଛି ବି ଛୁଇଁ ପାରିବେନି । ସମସ୍ତେ ଅଲଗା ହେଇଯିବେ ତାଙ୍କଠୁ । ପରିବେଶ ଭିନ୍ନ ହୋଇଯିବ । ପରିସ୍ଥିତି ବଦଳିଯିବ । ବଦଳିଯିବ ପରିଚୟ । ଯୋଉଠି ସେ ଏତେଦିନ ଧରି କର୍ତ୍ତୃତ୍ୱ ଜାରି କରି ଆସୁଥିଲେ, ସେଇଠି ସେ ଭିନ୍ନ ମଣିଷଟିଏ ପାଲଟିଯିବେ । ସତେକି ଅଛୁଆଁ, ଅଜଣା, ଅପରିଚିତ, ଅଥବା ସର୍ବସାଧାରଣ ସାମ୍ନା ଚଉକିକୁ ଚାଲିଯିବେ । ତେଣିକି ତାଙ୍କ ପାଇଁ ଏଇ ଅଫିସ୍‌ର ଭାଷା ହିଁ ବଦଳିଯିବ, ବଦଳିଯିବ ଅଧସ୍ତନଙ୍କ ବ୍ୟବହାର । ଦାବୀ, ଅଧିକାର ସବୁ ବଦଳିଯିବ । ଆସନ୍ତୁ, ବସନ୍ତୁ, କୁହନ୍ତୁ, କ'ଣ ଦରକାର ଥିଲା କି ?ର ମଣିଷଟିଏ ପାଲଟି ଯିବେ ସିଏ । ଯେମିତି ଦୟା କରୁଛନ୍ତି ତାଙ୍କ ବିଚରାପଣକୁ ।

ଅଥଚ ସବୁ କୋଣ ଅନୁକୋଣ, ସନ୍ଧି ବିସନ୍ଧି, ବିନ୍ଦୁବିସର୍ଗ ସଂପର୍କରେ ସେ ଜାଣନ୍ତି, ଜାଣିଛନ୍ତି, ଦେଖିଛନ୍ତି, ପରଖିଛନ୍ତି, ଗଢ଼ିଛନ୍ତି, ସଜାଡ଼ିଛନ୍ତି । ଗୋପନୀୟତା ବୋଲି କିଛି ନ ଥିଲା ତାଙ୍କ ପାଖରେ । ତାଙ୍କ ଆସିବା ବାଟକୁ ଚାହିଁ ରହୁଥିଲେ ସବୁ ଜାଗତିଆର ହେଇ ।

କିନ୍ତୁ ଆଉକେଇଟା ଘଣ୍ଟା ପରେ ସେ ଏକଦମ୍ ଅଜଣା ମଣିଷ ଭଳି ଅଭିନୟ କରିବେ । ସମସ୍ତ ଗୋପନୀୟତାକୁ ସଂପୂର୍ଣ୍ଣ ରକ୍ଷା କରି ଆସୁଥିବା ଜଣେ ଦାୟିତ୍ୱସଂପନ୍ନ ଅଫିସରଙ୍କ ସାମନାରେ ତେଣିକି ଆଉ ଜଣେ କେହି, ଅଫିସର୍ ଅଥବା ସରକାରୀ ସଂକ୍ରାନ୍ତୀୟ କଥା ସବୁ ଗୋପନ ରଖିବେ, କହିବେନି । ଆଲୋଚନା କରିବେନି, ସାବଧାନ ହେବେ କହିଲାବେଳେ । ସବୁ ତ ଏଇ 'ଅଠାବନ ବର୍ଷ ବୟସ' ପାଇଁ !!

ମାତ୍ର କେଇଟା ଘଣ୍ଟା ଆଉ ।

ଅରିନ୍ଦମଙ୍କ ଛାତି ଭିତରଟା ରୁନ୍ଧି ହେଇ ଆସିଲା । କାନ୍ଥଘଣ୍ଟା ଆଗେଇ ଚାଲିଥିଲା ଟିକ୍‌ଟିକ୍ ହୋଇ । ଧାଉଁଥିଲା ସେକେଣ୍ଡ ଘଣ୍ଟା ଅଣନିଃଶ୍ୱାସ ହେଲାଭଳି । ମିନିଟ୍ କଣ୍ଟାର ଛାନ୍ଦସିକ ଗତିରେ ସଂକେତ କରୁଥିଲା ସମୟ ଆଗଉଛି । ସମୟ ସାଥିରେ ପାଦ ମିଳଉ ମିଳଉ ମନେ ପଡ଼ିଗଲା ସଂଘର୍ଷମୟ ଜୀବନର ଯନ୍ତ୍ରଣାକ୍ତ ଅନେକ ସ୍ମୃତି ହାବୁକା ମାରିଲା ଭଳି । ତା' ଭିତରୁ କେତେ କେତେ ଲିଭି ଆସୁଥିଲା ତ କେତେ ଉତୁରି ଆସୁଥିଲା । ସବୁ କିନ୍ତୁ ଆପଣାର । ସେ ଓତପ୍ରୋତ ଭାବେ ଜଡ଼ି ରହିଛନ୍ତି ସବୁଠି, ସବୁରି ଭିତରେ ।

ଦୀର୍ଘଶ୍ୱାସ ଛାଡ଼ିଲେ ଅରିନ୍ଦମ । ଗୋଟେ ନୂଆ ଅନୁଭବ । ଶୂନ୍‌ଶାନ୍ ଲାଗୁଛି ଭିତର ବାହାର ସବୁ । କେହି ନାହାନ୍ତି ଅଫିସ୍ ଭିତରେ । ଲଞ୍ଚ ବ୍ରେକ୍ । ସମସ୍ତେ ଯାଇଛନ୍ତି ଖାଇବାକୁ । ସେ ବି ଯିବାର କଥା । ସୁକଣ୍ଠ ଆସିଥିଲା ଡାକିବାକୁ ସବୁଦିନ ଭଳି । ସେ କିନ୍ତୁ ମନା

କରିଦେଲେ । ଗଲେନି, କାମର ବାହାନା ଦେଖେଇ । ଯାଇଥିଲେ ଚଳିଥାନ୍ତା । ଇଚ୍ଛା ହେଲାନି । ପଚାରିଥିଲା ଡ୍ରାଇଭର ବୈରାଗୀ, ନେଇ ଆସିବିକି ସାର୍ ଘରୁ ଟିଫିନ୍ କେରିୟର, ମା' ଅପେକ୍ଷା କରିଥିବେ, ବ୍ୟସ୍ତ ହେବେ ।

ବିଚରା ବଡ଼ କର୍ତ୍ତବ୍ୟନିଷ୍ଠ ଏଇ ବୈରାଗୀ, କୌଣସି କଥା ଭୁଲିବନି । ସେ ମନା କରିଦେଲେ 'ଥାଉ ଆଜି ବ୍ୟସ୍ତ ଅଛି, ତମେ ସବୁ ଯାଅ' । ସେମାନଙ୍କୁ ବିଦା କରିସାରି ସେ ଭାବିଲେ, ବସିଯିବେ ମୁହୂର୍ତ୍ତେ ଏକୁଟିଆ ଏଇ ଅଫିସ୍ ଚେୟାର ଉପରେ । ସରି ଆସୁଥିବା ପତିଆରାର ଶେଷ ସ୍ପର୍ଶକୁ ଏକାନ୍ତ ଭାବେ ଅନୁଭବ କରିବାକୁ । କଲମ ବନ୍ଦକରି ଫାଇଲ ଘୁଞ୍ଚେଇ, ନିଜକୁ ରିଭଲଭିଂ ଚେୟାର ଉପରେ ହାଲୁକା ଭାବେ ଅଜାଡ଼ି ଦେଲେ ଡାକ୍ତର ଅରିନ୍ଦମ । ସ୍ୱାସ୍ଥ୍ୟ ବିଭାଗର ଅନ୍ୟତମ କର୍ତ୍ତା । ଏଇ ଘୂରା ଚେୟାରଟା ସତେ ଯେମିତି ବିକ୍ରମାଦିତ୍ୟଙ୍କ ବତ୍ରିଶ ସିଂହାସନ । ଯୋଉଥିରେ ବସିଗଲେ, ଗୋଟିଏ କଳ୍ପିତ ଆଭିଜାତ୍ୟ- ମୁଁ ବୁଦ୍ଧିଜୀବୀ, ମୋର ପରିଚୟ ସ୍ୱତନ୍ତ୍ର- ମୋ ସଂସ୍କୃତି ଅଲଗା- ମୋର ଅଲଗା ଖାନ୍‌ଦାନପଣ, କେତେ ପାଠ ଘଷି କରି ହାସଲ କରିଛି ଏଇ ପଦପଦବୀ । ମୁଁ ଅଲଗା ମୁଁ ଭିନ୍ନ – ସାଧାରଣଙ୍କଠୁ ଉଚ୍ଚରେ ମୋ ସ୍ଥାନ- ଭଳି ଗୋଟିଏ ମିଛ ଆଟୋପ ସଭିଙ୍କୁ ବାନ୍ଧି ରଖେ । ଅଭ୍ୟସ୍ତ ଧାରଣା ଭିତରେ ବସିଥିବା ମଣିଷଟି ନିଜକୁ ସର୍ବେସର୍ବା ବୋଲି ଭାବେ । ତା' ହାତରେ ଅମାପ ଶକ୍ତି-କଲମ ଗାରକରେ କେତେ ଜୀବନ ସଜାଡ଼ି ହେଇଯାଏ ତ କେତେ ବିଗିଡ଼ିବି ଯାଏ । ସେଭଳି କିଛି ଅନୁଭୂତି ମଧ୍ୟ ଅରିନ୍ଦମଙ୍କୁ ମୁହୂର୍ତ୍ତକ ପାଇଁ ଉଚ୍ଛକିତ କରିବା ସଂଗେ ସଂଗେ ବିଚଳିତ ବି କରି ପକେଇଲା ।

ନିଜକୁ ଚାହିଁଲେ ଅରିନ୍ଦମ । ତାଙ୍କ ଦେହରେ ବି କ'ଣ ସେଇ ବିକ୍ରମାଦିତ୍ୟଙ୍କ ପୋଷାକ ଅଛି ? ଯଦି ଅଛି, ତା'ହେଲେ ନିଶ୍ଚୟ ତାଙ୍କୁ ସେଇଟା ଖାପୁ ନ ଥିବ ଠିକ୍ । ଜୋକର ଭଳିଆ ଦିଶୁଥିବେ ସେ । କାରଣ ସେ ବିକ୍ରମାଦିତ୍ୟ କି ବତ୍ରିଶ ସିଂହାସନ କିଛି ବି ଚାହିଁ ନଥିଲେ । ଭାବୁ ଭାବୁ ଅରିନ୍ଦମ ସତକୁ ସତ ବିଚଳିତ ହେଇପଡ଼ିଲେ ।

ଚାରିଆଡ଼େ ଶୂନ୍‌ଶାନ୍ । କେହି ନାହାନ୍ତି । ଦୂରରୁ ଗାଡ଼ିମୋଟରଙ୍କ ପେଁପାଁ । କ୍ଷୀଣ ପାଟି ଶୁଭୁଛି କିଛି ଲୋକଙ୍କର । ମୁଣ୍ଡ ଉପରେ ବିଜୁଳି ପଙ୍ଖା ଘୂରୁଛି ସାଇଁ ସାଇଁ ହେଇ । କେମିତିକା ଗୋଟାଏ ପରିବେଶ, ଉଦାସ ଉଦାସ । ଆଗରୁ ଏମିତିକା ପରିବେଶକୁ ସେ ଅନୁଭବ କରି ନଥିଲେ ତ କେବେ । ଏଇ ଚେୟାର ଟେବୁଲ୍‌ରେ ସେ ଏତେଦିନ ଧରି ବସି ଆସିଛନ୍ତି, ଅଥଚ...

ଗୋଟିଏ ପାଖେ କମ୍ପ୍ୟୁଟର ଆଉ ପାଖରେ ଫାଇଲ୍‌ର ର୍‍ୟାକ୍ । ଆଉ ଟିକିଏ ସେପାଖକୁ ଛୋଟବଡ଼ ହେଇ ତିନିଟା ଆଲ୍‌ମିରା । ବାଁ ପାଖେ ସ୍କ୍ରିନ୍ ଟଣାହେଇ ଛୋଟ ଗୋଟେ କ୍ୟାବିନ୍ ଭଳି ଯୋଉଁଠି ଆବଶ୍ୟକ ବେଳେ ମୁହୂର୍ତ୍ତେ ଅଳସ ଭାଙ୍ଗୁଥିଲେ । ସବୁ ମଝିରେ ସେ ନିଜେ । କିଛି କାମ ନାହିଁ ଆଜି ହାତରେ । ଅଥଚ ଅନ୍ୟ ଦିନମାନଙ୍କରେ ନାକ ପୋଛିବାକୁ ବି ଫୁରୁସତ

ନ ଥାଏ । ମିଟିଂ, ଡେଲିଗେଟସ୍, ଫାଇଲ୍, ଅରଜି, ଶୁଣୁଣୁଣୁ ସମୟ ଧାଏଁ କୁଆଡ଼େ । ଆଜି ସେ ଜାଣି ଜାଣି କିଛି କାମ ରଖିନାହାନ୍ତି ହାତରେ । ଥିଲେ ବି କରିବେନି ଆଉ । ଥାଉ ଅନ୍ୟମାନଙ୍କ ପାଇଁ ଯିଏ ରିଲେ-ଷ୍ଟିକ୍ ଧରିବ, ସେ ଧାଇଁବ ତା' ଢଙ୍ଗରେ । ସେ ଖାଲି ଆଜି ବସିବେ ଚୁପ୍‌ଚାପ୍ ଆଉ ଭାବିବେ ନିଜ କଥା । ଚଉତିରିଶ ବର୍ଷର ଅନୁଭୂତିକୁ ସେ ଗୋଟେଇ ଧରିଛନ୍ତି । ମୁହୂର୍ତ୍ତିଟିଏ ବି ସମୟ ମିଳିନି ରିଭିଜନ କରିବାକୁ । ଖାଲି କାର୍ଯ୍ୟବ୍ୟସ୍ତତା, ଜଂଜାଳ ଆଉ ଯନ୍ତ୍ରଣା । କ'ଣ ରହିଁଥିଲେ କ'ଣ ପାଇଲେ । କେତେ ଦେଲେ, ବାକି ଅଛି କେତେ - ଏବେ ତା' ସହିତ ଆହୁରି ଅନେକ କଥା, ନିଜ ପେଷା ନିଜ କମିଟ୍‌ମେଣ୍ଟ ଆଦର୍ଶ ଆଉ ସଂଘର୍ଷର କଥା । ସବୁକଥା ଠିକେ ଠିକେ ଭାବିଯିବେ । ପରୀକ୍ଷାକୁ ଯିବା ପୂର୍ବରୁ ଯେମିତି ସେ ପଢ଼ାପାଠକୁ ରିଭିଜନ କରୁଥିଲେ, ସେମିତି ।

ଅବଶ୍ୟ ତାଙ୍କ ଜୀବନ ସେଭଳି କିଛି ବିକାଶର କାହାଣୀ ନୁହେଁ କି ସଫଳତାର ଇତିହାସ ନୁହେଁ । ବଞ୍ଚିବା ପାଇଁ ନିତି ସଂଘର୍ଷ କରୁଥିବା ଲକ୍ଷ ଲକ୍ଷ ସାଧାରଣ ଜୀବନ ଭିତରୁ ଜୀବନଟିଏ- କେତେବେଳେ ଆହାଟିକେ ଉହୁଟିକିଏର ସାଉଁଳା ଦେଇ, ଆହରଣ କରିଥିବା ଜ୍ଞାନ ବାଟରେ କେଇଟା ଜୀବନର ଶାରିରୀକ ଦୁଃଖଯନ୍ତ୍ରଣା, ରୋଗକଷ୍ଟକୁ ଲାଘବ କରିବାର ଯତ୍‌ପରୋନାସ୍ତି ପ୍ରୟାସ କରିଛନ୍ତି ସଚ୍ଚୋଟ ଭାବେ ଓ ସର୍ବୋପରି ଏଥିକୁକୁ ସମ୍ମାନ ଦେଇ ଆସିଛନ୍ତି ଆଜି ପର୍ଯ୍ୟନ୍ତ । ନିଜ ଡିଣ୍ଡିମ କେବେ ପିଟିନାହାନ୍ତି । ସାକ୍ଷାତକାରୀଙ୍କୁ ଘଣ୍ଟା ଘଣ୍ଟା ଅପେକ୍ଷା କରେଇ ନିଜକୁ ଅପରିହାର୍ଯ୍ୟ ବୋଲେଇବାର ଫମ୍ପା ଇମେଜ୍ କେବେ ସୃଷ୍ଟି କରିନାହାନ୍ତି । ଯଦିଓ ଯାଚି ହେଇ ନିଜକୁ ପେଶ୍ କରି ନାହାନ୍ତି । ତେବେ ଜରୁରୀ ଆବଶ୍ୟକତା ବେଳେ ସାହାଯ୍ୟର ହାତ ବଢ଼େଇ ଆଶ୍ୱାସନା ଦେଇଛନ୍ତି ଯନ୍ତ୍ରଣାସିକ୍ତ ମଣିଷକୁ । ଭାବିଲେ ତ ଇଏ କିଛି ନୁହେଁ ଯନ୍ତ୍ରଣାର ସମୁଦ୍ର ଭିତରେ ତାଙ୍କର ଏଇ ସେବା ଟୋପାଏ ପାଣି ଭଳି । ମେଞ୍ଚାଏ ପବନ ଟାଣିନେଲେ ଅରିନ୍ଦମ ଛାତି ଭିତରକୁ ଓ ଛାଡ଼ିଲେ ଧୀରେ ଧୀରେ । ଛାତିରେ ଷ୍ଟେଥୋ ପକେଇଲା ବେଳେ ଯେମିତି ନିଃଶ୍ୱାସ ନେବାପାଇଁ ସେ ରୋଗୀଙ୍କୁ କୁହନ୍ତି ସେମିତି । ସେବା କରିବାର ପ୍ରତିଶ୍ରୁତି ନେଇ ପାଦ ଦେଇଥିଲେ ସେ କର୍ମ ଜୀବନରେ । କ'ଣ ବା କରିପାରିଛନ୍ତି । ମଣିଷ ତ ସେଇମିତି ଘାଣ୍ଟି ହେଉଛି ଯନ୍ତ୍ରଣାର ନର୍କ ଭିତରେ । ଆହାର ମୁଠାଏ ପାଇଁ ଆଣ୍ଠେଇ ପଡୁଛି ମଣିଷପଣିଆ ଯୋଉଠି, ସେଠି ଅଗାଧ ଜ୍ଞାନର ଅଭିଜ୍ଞତାକୁ କାମରେ ଲଗେଇବାର ସୁଯୋଗ କାହିଁ ? ଆମେ ଗରୀବ, ଆମ ଦେଶ ବି !

ଅରିନ୍ଦମଙ୍କ ଭିତରୁ ଗୋଟାଏ ହତାଶା ଭାବ ମାଡ଼ିଆସି ତାଙ୍କୁ କାବୁ କରି ବସିଲା । ସ୍ଥିର ନିଶ୍ଚିତ ସମାଧିରେ ବସିଲା ଭଳି ବସିଥିଲେ ସେ । ଆଖିବୁଜି ସତେକି ସେ ନିଜ ଭିତରକୁ ପଶି ଯାଇଥିଲେ ଏବଂ ବୁଲି ବୁଲି ଦେଖୁଥିଲେ ନିଜ ଭିତର ବାହାର ସବୁଆଡ଼ିକି ସମୀକ୍ଷା କଲାଭଳି । କୋଟ୍‌ଟା ତାଙ୍କ ଚୌକିର ପିଠି ଉପରେ ଝୁଲୁଥିଲା ।

ଅରିନ୍ଦମ ଭାବିଲେ, ସତେ, କେତେ ସାଜ, କେତେ ଠାଣିର ପୋଷାକ ପରିବେଶ,

ପରିସ୍ଥିତି ଆଉ ଆସନକୁ ଚାହିଁ, ବେଳେବେଳେ ଦାମୀ ନାମୀ ମଣିଷମାନଙ୍କ ଗହଣରେ ଆତଯାତ ହେବାପାଇଁ ପୋଷାକର ସ୍ୱତନ୍ତ୍ର ସାଜସରଂଜାମର ଆବଶ୍ୟକତା ପଡ଼େ । ତାଙ୍କୁ ଯଦିଓ ଭଲ ଲାଗେନି । ସେ ନେଇ ଅନୁପମା ଓ ପିଲାଙ୍କ ସାଂଗରେ ସବୁବେଳେ ଖିଚ୍‌ମିଚ୍ - 'ବାପା ଏଇଟା ପିନ୍ଧ', 'ସେଇଟା ମୋଟେ ଭଲ ଦିଶୁନି ତମକୁ' ଅଥବା ଏମିତି କେମିତି ଯିବ ଅଭେକାଙ୍କ ଭଳି, ଦଶଜଣଙ୍କ ଭିତରେ ବସିବଟି-', ଏଭଳି କେତେ ମନ୍ତବ୍ୟ, ଟିପ୍ପଣୀର ମାତ୍ର ଗୋଟାଏ ଉତ୍ତର ତାଙ୍କର– 'ପୋଷାକ କ'ଣ ମଣିଷର ଏକମାତ୍ର ପରିଚୟ, ମୋ ନିଜର କିଛି ପରିଚୟ ନାହିଁ ?'

ତା' ସତ୍ତ୍ୱେ ସେ ପିନ୍ଧୁଥିଲେ । ପିନ୍ଧୁ ପିନ୍ଧୁ ଅଭ୍ୟାସରେ ପଡ଼ିଯାଇଥିଲା । ଟାଇ ବାନ୍ଧୁଥିଲେ ବେକରେ, ବେଲ୍ଟ ଖୋଜୁଥିଲେ, ଗରମ ଲାଗିଲେ ବି କୋଟ୍‌ଟା କାନ୍ଧରେ ଝୁଲୁଥିଲା । ଗୋଟାଏ ମିଛ ଆଟୋପ ଏଇ ଭେକ, ଲହରେଇ ଲହରେଇ ଦୀର୍ଘଶ୍ୱାସଟିଏ ପରିବେଶର ଆବହାୱାକୁ ଓଦା କରି ପକେଇଲା ।

ବିଗତ ଅଠାବନ ବର୍ଷ ଧରି ତିଆରିଥିବା ସେଇ ପୋଷାକୀ ପରଚୟଟା ଏବେ ଖସି ପଡୁଚି, ଦଦରା କାନ୍ଥରୁ ଚୂନ ଖସିଲା ଭଳି ।

ଡାକ୍ତର ହିସାବରେ ସେ ନିଜକୁ କେବେ ବଦଳେଇ ନାହାନ୍ତି । ଡାକ୍ତରୀ ପଢ଼ିଲାଠୁ ତାଙ୍କୁ ଯିଏ ଦେଖିଛି ସେଇ ଗୋଟାଏ ଠାଣିରେ, ଗୋଟାଏ ଢଙ୍ଗରେ ରୋଗ-ରୋଗୀ-ଔଷଧ-ଚିକିତ୍ସା, ବାସ୍ । ଷ୍ଟେଥୋକୁ ବି ସେ କେବେ ନିଜ ବେକରେ ଝୁଲାନ୍ତି ନାହିଁ । ନିଜକୁ ପ୍ରଜ୍ଞାପିତ କରିବା କେବେବି ତାଙ୍କର ଉଦ୍ଦେଶ୍ୟ ନଥିଲା । କେହି ପ୍ରଶଂସା କରି ଦି'ପଦ କହିଦେଲେ ଖୁବ୍ ଅପ୍ରସ୍ତୁତ ବୋଧ କରୁଥିଲେ ସେ । ବିରକ୍ତ ହୋଇ ଯାଉଥିଲେ । ଅଥଚ ଏବେ ତ ସେ ଦେଖୁଛନ୍ତି, ଏଇ ପ୍ରଚାର ଆଉ ପ୍ରସାର ପାଇଁ ତାଙ୍କରି ବଂଧୁମାନେ କେତେ କ'ଣ ନ କରୁଛନ୍ତି । ପେଷାଗତ ମର୍ଯ୍ୟାଦାବୋଧ ଆଉ ନାହିଁ । କମିଟ୍‌ମେଣ୍ଟ ବି ନାହିଁ । ସବୁ ପୋଷାକୀ ନା ଆଉ ଅର୍ଥ ହିଁ ଜୀବନର ଶେଷ ଲକ୍ଷ୍ୟ ହୋଇଛି । ଏ ନେଇ ଅନେକ ତର୍କବିତର୍କ ହେଉଛି ବଂଧୁମାନଙ୍କ ସହିତ । ଅନୁପମା ଆଉ ପିଲାଏ ମଧ୍ୟ ଚାହିଁଛନ୍ତି, ସେ ବଦଳନ୍ତୁ, ବଦଳାନ୍ତୁ ତାଙ୍କର 'ଭାଙ୍ଗିଯିବ ପଛେ-'ର ଦୃଷ୍ଟିକୋଣ, ଅନ୍ତତଃ ସମୟର ଆବଶ୍ୟକତାକୁ ଚାହିଁ । ସାଲିସ୍ କରନ୍ତୁ କିଛିଟା ।

ସେ କିନ୍ତୁ କାନ ଦେଇନଥିଲେ ସେମାନଙ୍କ କଥାକୁ, କିନ୍ତୁ ଏଇ ଅଫିସ୍‌ର କର୍ତ୍ତା ଭାବେ ଦାୟିତ୍ୱ ନେବା ପରେ, ଅନେକ ବର୍ଷର ନିଶ୍ଚିତ ଅଭ୍ୟାସ, ମାନେ ତାଙ୍କର ଦିନଚର୍ଯ୍ୟା ଗୁଡ଼ାକୁ ଅପରିହାର୍ଯ୍ୟତା ଦୃଷ୍ଟିରୁ ବଦଳେଇବାକୁ ପଡ଼ିଥିଲା । ଯେମିତି ଖାଇବା ଢ଼ଙ୍ଗ, ଶୋଇବା ସମୟ, କଥା କହିବା ଠାଣି, ବିଶ୍ରାମ ଶୈଳୀ, ଆଉ ବିଶେଷ କରି ସମୟାନୁବର୍ତ୍ତୀ ହେବା ସହିତ ଏଇ ପୋଷାକର ସାଜ, ପ୍ରଥମେ ପ୍ରଥମେ ଅସ୍ୱସ୍ତି ଲାଗୁଥିଲା, କାରଣ ପ୍ରଥମରୁ ସେ ଟିକେ ଅଲଗୁଆ, ଜୀବନର ପ୍ରଗତିକୁ ସାମ୍‌ନାରେ ଥୋଇ, ସେ କେବେ ବି ଅଣନିଃଶ୍ୱାସୀ ହେଇ ଧାଇଁ ନାହାନ୍ତି କି ଆବଶ୍ୟକରୁ ଅଧିକ ସେ ଚାହିଁ ନାହାନ୍ତି । ତାଙ୍କର ଅନେକ ବଂଧୁଙ୍କ ଠାରୁ ସେ ଅଲଗା; ବାରି ହୋଇଗଲା ଭଳି । ସେଥିପାଇଁ କମ୍ ଟିପ୍ପଣୀ ଶୁଣିବାକୁ ପଡ଼େନି । ସେଥିପାଇଁ ତାଙ୍କର ଦୁଃଖ

ନାହିଁ କାରଣ ସେମାନଙ୍କ ଭଳି ସେ କେବେବି ହେବାକୁ ଚାହିଁ ନାହାନ୍ତି – ଜୀବନକୁ ଦେଖିବାର ଭଙ୍ଗୀ ହିଁ ତାଙ୍କର ନିଆରା । ସେ ଚାହିଁ ନାହାଁନ୍ତି, ସବୁଠି ନିଜକୁ ଦେଖିବେ ନିଜ ନାଁ ଶୁଣିବେ, ଈଶ୍ୱରଙ୍କୁ ସ୍ତୁତିକଲା ଭଳି ସମସ୍ତେ ତାଙ୍କୁ ପ୍ରଶଂସା କରୁଥିବେ, ଗୁଣ ଗାଉଥିବେ ଅଥବା ସେ ଚାହିଁଲେ ଗହଳି ଠିଆ ହେଇ ଯାଉଥିବ – ଅଟକି ଯାଉଥିବ, ନା, ତାଙ୍କୁ ଏସବୁ ଘୃଣା ଲାଗେ । ତାଙ୍କ ଦୃଷ୍ଟିରେ ମଣିଷର ଜୀବନଟା ଖୁବ୍ ବଡ଼ । ତାକୁ ନେଇ ସେ କେବେ ମୂଲ କଷି ନାହାନ୍ତି । ଛାଡ଼ ଏସବୁ ନିଜ କଥା, ଏକାନ୍ତ ବ୍ୟକ୍ତିଗତ ।

ଏଥର ଅରିନ୍ଦମ ଭାବିଲେ, ସଂସାରୀ ହିସାବରେ ନିଜକୁ ତଉଲିଲା ବେଳକୁ, ସଂସାର କଥା ଭାବିଲା ବେଳକୁ, ଅନୁପମା ମୁହଁଟା ହିଁ ବିବାକ୍ ଦିଶିଗଲା । ତାଙ୍କର ସଂସାର ଗଢ଼ାଳି ଅନୁପମା । ତାଙ୍କ ସ୍ୱପ୍ନକୁ ରୂପ ଦେବାରେ ତା' ଅବଦାନ ସବୁଠୁ ମହତ୍ୱପୂର୍ଣ୍ଣ । ଜୀବନର ପ୍ରତିଟି ସୋପାନକୁ ସେ ଋଦ୍ଧିମନ୍ତ କରିଛି ନିଜ କାରୁକୌଶଳରେ । ଭାବିବା ଆଗରୁ, କହିବା ପୂର୍ବରୁ ସେ କରି ଥୋଇଦେଇଛି । ସଜାଡ଼ି ରଖିଦେଇଚି, ସଜାଗ କରିଦେଇଛି । କୌଣସି କଥା ପାଇଁ କେବେବି ଅଭିଯୋଗ କରିନି ବରଂ ଅନେକ କ୍ଷେତ୍ରରେ ସେ ଚମତ୍କାର ଭାବେ ସାଲିସ୍ କରି ତାଙ୍କ ଜୀବନଯାତ୍ରାକୁ ସହଜ ସରଳ କରିଦେଇଛି । ମନ ଊଣା କଲେ ବଡ଼ ମଣିଷ ଭଳି ବୁଝେଇଛି । ଭାଙ୍ଗି ପଡ଼ିଲେ ସାହସ ଦେଇଛି, ପରଂପରାକୁ ମାଜି ମୁଜି ଉଜ୍ଜ୍ୱଳ କରି ସଜାଡ଼ିଛି । କେବେ ଛାଡ଼ିନି ସେ ହାତ । ତା' ହାତ ଧରି ହିଁ ସେ ସଂସାର-ସମୁଦ୍ରରେ ଏବଯାଏ ପହଁରି ଚାଲିଛନ୍ତି । ଯଦି ସେ ଆଜି ମୁଣ୍ଡଟେକି ବାଟ ଚାଲୁଛନ୍ତି ତ, ତା' ପଛରେ ଅନୁପମା ଅଛି, ଅଛି ତା'ର ସଂସାରୀ ପଣର ନିଷ୍ଠା, ଉତ୍ସର୍ଗୀକୃତ ଜୀବନ ।

ଅନୁପମା ତାଙ୍କର ସୁଖଦୁଃଖର ସାଥୀ । ଅନୁପମା ତାଙ୍କ ଜୀବନର ଏକମାତ୍ର ଥୟ, ସେଇ ମାପିବ ତାଙ୍କ ସଫଳତା, ଅସଫଳତାକୁ, ପାରିଲା ଆଉ ନପାରିଲା ପଣକୁ । ସେ ନିଜେ ପାରିବେନି । ସେ କିଛିବି ଦେଇନାହାନ୍ତି ତାକୁ । ଓଲଟି ତାଙ୍କ ପୌରୁଷର ଅଭିମାନ ବେଳେବେଳେ ତାକୁ ଆଙ୍ଗୁଠି ଦେଖେଇ ଘାଇଲା କରିଛି, ଆଘାତ ଦେଇଛି ବି ।

ଅଥଚ ଅନୁପମା ହଜାରେବାର କହିଥିବ 'କ'ଣ ଆଉ ଅଧିକା ଦେଇଥାନ୍ତ କି, ତମ ମାନସମ୍ମାନ, ଗର୍ବଗୌରବ, ପାପପୁଣ୍ୟ, ସୁଖଦୁଃଖ ସବୁରେ ତ ମୁଁ ସମାନ ଭାଗିଦାର ।'

ଅବଶ୍ୟ ସେଇଟା ଅନୁପମାର ଭାବିବାର ଢଙ୍ଗ । ତେବେ ସେ କିଛି କରିନାହାନ୍ତି କାହାପାଇଁ, ପୁଅ ସାନୁଭବ ପାଇଁ, ନା ଝିଅ ସଂପନ୍ନା ପାଇଁ । ନିଜ ଗୁଣ ନିଜ ସାମର୍ଥ୍ୟରେ ସେମାନେ ଠିଆ ହୋଇଛନ୍ତି ତାଙ୍କ ବାଟରେ । ଯଦି ସେ କିଛି କରିଛନ୍ତି ତ, କର୍ତ୍ତବ୍ୟ । ବାସ୍ ।

କେମିତି ବି ନ କରିବେ, ବାପାବୋଉ ସେଇକଥା ହିଁ ଶିଖେଇଛନ୍ତି । ବ୍ରଜସାର କାନମୋଡ଼ି ଶିଖେଇଥିଲେ କର୍ତ୍ତବ୍ୟର ବନାନ । ସେଥିରେ ଆଉ ଭୁଲ ହେବ କିମିତି ? ଆଉ ତା' ସହିତ ସାଉଁଟିଛନ୍ତି କିଛି ବ୍ୟସ୍ତତା, ଅସ୍ୱସ୍ତି, ଅସନ୍ତୋଷ ଏବଂ ଗୁଡ଼ାଏ ବାଧ୍ୟବାଧକତା ଓ ଜୀବନ ଜିଇଁବାର କୃତଜ୍ଞତା । କର୍ତ୍ତବ୍ୟ ଦାୟରେ ସରକାରଙ୍କ ଇଚ୍ଛାକୁ କାର୍ଯ୍ୟକାରୀ କରିବାକୁ

ଯାଇ ଅନେକ ସମୟରେ ନିଜ ସହିତ, ନିଜ ଆଦର୍ଶ ସହିତ, ଯୁଦ୍ଧ କରୁ କରୁ ଅଥବା ସନ୍ଧି କରୁ କରୁ କେତେବେଳେ ଆସି ପହଞ୍ଚିଯାଇଛି - ଏଇ ଅଠାବନ ବର୍ଷ । ଅବଶ୍ୟ ଅଘଟନକ ଆସିନି । ତା' ବାଟରେ ହିଁ ସେ ଆସିଛି, ଆସିବା କଥା ବୋଲି । ତାଙ୍କର ହିଁ ମନେ ନ ଥିଲା । ଝଂଝାଳ ଭିତରେ ବ୍ୟସ୍ତତା ଭିତରେ ଶୁଦ୍ଧି ହେଇ । ନିଜେ ସରକାର ବାହାଦୁର ଦିନେ ମନେ ପକେଇଦେଲେ ଯେ, 'ତମର ଅଠାବନ ବର୍ଷ ପୂରିଯାଇଛି-'

ସବୁ ଅଧାପନ୍ତରିଆ ଛାଡ଼ିଯିବାକୁ ହେଉଛି ।

କେତେ ଯୋଜନା ଥିଲା, ପ୍ରକଳ୍ପ ଥିଲା, ଅନୁମୋଦନ ପାଇଁ ପଠେଇ ଥାନ୍ତେ, ପ୍ରସ୍ତାବ ଦେଇଥାନ୍ତେ, ଯା ପାଇଁ ତା' କରିଦେବି, ଅମୁକର ଅସୁବିଧା ଦୂର କରିଦେବି, ଅମୁକ ଜାଗାରେ ସ୍ୱାସ୍ଥ୍ୟସେବା ପହୁଁଚେଇ ଦେବାର ବ୍ୟବସ୍ଥା କରିଦେବି, ଅସଜଡ଼ାକୁ ସଜାଡ଼ିଦେବି ଇତ୍ୟାଦି ଇତ୍ୟାଦି ।

ଋକିରି କାଳରେ ସହସ୍ରଥର ଉପରିସ୍ଥଙ୍କ ସହିତ ଯୁକ୍ତି କରିଛନ୍ତି, ଦାବୀ କରିଛନ୍ତି କେତେବେଳେ ଋକିରିକୁ ବାଜି ଲଗେଇ ତ, କେତେବେଳେ ନିଜ ପାରିଲାପଣକୁ ଥୋଇ । ବଂଧୁ, ସହକର୍ମୀମାନେ ଚକିତ ହୋଇ ଋହିଁଛନ୍ତି ତାଙ୍କର ଯୁକ୍ତିପ୍ରବଣତାରେ ମୁଗ୍ଧହୋଇ । କହିଛନ୍ତି ବି 'ତମେ ଆମର ଆଦର୍ଶ' ବୋଲି । ହେଲେ ଫଳ କ'ଣ ହେଲା, ଆଖିଦୁରୁଶିଆ କିଛିବି ତ ହୋଇନି । କିଛି କରିପାରିଲେନି । କିଛି କରିପାରିନଥାନ୍ତେ ମଧ୍ୟ । କାରଣ ସେ କେବଳ ସ୍ୱାଧୀନ ଭାରତରେ ଋକିରି ସିନା କରିଛନ୍ତି, ନହେଲେ ତାଙ୍କର ଆଉ କିଛି ସ୍ୱାଧୀନତା ନାହିଁ । ଏହାହିଁ ଅଠାବନ ବର୍ଷ ଭିତରେ ତାଙ୍କର ସର୍ବଶେଷ ଏବଂ ସର୍ବଶ୍ରେଷ୍ଠ ଅନୁଭବ, ଦୁଃଖ ବି ।

ଅରିନ୍ଦମ ଦୀର୍ଘଶ୍ୱାସ ନେଇ ରୁମାଲରେ ମୁହଁପୋଛି ଶୂନ୍ୟକୁ ଋହିଁଲେ । ସମୟ ଘଣ୍ଟି ବଜେଇ ଦେଇଛି । ଅଠାବନ ବର୍ଷ ଆସି ଶିଆଳୀ ଲଟାରେ ଦୋଳି ଖେଳୁଛି ଆଖି ବୁଜି ବୁଜି । ମାତ୍ର କେଇଟା ଘଣ୍ଟା କିଛି ମୁହୂର୍ତ୍ତ ।

ଗାଣ୍ଡିବ ହାତରେ ଠିଆ ହୋଇଛି ବିଶମ୍ଭଦ ଅର୍ଜୁନ ।

ଶିଆଳୀ ଲଟାରେ ଶୋଇ ଶୋଇ କଥା କହୁଛି ଅଠାବନ ବର୍ଷ ।

'ଦିଅ ସଖା, ଏଥର ଛୁଆଁଇ ଦିଅ ତମ ଗାଣ୍ଡିବର ହୁଳ ଟିକିଏ । ଆଉ ପାରୁନି, ଜୀବନ ଯନ୍ତ୍ରଣାକୁ ମୋ ଲାଘବ କର ।'

ଭାବୁଛି, ଅର୍ଜୁନ ଛୁଆଁଇବ ଛୁଆଁଇବ ହେଉଛି ଗାଣ୍ଡିବର ହୁଳକୁ ।

ଛୁଇଁଦେଲେ ତ ସରିଲା । ସବୁ ଠପ, ପୂରା ଠପ ।

କଳା ଛାଡ଼ିଯିବ । ନିର୍ବଳ ହୋଇଯିବ ଅର୍ଜୁନ । ଶ୍ରୀହୀନ ହୋଇଯିବ । ଶ୍ରୀହୀନ ହୋଇଯିବ ସେ ନିଜେ । ଓହ୍ଲେଇଯିବେ ବତ୍ରିଶ ସିଂହାସନରୁ । ଯେତେ ରକମର ବନ୍ଧନ, ସମ୍ପର୍କ, ମାପର ଖୋଳ, ସବୁ ଖସିପଡ଼ିବ ଆପଣାଛାଏଁ ଲୁଣଖିଆ କାନ୍ଥରୁ ଚୂନ ଖସିଲା ପରି ।

ହଠାତ୍ ତାଙ୍କୁ କେମିତି ଅଣନିଃଶ୍ୱାସ ଲାଗିଲା । ଆଉ କିଛି ଭାବିପାରିଲେନି । କେମିତି ଗୋଟାଏ ଗୈରିକ ଅବସାଦ ମାଡ଼ି ଆସୁଥିଲା ଚେତନା ଚଉହଦି ଡେଇଁ ।

ଶୂନ୍ୟ ଶୂନ୍ୟ ଅନୁଭବ ମୁହୂର୍ତ୍ତକ ଲାଗି ।

ଏବଂ ଅରିନ୍ଦମ ନାମକ ସାଧାରଣରୁ ଅତି ସାଧାରଣ ମଣିଷଟି ସମୟ ସମୁଦ୍ରର ଅକାତକାତ ପାଣିର ଗଭୀରତା ଭିତରକୁ ବୁଡ଼ିବୁଡ଼ି ଯାଉଥିଲା ଯିମିତି । ଗୋଟାଏ ଅନ୍ଧାରୁଆ ଅନୁଭବ । ଶୂନ୍ୟପଣ । ଲଙ୍ଗଳା ଲଙ୍ଗଳା । ଭାସିଲା ଭଳି ତଣ୍ଟି ଶୁଖି ଯାଉଛି । ପାଟି ଅଠା ଅଠା । ଘୂରିଯାଉଛି ତାଙ୍କ ଚାରିପାଖର ପୃଥିବୀ । ବିକଳ ହେଇ ଆଖି ଖୋଲି ପକେଇଲେ ଅରିନ୍ଦମ । ଡାକ୍ତର ଅରିନ୍ଦମ ମାନଧାତା । ଏ କ'ଣ ହେଲା ତାଙ୍କର । ଗୋଟାପଣେ ଝାଳରେ ବୁଡ଼ିଯାଇଛନ୍ତି ସେ । ଅଥଚ ମୁଣ୍ଡ ଉପରେ ପୂରା ଦମରେ ବିଜୁଳି ପଙ୍ଖା ଘୂରୁଛି ।

ସତରେ ବିଚିତ୍ର ଅନୁଭବ । ଅଠାବନ ବର୍ଷ ବୟସର । ହଠାତ୍ ସଚେତନ ହେଲେ ସେ । ନା, ଇଏ ତ ସ୍ୱାଭାବିକ ଲକ୍ଷଣ ନୁହେଁ । ତାଙ୍କୁ କ'ଣ ଯା ଭିତରେ ଡାଇବେଟିସ୍ ହେଲାଣିକି ଆଉ ?

ଏ ପର୍ଯ୍ୟନ୍ତ କେବେ କିଛି ପରୀକ୍ଷା କରି ନାହାନ୍ତି ନିଜର । ଅଠାବନ ହେଲାଣି ଯେତେବେଳେ, ଏଥର ଗୋଟେଁଅଧେ ପରୀକ୍ଷା କରେଇନେବା ଉଚିତ ହେବ । ରୋଗୀଙ୍କୁ ତ ସେ ଏଇ ପରାମର୍ଶ ଦିଅନ୍ତି- ରୁଟିନ୍ ଚେକ୍ଅପ୍ ପାଇଁ । ତେବେ ତାଙ୍କୁ ଅଠାବନ ହେଲାଣି ବୋଲି ସେ କୋଉ ସଚେତନ ଥିଲେ କି ! ଠିକ୍ଠାକ୍ ତ ଚାଲିଛି ସବୁ, ଚାଲିଥିଲା ବି । ଆଜି କାହିଁକି ଏମିତି... ହଠାତ୍... ପାଠ ତ କହିବ ହାଇପୋଗ୍ଲାଇସେମିଆ । କିନ୍ତୁ ହାଇପୋଗ୍ଲାଇସେମିଆ ହେବ କାହିଁକି ? ସେ ତ ସୁସ୍ଥ । ନା, ଅସହାୟପଣ ? କିଛି କରିନପାରିବାର ଦୁଃଖ ! ନା, ହେ ଭଗବାନ ! ଡିପ୍ରେସନ ଭିତରକୁ ସେ ଆଉ ପଶି ଯାଉନାହାନ୍ତି ତ ! ଓଠ ଶୁଖି ଯାଉଛି । ଚିନ୍ତା ଭାରସାମ୍ୟ ହରଉଛି । ବାଟବଣା ହେଇଯାଉଛନ୍ତି ବୋଧେ କେତେ ପ୍ରକାରର ଚିନ୍ତା; କେତେ କଥା, ଏକାବେଳେ ପଶି ଆସୁଛି ମୁଣ୍ଡ ଭିତରକୁ ଅସଜଡ଼ା ହେଇ, ବିବ୍ରତ କଲା ଭଳି ।

ଟେବୁଲ ଉପରେ ପାଣି ବୋତଲ ଥୁଆ ହେଇଛି । ପିଅନକୁ ଡାକିବାକୁ ସେ କଲିଂବେଲ୍ ଆଡ଼କୁ ହାତ ବଢ଼ାଉଥିଲେ, ମନେ ପଡ଼ିଗଲା, ଲଞ୍ଚ୍ ଆୱାର, କେହି ନଥିବେ । ଠିକ୍ ଅଛି । ନିଜେ ନିଜେ ଗ୍ଲାସ୍‌ରେ ପାଣି ଢାଳି ଏକା ଦମ୍‌ରେ ଢକ୍ ଢକ୍ କରି ପିଇଦେଇ ଟିକିଏ ସାଷ୍ଟାମ ହେଲେ ଏବଂ ମନେପକେଇବାକୁ ଚେଷ୍ଟାକଲେ ଡିପ୍ରେସନ୍‌ର ଲକ୍ଷଣ ସମ୍ପର୍କରେ । ମେଡ଼ିସିନ ବହିର ସାଇକେଟ୍ରି ଚାପ୍ଟରଟାକୁ ଖୋଲିବାକୁ ଯାଇ.... ଭାବିଲେ– ନା, ମନେପଡୁନି କିଛି । ମନେ ପକେଇ ପାରୁନାହାଁନ୍ତି କିଛିବି । କିମିତି ମନେ ପଡ଼ିବ ଯେ; ଅନେକ ଦିନ ହେଲା ପୂରା ଅଭ୍ୟାସ ଛାଡ଼ି ଦେଇଛନ୍ତି । ରୋଗ ରୋଗୀ ଡାକ୍ତରଖାନା ସହିତ ଆଉ ସମ୍ପର୍କ ନାହିଁ ତିନିବର୍ଷ ହେଲା । ଫାଇଲ, ଯୋଜନା, ପ୍ରୋଗ୍ରାମ୍, ପ୍ରକଳ୍ପ, କ୍ୟାମ୍ପ୍ ଇତ୍ୟାଦି ନେଇ ତ ଧନ୍ଦିହେଲେ ଦିନରାତି । ଛାଡ଼ । ପରେ କେତେବେଳେ ସୁବିଧା ଦେଖି ପଢ଼ିନେବେ । ଏଣିକି ତ ସମୟ ଯଥେଷ୍ଟ ମିଳିବ । ବର୍ତ୍ତମାନ ଷ୍ଟେବୁଲ୍ ହେଲେଣି । ଯେ କିଛି ନୁହେଁ; ନିଜକୁ ବାଧା ଦେବାକୁ ଚେଷ୍ଟାକଲେ ଅରିନ୍ଦମ ।

ଏତେ ସାଧାରଣ ଓ ଛୋଟ ମୋଟ କଥାପାଇଁ ଏତେଟା ଅସ୍ଥିର ଓ ବିବ୍ରତ ହେବା ତାଙ୍କୁ ଶୋଭା ପାଉନାହିଁ ନିଶ୍ଚୟ । ନିଜକୁ ନିଜେ ତାଗିଦ କଲେ ।

ସେ ସ୍ଥିରମନା, ସମସ୍ତେ କୁହନ୍ତି । ଅନୁପମା ବି କୁହେ । ସବୁକଥାକୁ ଧୀରସ୍ଥିର ଭାବେ ବିବେଚନା କରିସାରି ଯେକୌଣସି ସିଦ୍ଧାନ୍ତ ସେ ନିଅନ୍ତି । ସମଗ୍ର ଜୀବନଟା କଟିଗଲା । ରୋଗ ଯନ୍ତ୍ରଣା, ଅସହାୟତାକୁ ଦେଖି ଦେଖି ଜନ୍ମମୃତ୍ୟୁ ସହିତ ନିତି ହାତ ମିଳେଇଲା ପରେ ଆଉ କିଛି ବାକି ଅଛି କି ଜୀବନର ରହସ୍ୟ ସଂପର୍କରେ ଜାଣିବାକୁ ? ଜୀବନର ଯୋଉଠି ପରିସମାପ୍ତି ଅଛି, ଛାର ଚାକିରିର ଶେଷ ନଥାନ୍ତା ! ନା, ବୟସ ହୁଅନ୍ତାନି ? ବୟସ ହେଲେ ସମସ୍ତେ ଏଇମିତି ସଂପର୍କ ଛିଣ୍ଡେଇ ଚାଲିଯାନ୍ତି, ଏ ତ ଚିରାଚରିତ କଥା । ତୁଚ୍ଛା ପରିଚୟଟାର ବୋଝ ବୋହି ଆଉ କେତେ ବାଟ ସେ ଚାଲି ପାରିବେ ଶେଷ ପର୍ଯ୍ୟନ୍ତ– ।

'ଶେଷ ପର୍ଯ୍ୟନ୍ତ' । 'ଶେଷ...ପର୍ଯ୍ୟନ୍ତ' । 'ଶେଷ'... ହଠାତ୍ ଭାବନାଟା ଝୁଣ୍ଟିପଡ଼ିଲା ଭଳି ଅଟକିଗଲା ଠାଏଁ । ଅଚାନକ ଦୋହଲିଗଲା ଭିତରଟା । 'ଶେଷ...' ! ଚମକି ପଡ଼ିଲେ ନିଜ ଅଜାଣତରେ । ଅନୁପମା, ସାନୁ, ସଂପନ୍ନର ମୁହଁ ନାଚିଗଲା ଆଖି ଆଗରେ... ଆହୁରି ଅନେକ ମୁହଁ ଜଣା, ଅଜଣା, ଅଧାଜଣା । କେମିତି ବିକଳ ଦିଶୁଛି ସେ ମୁହଁଗୁଡ଼ାକ । କଳାକାଠ ପଡ଼ିଯାଇଛି ।

ଓହୋ !! ବିକଳ ହେଇ ପଡ଼ିଲେ ଅରିନ୍ଦମ । ଅଂଧାର ଲାଗିଲା... ଶୂନ୍ୟେଇ ହେଇଗଲା ମନ ଭିତରଟା ଭିନ୍ନ ଏକ ଯନ୍ତ୍ରଣାରେ ।

ମଣିଷର ଯନ୍ତ୍ରଣାକୁ ପୋଛି ଦେବାର ବହୁ ଉପାୟ ଜାଣିଥିବା ଡାକ୍ତର ଅରିନ୍ଦମ ନିଜ ଯନ୍ତ୍ରଣା ପାଖରେ ଏମିତି ଅଥୟ ହୋଇଯାଉଛନ୍ତି କାହିଁକି ଯେ !! କେତେ 'ଶେଷ' ତ ସେ ଦେଖିଛନ୍ତି । ଅଥଚ...

ଜୀବନର ଚଲାବାଟରେ ଅଠାବନ ବର୍ଷ ବୋଧେ ଗୋଟିଏ ଝୁଣ୍ଟିଲା ପଥର ସାମା ସୂଚେଇଦେବାକୁ ! ସମୟ ସଂପର୍କରେ ମନେପକେଇ ଦେବାକୁ 'ଶେଷ' ଦେଖେଇ ଦେବାକୁ !

ନହେଲେ ଆଜିଯାଏ ଏ ପ୍ରକାରର ଯନ୍ତ୍ରଣାକୁ ତ ସେ ଅନୁଭବ କରି ନଥିଲେ । ଚିହ୍ନିନଥିଲେ । ଚାଲିଥିଲା ଜୀବନ ଚକ ନିରବଧି ଆଗପଛ ନ ଭାବି । କୌଣସି ଯନ୍ତ୍ରଣା ତାଙ୍କୁ କାବୁ କରି ପାରିନଥିଲା । ହାର୍ ମାନି ନ ଥିଲେ ସେ ।

ଅଥଚ ଏଇ ଅଠାବନ ବର୍ଷର ଅନୁଭବ ନିଆରା ଭାବେ ତାଙ୍କ ସାମ୍ନାରେ 'ଝୁଣ୍ଟିଲା-ଯନ୍ତ୍ରଣା'ର ରୂପ ପରିଗ୍ରହ କରି ଠିଆହେଲା, କାହିଁକି ? ଏଇ ସ୍ୱତନ୍ତ୍ର ପରଚୟର ସାଜଟାକୁ ଉତାରି ଲଙ୍ଗଳା ମୁକୁଳା କରି ଛାଡ଼ି ଦେବାର ଅଭିପ୍ରାୟରେ ନା, 'ଶେଷ' ସଂପର୍କରେ ସଚେତନ କରେଇ ଦେବାକୁ ? 'ଶେଷ' କ'ଣ ସତରେ ପାଖେଇ ଗଲାଣି ! ବାକିଆ ଯେତେସବୁ କାମ ସାରି ଗଣ୍ଠିଲି ପୁଟୁଳି ବାନ୍ଧି ଫେରିବାର ବାଟ ଦେଖିବାକୁ ହେବ ! ତାଙ୍କ ବାପା ଅଜା କିନ୍ତୁ 'ଅଠାବନ ବର୍ଷ'ରେ କେବେ ହାବୁଡ଼ି ନ ଥିଲେ, ଚାକିରିରେ ଭୟ ନ ଥିଲା । ସ୍ୱାଧୀନ ମଣିଷ

ସେମାନେ ସମୟକୁ ପଛରେ ପକେଇ ଆଗକୁ ପାହୁଣ୍ଡ ପକଉଥିଲେ । ଶେଷ ପର୍ଯ୍ୟନ୍ତ 'ଶେଷ' କଥା ଭାବି ନ ଥିବେ ସେମାନେ । ସୁଖୀ ମଣିଷ । ଅରିନ୍ଦମଙ୍କ ଭାବନା ଅବଚେତନ ବାଟ ଦେଇ ଓହ୍ଲେଇ ଆସିଲା ଅଫିସ୍ ଭିତରକୁ । ଅରିନ୍ଦମ ଦେଖିଲେ ତାଙ୍କ ସାମ୍ନା କାନ୍ଥକୁ ଆଉଜି ଠିଆ ହୋଇଥିବା ଆଲ୍‌ମିରାର ଲାଇଫ୍ ସାଇଜ ମିରରରେ ନିଜ ପ୍ରତିଛବିକୁ ନିରେଖି ନିରେଖି । ସେଇ ପୁରୁଣା ଅରିନ୍ଦମ । କିଛି ଅଲଗା ଦିଶୁନି ।

ହୃଷ୍ଟପୃଷ୍ଟ ନହେଲେ ବି, ନିହା ଛେଚା ଛାଟିଦେଲା ଭଳି ଚେହେରା । ବଡ଼ ମୁହଁ ଲମ୍ବାଳିଆ, ଫରଚା କପାଳ; ସାନ ଥିଲା ଆଗରୁ । ବୟସ ବଢ଼ିବା ସାଂଗେ ସାଂଗେ, କେବେଠୁ କେଜାଣି ଫରଚା ହେଇ ଆସିଲାଣି, ଖିଆଲ ନାହିଁ । କେଶ ନିଜରଂଗ ବଦଳେଇ ଦେଇଛି ବି । ଅନୁପମା ଲଗେଇ ଲଗେଇ ତାକୁ ଯାହା କଳା କରିଦେଇଛି - 'ତମ ଚେହେରାକୁ ଏଇ ଧଳାବାଳ ମୋଟେ ସାଜୁନି, ଆଜିକାଲି ତ ସମସ୍ତେ ଡାଇ କଲେଣି, ତମକୁ କାହିଁକି ମାଡ଼ି ପଡୁଛି ଯେ' - ସେଇଥିପାଇଁ ବୟସ ମୋଟେ ବେଶି ଜଣା ପଡୁନି । ସେ ଅବସର ନେବେ ଶୁଣି ଏଇତ ସେ'ଦିନ ଜଣେ ବିଦେଶୀ ବଂଧୁ ପ୍ରଶ୍ନ କରିଥିଲେ ଆଶ୍ଚର୍ଯ୍ୟ ହୋଇ 'କାହିଁକି ଆପଣ ଏତେ ଶୀଘ୍ର ଅବସର ନେବେ, ପାରଙ୍ଗମ ଅଛନ୍ତି ସମର୍ଥ ଅଛନ୍ତି । ଦେଶ ଆପଣଙ୍କ ଦ୍ୱାରା ଉପକୃତ ହେବ ଅଥଚ ଆପଣ କହୁଛନ୍ତି ଅବସର ନେବେ ?

ଅରିନ୍ଦମ ହସିଦେଇ କହିଥିଲେ, "ଆମ ସରକାର ଚାକିରି ସୀମା ନିର୍ଦ୍ଧାରିତ କରିଛନ୍ତି ଅଠାବନ ବର୍ଷ ମାତ୍ର ।"

ଭାରି ଦୁଃଖ କଲେ ଡାକ୍ତର ବଂଧୁ ଜଣକ । କାରଣ ସେମାନେ ବୟସର ମାପରେ ନୁହେଁ ପାରଙ୍ଗମତା ଓ ଯୋଗ୍ୟତା ସହିତ ଅଭିଜ୍ଞତାକୁ ବେଶି ଗୁରୁତ୍ୱ ଦିଅନ୍ତି ।

ସେ ଦୃଷ୍ଟିରୁ ଦେଖିଲେ ସେ ସୁସ୍ଥ ସମର୍ଥ ଓ ଅଭିଜ୍ଞତା ପରିପୁଷ୍ଟ । ଚିନ୍ତାଶକ୍ତି ଜାଗ୍ରତ ଅଛି ଦେଶ ଓ ଦଶର ସେବା କରିବାକୁ ।

ଅରିନ୍ଦମ ଚାହିଁଲେ ନିଜର ସମର୍ଥ ପୌରୁଷକୁ । ଚାହିଁବାକୁ ସମୟ ମିଳିଛି ଏତେ ଦିନକେ । ତଥାପି ଗମ୍ଭୀର ଠାଣି । କ'ଣ ଭାବୁଛନ୍ତି ହଠାତ୍ ଜାଣି ହୁଏନି । ସହଜରେ ଆପଣାକୁ ପ୍ରକାଶ କରିବାକୁ ଦିଅନ୍ତି ନାହିଁ । ଧୀରେ ଧୀରେ କଥା । ସ୍ପଷ୍ଟ, ପ୍ରାଞ୍ଜଳ । ସଂସାରୀ କଥାର ଢଳେଇ ନାହିଁ ସେଥିରେ । ଗାରେ ଗାରେ ଚାଲିବା ଅଭ୍ୟାସ । ଆଦର୍ଶବାଦୀ ନ କହି ନୀତିବାଦୀ କହିବା ଠିକ୍ ହେବ । କଥା ଆଉ କାର୍ଯ୍ୟରେ ଫରକ୍ ସେ ପସନ୍ଦ କରନ୍ତି ନାହିଁ । ତେଣୁ ଚାହିଁଲେ ବି ସମସ୍ତେ ଭରସି ପାଖ ପଶି ପାରନ୍ତିନି । ଦୂରରୁ ଦିଶନ୍ତି କଡ଼ା ମିଜାଜର ମଣିଷ ଭଳି । ସେ ଅନେକଥର ପ୍ରଶ୍ନ କରିଛନ୍ତି ଅନୁପମାକୁ "ମୁଁ କ'ଣ ସତରେ ଏତେ ରୁକ୍ଷ, କର୍କଶ, ନିର୍ମମ ଅନୁପମା ?" ଅନୁପମା କୁହେ "ତମେ ତ ହିସାବ କରି ବହିପାଠ ଭଳି ସିଧା ସଳଖ କଥା କହିବ, ସେଥିରେ ସମସ୍ତେ କିମିତି ଭରସିବେ, ସମସ୍ତେ କ'ଣ ଚିହ୍ନି ପାରିବେ ମଣିଷର ଅନ୍ତରକୁ । ଯିଏ ସିନା ଚିହ୍ନିଛି, ଛୁଇଁଛି, ଦେଖିଛି ଥରେ ଜାଣିବ । ଏତେବଡ଼ ଦାୟିତ୍ୱସଂପନ୍ନ ମଣିଷଟାର ଉପରଟା ଯେତିକି ଟାଣ ଭିତରଟା ସେତିକି ନରମ । ଆବଶ୍ୟକ ସ୍ଥଳେ ବର୍ଷା ଭଳି ଅଜାଡ଼ି ହେଇ ପଡ଼ିବ ।"

କେଜାଣି ହେଇଥିବ । ମଣିଷ ପରିଖିବାର ଯୋଗ୍ୟତା ଅଛି ଅନୁପମାର ନିଶ୍ଚୟ । ଅବଶ୍ୟ ସମସ୍ତଙ୍କ ସହିତ ସହଜରେ ସେ ମିଶିପାରନ୍ତିନି ସତ, ହେଲେ ଯୋଉମାନଙ୍କ ସହିତ ତାଙ୍କର ସଂପର୍କ ଘନିଷ୍ଟ ଭାବେ ଗଢ଼ି ଉଠିଛି, ସେଇମାନଙ୍କୁ ଛାଡ଼ିଯିବା କଥା ଭାବିଲାବେଳକୁ ଭାରି କଷ୍ଟ ଲାଗୁଛି । ସତରେ ଇଏ ଗୋଟାଏ ମୋହ । ବନ୍ଧନ । ଭଲକଥା ନୁହେଁ ମୋଟେ । ଯାକୁ ନଛିଣେଇଲେ ମୁକ୍ତି ନାହିଁ ମଣିଷର । ନହେଲେ ଇଏ ଦୁଃଖ ହିଁ ଦେବ ପଦେ ପଦେ । କି ପୁଅ, କି ଝିଅ, କିଏ ସ୍ତ୍ରୀ, କିଏ ବଂଧୁ ସବୁକୁ ସବୁ ମିଛ । ମାୟା ସବୁ କୁହୁଡ଼ି ଭଳି ।

ଶଙ୍କରାଚାର୍ଯ୍ୟଙ୍କ ମାୟାବାଦ ଉପରେ ଅନେକ ତାତ୍ତ୍ୱିକ ଆଲୋଚନା କରୁଥିଲେ ବାପା ବଞ୍ଚିଥିଲା ବେଳେ । ଅନେକ ପ୍ରବଚନ ସେ ଶୁଣିଛନ୍ତି ତାଙ୍କର । ସେତେବେଳେ କିଛି ପଶୁନଥିଲା ମଗଜରେ । ଗୀତା ତ ଛୁଇଁ ନଥିଲେ । ବାପା ଦେଇଥିବା ଗୀତା ପକେଟ ସାଇଜର, ଏବେବି ଥୁଆ ହୋଇଛି ଟେବୁଲ୍ ଉପରେ । ବଞ୍ଚିଥିଲା ବେଳେ ମଝିରେ ମଝିରେ ପଚାରନ୍ତି ବାପା । ପଢୁଛୁ ନା ଗୀତା ?

ଉତ୍ତରରେ ମିଛ ତ କହିପାରନ୍ତିନି, ମୁଣ୍ଡପାତି ଦିଅନ୍ତି – 'ପଢ଼ିବି ସମୟ ଆସିଲେ ।'

ବାପା କୁହନ୍ତି, "ଠିକ୍ ଅଛି, କର୍ତ୍ତବ୍ୟ ଆଗ । ଗୀତା ତ ସେଇ କଥା କହିଛି । ତଥାପି ସମୟ କରି ଗୋଟେ ଅଧେ ଶ୍ଳୋକ ପଢ଼ିବାର ଅଭ୍ୟାସକର ।" ହଠାତ୍ ଚମକିଲା ଭଳି ତାଙ୍କର ମନେ ପଡ଼ିଗଲା । ବୋଧେ ସେଇ ସମୟ ଆସିଗଲା । ଆଉ ମାତ୍ର କେଇଟା ଘଣ୍ଟା । କାଉଣ୍ଟ୍‌ଡ଼ାଉନ୍ ଆରମ୍ଭ ହେଇ ଗଲାଣି । ରାତିପାହି ସକାଳ ହେବ । ଅଫିସ୍ ଆସିବେ ସେ ସବୁଦିନ ଭଳି । ଶେଷଥର ପାଇଁ । ତା'ପରେ...

ହୁଏତ ବିଦାୟ ଫୁଲତୋଡ଼ା ସହିତ ବଂଧୁମାନେ ଜଣ ଜଣ ହେଇ ଆସିବେ । ବିଦାୟ ନେବାକୁ । ଗୀତାଟିଏ ବଢ଼େଇଦେଇ ବିଦାୟ ସଂଭାଷଣ କରିବେ । ସୁସ୍ଥ ନିରାମୟ ଜୀବନର କାମନା ଅଜାଡ଼ି ଦେବେ । କିଛି ପ୍ରଶଂସା, ଗୁଣ ସ୍ତୁତି ବି କରିବେ ହୁଏତ । କେହି କେହି ଅଭିମାନ ମଧ୍ୟ କରିପାରନ୍ତି ତାଙ୍କ ପାଇଁ କିଛି କରିଗଲେନି ବୋଲି । ଆଜିର ଏଇ ମୁହୂର୍ତ୍ତର ସମର୍ଥ, ପାରଙ୍ଗମ, ଉଜ୍ଜ୍ୱଳ, ଡାଇନାମିକ୍ ବ୍ୟକ୍ତିତ୍ୱ ଆଗାମୀ ସକାଳର ସୂର୍ଯ୍ୟାସ୍ତ ପୂର୍ବରୁ ହଠାତ୍ ଅପାରଗ, ଅସମର୍ଥ ଅଦରକାରୀ ବରିଷ୍ଠ ନାଗରିକଟିଏ ପାଲଟିଯିବ । ଦେଶ, ଜାତି ଅନୁଷ୍ଠାନ ଅଥବା ମଣିଷ ପାଇଁ କିଛି ଆଉ ଚିନ୍ତା ନ କରି କୁଆଡ଼େ ନିଜ ଜୀବନର ମୁକ୍ତି ପାଇଁ କେବଳ ଚିନ୍ତା କରିବାକୁ 'ଗୀତା' ମାଧ୍ୟମରେ ସହକର୍ମୀ ବଂଧୁମାନେ ତାଙ୍କୁ ଅନୁରୋଧ କରିବେ । ସମସ୍ୱରରେ ଉଚ୍ଚାରଣ କରିବେ ସଂପର୍କ ଛିଣ୍ଡେଇବାକୁ, ମୋହ କଟେଇବାକୁ, ଈଶ୍ୱରଙ୍କ ଚିନ୍ତା କରିବାକୁ ଏବଂ ଆବଶ୍ୟକ ବେଳେ ସେମାନଙ୍କୁ ମନେ ପକେଇବାକୁ । କାରଣ ସେମାନେ କୁଆଡ଼େ କର୍ମ ଜଂଜାଳୀ, ବ୍ୟସ୍ତ ମଣିଷ । ମନେ ମନେ ହସିଲେ ଅରିନ୍ଦମ । ଇଏ ବି ଗୋଟାଏ ପ୍ରକାରର ମାର୍ଜିତ ଛଳନା । ତେବେ ଏଇ ଅଠାବନ ବର୍ଷଟା ଭାରି ଶକ୍ତିଶାଳୀ । କେତେକଥା ମନେ ପକେଇ ଦଉଛି ଏବଂ ଓଲଟପାଲଟ କରି ଥୋଇ ଦେଉଛି ମଧ୍ୟ । ଭାବନା ପ୍ରସଙ୍ଗରେ ତାଙ୍କର ମନେ ପଡ଼ିଗଲା ବୋଉ କଥା । ଥରେ ସେ କହିଥିଲା ଏଇ ମୋହ ତ୍ୟାଗ ସଂପର୍କରେ – ତା'

ଅଜା କୁଆଡ଼େ ତାଙ୍କ ମରଣ ସମୟ ଜାଣି ପାରିଥିଲେ । ଆଉ ସେଇ ଜୀବ ଛାଡ଼ିବା ସମୟଟା କୁଆଡ଼େ ଜୀବ ପାଇଁ ସବୁଠାରୁ ସ୍ପର୍ଶକାତର ମୁହୂର୍ତ୍ତ । ଆତ୍ମା ଯେତେବେଳେ ପରମାତ୍ମାଙ୍କ ଆଡ଼କୁ ଉନ୍ମୁଖ ଥିବ, ସେତିକିବେଳେ ଏଇ ମୋହଗ୍ରସ୍ତ ପୃଥିବୀର ଆତ୍ମୀୟ ସ୍ୱଜନ, ବିଶେଷ କରି ପତ୍ନୀ, ପୁତ୍ର କନ୍ୟାଙ୍କ ଆକର୍ଷଣ ସେଇ ମାର୍ଗରେ ପ୍ରତିବନ୍ଧକ ହେଇ ବାଟ ଓଗାଳେ, ମାୟାଞ୍ଜନ ବୋଳେ । ତେଣୁ ଜ୍ଞାନୀମାନୀ ଅଜା ତାଙ୍କ ପାଖରେ ଠିଆ ହୋଇଥିବା ବ୍ୟାକୁଳ ହୃଦୟା ଅଶ୍ରୁମୁଖୀ ସମର୍ପିତା ପତ୍ନୀଙ୍କୁ ଜୋର ଜବରଦସ୍ତ ପାଖରୁ ହଟେଇ ମୋହମୁକ୍ତ ହେବାକୁ ପ୍ରୟାସ କରିଥିଲେ । ବୋଉପାଟିରୁ ଏକଥା ଶୁଣିଲାବେଳେ ଜଣେ ବାସ୍ତବବାଦୀ ବିଜ୍ଞାନ ଛାତ୍ର ହିସାବରେ ତାଙ୍କୁ ଯେ ଅପ୍ରାସଙ୍ଗିକ ଓ ଅବାସ୍ତବ କେବଳ ନୁହେଁ ଅମାନୁଷିକ ବି ମନେହେଉଥିଲା । କାରଣ ଈଶ୍ୱର ଜ୍ଞାନରେ ହେଉ ଅଥବା ଭଲ ପାଇବାର ମାପରେ ହେଉ, ପ୍ରିୟଜନର ଶେଷ ମୁହୂର୍ତ୍ତଟି ତା'ପାଇଁ ଏକ ମହାର୍ଘ ମୁହୂର୍ତ୍ତ । ସେଥିରୁ ତାକୁ ବଞ୍ଚିତ କରିବା ନିଷ୍ଠୁରତା ମାତ୍ର । ତେଣୁ ସେଦିନ ବୋଉକଥାକୁ ବାଜେକଥା କହି ଫୁତ୍କାରରେ ଉଡ଼େଇ ଦେଇଥିଲେ ବେଖାତିର୍‌ରେ ।

କିନ୍ତୁ କାଲି, ଯେତେବେଳେ ଫୁଲତୋଡ଼ା ଓ 'ଗୀତା'କୁ ହାତରେ ଧରି ସେ ଘରକୁ ଫେରିବେ...

ହଠାତ୍ ଦର୍ପଣର ଛାତିରେ ଆଉ ଜଣକର ଚେହେରା ଭାସି ଉଠିଲା । ସୌମ୍ୟ, ଶାନ୍ତ ସମାହିତ ପୁରୁଷ । କଣ୍ଠରେ ରୁଦ୍ରାକ୍ଷମାଳା, କପାଳରେ ଚନ୍ଦନଟୀକା, ମଠାଧୋତି ପରିହିତ, କାନ୍ଧରେ ନାମାବଳୀ, ହାତର ଅବଲମ୍ବନ ରୁପାଗୋଵ ଥିବା ପୂର୍ବପୁରୁଷୀ ବାଡ଼ି ଖଣ୍ଡିକ- ମୁହଁରେ ସ୍ନିଗ୍ଧହସ ।

କିଏ ??

ଚିହ୍ନା ଚିହ୍ନା ତ ଲୁଗୁଛି । ବାପା ! ଅଜା !·ନା ଜେଜେ !! କିଏ ? ତାଙ୍କରି ମୁହଁ ଭଳି ତ ଦିଶୁଛି କ'ଣ ।

ଆଉ ଟିକିଏ ଗହୀରେଇ ରହିଁଲେ, ଆରେ, ଚିହ୍ନି ପାରୁନାହାନ୍ତି କ'ଣ ଯେ, ସିଏ ନିଜେ ପରା !

ଆଉ ଅନୁପମା ! ଅନୁପମା କାହିଁ ? ଅନୁପମା... ଅନୁପମା/ ଅନୁ... ତାଙ୍କ ଭିତରେ କିଏ ଯେମିତି ଚିତ୍କାର କରି ଉଠିଲା ବାତୁଳ ଭଳି । ଅଠାବନ ବର୍ଷଟା କ'ଣ ଏଡ଼େ ନିଷ୍ଠୁର ଯେ, ତାଙ୍କ ପାଖରୁ ଅନୁପମାକୁ ଛଡ଼େଇ ନେଲା, ତାଙ୍କୁ ଏକା ଠିଆ କରେଇ ଦେଇ ! ନା, ହେଇପାରେନା ଏକଥା କେବେ । ଆଜୀବନ ତାଙ୍କ ହାତକୁ ଦୃଢ଼ ଭାବେ ଧରିଥିବା ଅନୁପମା, ଆଜି ତାଙ୍କ ହାତରେ 'ଗୀତା' ଦେଖି ହଠାତ୍ ହାତ ଛାଡ଼ିଦେଇ କୁଆଡ଼େ ମୁହଁଲୁଚ ଦେଲା- ।

ସେ ବ୍ୟାକୁଳ ହୋଇ ଚିତ୍କାର କଲେ ଅନୁପମା... ଅନୁ... । ହାତଟା ଅଭ୍ୟସ୍ତ ଢଙ୍ଗରେ ଯାଇ ବାଜିଲା ଟେବୁଲ ପାଖ କଲିଂବେଲ୍‌ରେ ।



# ସୁଲକ୍ଷଣାଙ୍କ ଭାଲେଣ୍ଟାଇନ୍ ଡ଼େ

ଆଗରେ ଅଛି କୁମ୍ଭ ସଂକ୍ରାନ୍ତି । ମହାକୁମ୍ଭ ମେଳା ।

ଏତେବଡ଼ ତ୍ରିବେଣୀ ବୁଡ଼, ଅନେକ ବର୍ଷ ପରେ ପଡୁଛି । ଅମୃତ ଯୋଗ । ଗାଁସାରା ଉଛନ୍ନ ଆଲାହାବାଦ ଯିବା ପାଇଁ । ଗଲେଣି ଅନେକେ ଏଇ ଦି'ମାସ ଭିତରେ । ସାଇପଡ଼ିଶା, ଆତ୍ମୀୟ, ବନ୍ଧୁକୁଟୁମ୍ବ ସମସ୍ତେ ଡାକିଲେ ତାଙ୍କୁ, 'ଚାଲଯିବା ସାଥିହୋଇ, ଜୀବନରେ ତ ଥରେ ମାତ୍ର... ସଂଗମରେ ବୁଡ଼ ପକେଇବା କଥା- ବୁଡ଼ ନ ଦେଲେ ଏଇ ପାର୍ଥିବ ଶରୀରରୁ ପାପତାପର ମଳି ଛାଡ଼ିବ କିମିତି କହୁନ... ସଂସାରର ନର୍କଯନ୍ତ୍ରଣା ଭିତରେ ଘାଣ୍ଟି ଚକଟି ହୋଇ ଦେହ ମନ ଅଶୁଦ୍ଧ, ପଙ୍କିଳ ହେଇଯାଇଛି । ଏମିତି ତ ଆମପାଇଁ ସଂସାର ଜଂଜାଳ ଆଉ ଅପେକ୍ଷା କରିନି । ସଂଜ ଆସି ଗେରୁଆ ପିନ୍ଧେଇଲାଣି, ମାଡ଼ି ଆସିବ ଅନ୍ଧାର ହୁହୁ ହୋଇ । 'କିଏ ଜାଣେ କେତେବେଳେ ଆରପୁରରୁ ଡାକରା ଆସିଯିବ...' ଶୋଭାନାନୀ, ଶାରୀକା ଭାଉଜ, ଦିନୁ ମଉସା ହେରିକା କହିଲେ କେତେ ପ୍ରକାର କରି । ଶାରୀ ଭାଉଜ କହିଥିଲା, 'କୁହ ଥରେ ତମେ ଅରୁଣକୁ, ତାର ତ ଟଙ୍କା ପଇସାରେ ଟାଣଟୁଣ୍ ନାହିଁ । ଯାହା ମନର ଭୟ, କାଳେ ତା' ବୋଉର ଭଲମନ୍ଦ କିଛି ଘଟିଯିବ ବୋଲି' ତ... ଆପଣାପଣ ଦେଖେଇ କହିଥିଲା, 'ତମେ ତାକୁ ବୁଝେଇଦେବନି ଆମେ ସମସ୍ତେ ଅଛୁ ଯେତେବେଳେ ଭୟ କ'ଣ! ତା' ଛଡ଼ା ବୋଉ ଜୀବନର ଗତିମୁକ୍ତି ପାଇଁ, ତାର ବି ତ କିଛି କର୍ତ୍ତବ୍ୟ ଅଛି । ସେ କେବେ ମନା କରିବନି ମ ନାନୀ, ତମେ ଖାଲି ତା' କାନରେ ପକାଅ କଥାଟା । ଶାରୀ ଭାଉଜଟା ଭାରି ଭଲ । ତାକୁ ଖୁବ୍ ଭଲପାଏ । ସଂପର୍କର ଭାଉଜ ହେଲେ କ'ଣ ହେଲା, ସୁଲକ୍ଷଣାଙ୍କର ବି ମନ ଥିଲା, ଥରେ ଯା'ନ୍ତେ । ଜୀବନରେ କେବେ ତ କିଛି ପରମାର୍ଥିକ ଚିନ୍ତା କରି ନାହାନ୍ତି ଘର ଘର ବୁଲି,

ଝିଅ ଧୂମନା ବି ଫୋନ୍ କରିଥିଲା । 'ତା' ଶାଶୂଶ୍ୱଶୁର ଯାଉଛନ୍ତି, ଭାଇଙ୍କୁ କହ' ହେଲେ ଅରୁଣ... ସବୁ ଶୁଣିଲା, ରାଜି ହେଲାନି । କହିଲା, 'ଏଇ ଯୋଉ କୋଟି କୋଟି ମଣିଷଙ୍କ ଗହଳି - ସେଥିରେ ଘରୁ ଜଣେ ଗୋଡ଼ କାଢ଼ି ଗଲେ, ନିଶ୍ଚିନ୍ତରେ ପୁଣି ଫେରିଆସି ପାରିବ ମୋର ତ ବିଶ୍ୱାସ ହେଉନି ବୋଉ । ବୋହୂ ନନ୍ଦା କହିଲା, 'ତମର ଆଉ ବଳବୟସ ନାହିଁ ବୋଉ, ବୁଡ଼ପକାଇ ଧର୍ମକର୍ମ କରିବାକୁ ।'

ଅରୁଣ ନିଜର ନିଷ୍ପତ୍ତି ଜଣେଇଦେଲା– "ତୁ ମୋ ପାଖକୁ ଚାଲିଆ, ଘରେ ରଖିଦେଇ ଆମେ ସମସ୍ତେ ମିଶି ପୁରୀ ଯିବା, ମହୋଦଧିରେ ତୁ ବୁଡ଼ ପକାଇବୁ । ଦର୍ଶନ କରିବୁ ମହାପ୍ରଭୁଙ୍କୁ – ତ୍ରିତାପ ଖଣ୍ଡନ ପାଇଁ ସମସ୍ତେ ଆସୁଛନ୍ତି ଶ୍ରୀକ୍ଷେତ୍ର । ସେଇ ତ ଗତିମୁକ୍ତିର ଦାତା । ମହୋଦଧି ବି ସବୁ ନଦନଦୀଙ୍କୁ ସ୍ଥାନ ଦେଇଛି ନିଜ ଭିତରେ । ଅସୁବିଧା କ'ଣ ବରଂ ଗହଳି ଭାଙ୍ଗିଲେ ଆସନ୍ତା ପୂଜା ଛୁଟିରେ ତୋତେ ହରିଦ୍ୱାର ନେଇଯିବି... ଏତେ କଷ୍ଟ ସମ୍ଭାଳିବା ତୋ' ପାଇଁ ସମ୍ଭବ ନୁହେଁ... ମନ ଜଣା କରନି ।"

କ'ଣ ଆଉ କରିଥାନ୍ତେ ସେ ? ଉପରା ଆଉ କ'ଣ ଥିଲା । ସତ କହିଲେ, ଅରୁଣ ହିଁ ତାଙ୍କର ପ୍ରାଣ, ସେଇ ଗତିମୁକ୍ତି, ଗାଁରେ ସେ ରହୁଛନ୍ତି ବୋଲି ବି ତା ମନକୁ ପାଉନି । ସଂଜ ସକାଳେ ଥରକୁଥର ଫୋନ୍ କରି ଖବର ବୁଝିବ । ଆଉ କୁମ୍ଭ ତ ବହୁତ ଦୂର । ଛାଡ଼ । ତାଙ୍କ ଭାଗ୍ୟରେ ଏସବୁ ନାହିଁ । ଥିଲେ ଅରୁଣ ବାପା କାହିଁକି ତାଙ୍କୁ ଏକା ଛାଡ଼ି ଯାଇଥାନ୍ତେ ! – ଆଖି ଜକେଇ ଆସେ । ଏଣିକି ଆଶା ଭାଂଗିଗଲେ, କି ଅଭିମାନ ଆସିଲେ ମନକୁ, ସେଇ ଅରୁଣ ବାପାଙ୍କୁ ମନେପକେଇ, ଭାବନାରେ ପୂର୍ଣ୍ଣଚ୍ଛେଦ ଟାଣି ଦୀର୍ଘଶ୍ୱାସ ଛାଡ଼ନ୍ତି । ଏଇଟା ତାଙ୍କର ଅଭ୍ୟାସରେ ପଡ଼ିଗଲାଣି । କାହା ଆଖିରେ ପଡ଼ିଗଲେ କିମ୍ବା କିଏ ପଚାରିଲେ କୁହନ୍ତି– ତମେମାନେ କିମିତି ଜାଣିବ, ମୋର କୋଉଠି କଷ୍ଟ ହେଉଚି ।

ଅରୁଣ କିନ୍ତୁ ବୁଝିପାରେ, ବୋଉର କୋଉଠି ଅଭିମାନ । ଧାଇଁ ଆସେ ପାଖକୁ, ଯେତେ କାମର ଭିଡ଼ ଥିଲେ ବି । ଏଥର ମଧ୍ୟ ଗାଁକୁ ଯାଇଥିଲା ତାଙ୍କୁ ନେଇ ଆସିବ ବୋଲି । ସେଇ ଯୋଉ ଆସିଛନ୍ତି ଭୁବନେଶ୍ୱର, ଫେରିନାହାନ୍ତି ଗାଁକୁ । ପିଲାଏ ବି ଛାଡୁ ନାହାନ୍ତି । ନାତୁଣୀ ସୁମା, ରୁମା ସ୍କୁଲ ଯିବା ସମୟ ତକ ଛାଡ଼ିଦେଲେ ସବୁବେଳେ ପାଖରେ । ଇଂଲିସ୍ ସ୍କୁଲରେ ପଢୁଛନ୍ତି । ଅଷ୍ଟମ ଓ ନବମ ଶ୍ରେଣୀରେ । ବୟସ ଉତୁରି ଆସୁଛି – ସତେଯେମିତି ଛଳଛଳ ଝରଣା । ସେ ଦୁହେଁ ନଥିଲେ, ତାଙ୍କୁ ଭାରି ଏକୁଟିଆ ଲାଗେ । ବୋହୂ ତ କୁଟାଖିଅକୁ ଦି'ଖଣ୍ଡ କରିବାକୁ ଦିଏନି । ସବୁକାମକୁ ଧୁରନ୍ଧର । କିଛି ନା କିଛି କାମରେ ସେ ଲାଗିଥାଏ । ବସି ବସି ହାଲିଆ ଲାଗେ । କେତେ ଦେଖିବେ ଟିଭି । ଆଖିର ଦୃଷ୍ଟି ବି ମହଳଣ ପଡ଼ିଲାଣି - ପଢ଼ିପାରୁ ନାହାନ୍ତି ବେଶି ସମୟ । ଗାଁରେ ଜୀବନଟା ଆଉ ପ୍ରକାର ଚାଲୁଥିଲା । ସମବୟସୀ, ବନ୍ଧୁକୁଟୁମ୍ବଙ୍କ ଯିବାଆସିବା ଲାଗି ରହୁଥିଲା । ସୁଖଦୁଃଖ, ଭଲମନ୍ଦକୁ ଚାରିଜଣଙ୍କ ସହିତ ଭାଗ କରୁକରୁ ଦିନ କଟିଯାଉଥିଲା । ପୂଜାପର୍ବ, ଠାକୁର ଦିଅଁ, ବାଡ଼ିବଗିଚା ଭିତରେ ସମୟ କିମିତି

କଟିଯାଉଥିଲା, ସେ ଜାଣିପାରନ୍ତିନି । ତା'ରି ଭିତରେ ବି ପିଲାଙ୍କ ଫୋନ୍‌କୁ ଅପେକ୍ଷା । ସୁଲକ୍ଷଣା ଦୋ'ତାଲାର ବାଲକୋନି ଉପରେ ବସି ସହରୀ ଗହଳଚହଳକୁ ଲକ୍ଷ୍ୟ କରୁ କରୁ ଭାବିଲେ, ମଣିଷମନଟା କିମିତି ଗୋଟାଏ ବିଚିତ୍ର ପ୍ରକାରର । ଏଠି କେତେ ସୁଖରେ ଅଛନ୍ତି । ତଥାପି ସେଠା କଥା, ସେଠା ମଣିଷ ମନେ ପଡୁଛନ୍ତି । ଅଥଚ ସେଠି ଥିଲେ, ଏଠା ପିଲାଙ୍କ ଚିନ୍ତା । ମଝିରେ ମଝିରେ ତାଙ୍କୁ ଏମିତି ଆନମନା କରିଦେଉଥିଲା ଯେ, ଯେତେ ରାତି ହେଲେ ବି ଅରୁଣ ଫୋନ୍‌କୁ ଅନେଇ ବସୁଥିଲେ । ନହେଲେ ଫୋନ୍ ଲଗାଉଥିଲେ କିମିତି ଅଛରେ ସବୁ ?'

ଅରୁଣ ବ୍ୟସ୍ତ ହେଇ ପ୍ରଶ୍ନ ଲେଉଟାଏ– 'ଏତେ ରାତି ହେଲାଣି, ତୁ ଏଯାଏ ଶୋଇନୁ ବୋଉ ? ଦେହ ଭଲ ଅଛିଟି ? ଔଷଧ ଖାଇଛୁ ? ସକାଳେ ପରା ନନ୍ଦା ସାଂଗରେ କଥା ହେଇଥିଲୁ ?

'ହେଇଥିଲି ତ । ହେଲେ ମନଟା ବଡ଼ ଅଥୟ ଲାଗିଲା, ଭାବିଲି କିଛି ଆଉ ଅଘଟଣ ଘଟିଲା କି ? ପିଲା ଦି'ଟା ସ୍କୁଲ ଯାଉଛନ୍ତି । ତୁ ଅଫିସ୍ ଯାଉଛୁ । ବାହାର କଥା, ଭଲମନ୍ଦ କିଛି ହେଲେ ନନ୍ଦାଟା କ'ଣ କରିବ ଏକୁଟିଆ । ମା' ମନ କୌଣସି ଯୁକ୍ତିକୁ ମାନେନାରେ ପୁଅ, ସେଇଥିପାଇଁ ଫୋନ୍ କଲି, ତୁ ଯା' ଏଥର ଶୋଇପଡ଼ । ମୁଁ ରଖୁଛି । ଅରୁଣ ହସେ । କୁହେ ମୁଁ ତୋତେ ବାରଂବାର କହୁଛି, ତୁ ଆଉ ଏକୁଟିଆ ଗାଁରେ ଘରେ ରହନା, ଚାଲିଆସ ମୋ ପାଖକୁ, ଆମେ ସମସ୍ତେ ତୋ' ପାଖରେ ଥିଲେ, ତୋତେ ଆଉ ଭାବିବାକୁ ପଡ଼ିବନି । ଜମିବାଡ଼ି ଚାଷବାସର ବ୍ୟବସ୍ଥା ମୁଁ ବୁଝିବିନି ? ସେ ସବୁ ମୋତେ କିଛି ବଡ଼ କଥା ନୁହେଁ । ହେଲେ ତୁ ସିନା ବୁଝିଲେ...

'ବୁଝୁଛି ବାବା, ସବୁ ବୁଝୁଛି । ତେବେ କଥା କ'ଣ କି, ଏଇ ଘରେ ତୋ' ବାପାଙ୍କ ସହିତ ଦୀର୍ଘ ଚାଳିଶ ବର୍ଷ କଟେଇଲି । କେତେ ସ୍ମୃତି, ଅନୁଭୂତି, ସୁଖଦୁଃଖ, ପରସ୍ତ ପରସ୍ତ ହୋଇ ସାଇତା ରହିଛି ଏଇ ଘର ଭିତରେ । ଏଇଠି ତୋ ବାପା ଶେଷ ନିଃଶ୍ୱାସ ଛାଡ଼ିଯାଇଛନ୍ତି । ଏ ଘର ମୋର ତୀର୍ଥଭୂମି । ସେ ଅପେକ୍ଷା ବି କରିଛନ୍ତି ମୋ ପାଇଁ ମାଟି ଚାଖଣ୍ଡେ ଥୋଇ । ଏତେବେଳକୁ ମୁଁ ଦେଶାନ୍ତରୀ କାହିଁକି ହେବି ? ବାପା ତୋର ସ୍ୱାର୍ଥୀ କହିବେନି ମୋତେ ? ଘର ତ ଏଇଟା ନା । ପେଟ ପାଇଁ ତମେ ସବୁ ବାହାରେ ଅଛ ବୋଲି କ'ଣ ସବୁଦିନେ ଥିବ, ଆସିବ ତ ନିଶ୍ଚେ । ତା' ଛଡ଼ା ମୁଁ କେବେ ତୋ ବାପାଙ୍କୁ ଛାଡ଼ି କୁଆଡ଼େ ଯାଇଛି କି ? ସେ ସିନା ସ୍ୱଦେହରେ ନାହାନ୍ତି, ହେଲେ ମୋତେ ଲାଗେ ସେ ଅଛନ୍ତି ... ଏଇ ଆସିବେ, ସଉଦା ନେଇ ।

କହିସିନା ଦିଅନ୍ତି ମା'ପଣର ଦମ୍ଭ ଦେଖାଇ, ହେଲେ ମନ ଥୟ ଧରେନା, ଛଟପଟ ଜୀବନ, କୁଆଡ଼ର ନୁହେଁ । କାହାକୁ ଛାଡ଼ି ହୁଏନା; ନା, ସ୍ୱାମୀ ନା ସନ୍ତାନ । ତାଙ୍କ ପାଇଁ ଦୁହେଁ ସମାନ । ଏକା ବ୍ୟାକୁଳତା ଦୁହିଁଙ୍କ ପାଇଁ । କାହାକୁ ବି ସେ ନିଜଠୁ ଅଲଗା କରି ରହି ପାରିବେନି । କେମିତି ରହିବେ ? ଦୁହେଁ ତ ତାଙ୍କରି ।

ଜଣକୁ ସେ ନିଜେ ରକ୍ତମାଂସ, ଭାବଭାବନା, ସ୍ୱପ୍ନସଂଭାବନାର ରଂଗ ଦେଇ ଗଢ଼ିଛନ୍ତି – ତାରି ଭିତରେ ନିଜକୁ, ନିଜ ମୁହଁକୁ ଦେଖୁଛନ୍ତି । ସିଏ ତାଙ୍କ ପ୍ରତିରୂପ, ଦର୍ପଣ । ଏବଂ ଆଉ ଜଣକ ତାଙ୍କୁ ସଜାଡ଼ିଛି, ତା' ସ୍ୱପ୍ନ ସମ୍ଭାବନା, ଆଦର୍ଶ, ଭାବଭାବନା, ଭଲ ପାଇବାର ରଂଗତୂଳୀ ମାରି, ତା' ଢଙ୍ଗରେ, ତା' ମନମୁତାବକ, ଆଉ ସେ ନିଜେ ଆତ୍ମବିଭୋର ନଦୀଟିଏ ଭଳି ତାରି ଗୀତ ଗାଉ ଗାଉ ଏତେବଡ଼ ଜୀବନର ଲମ୍ବା ରାସ୍ତା ଚାଲି ଆସିଛନ୍ତି । ଫେରି ଚାହିଁଲେ ଏନ୍ତୁଡ଼ିଶାଳ ଦିଶୁନି ଆଉ । ତା' ପାଦରେ ପାଦ ମିଶାଇ ବାଟ ଚାଲୁ ଚାଲୁ, କେବେ ଯେ ନିଜ ଚାଲିବା ଢଂଗଟାକୁ ବି ଭୁଲି ସାରିଲେଣି, ମନେ ନାହିଁ । ମନେ ନାହିଁ ମଧ୍ୟ କେବେଠୁ ତାଙ୍କ ସ୍ୱପ୍ନ, ଆଉ ଜଣକ ସ୍ୱପ୍ନ ସହିତ ମିଶି ଏକାକାର ହୋଇଯାଇଛି, କିଛି ମନେ ନାହିଁ । ଚକିତ ଲାଗେ ଭାବିଲେ, ସେଇ କେଉଁ ମାଂଗଳିକ ଲଗ୍ନରେ ଦୁଇଟି ଅଚିହ୍ନା ମଣିଷ ବିଶ୍ୱାସ ଆଉ ଭଲ ପାଇବାର ନିଃସର୍ତ୍ତ ଦସ୍ତାବିଜ ଉପରେ ଅଲିଖିତ ସ୍ୱାକ୍ଷର ଦେଇ ବାନ୍ଧିହେଇ ଯାଇଛନ୍ତି ଜନ୍ମଜନ୍ମାନ୍ତର ପାଇଁ, ସଂପର୍କର ଏଇ ଡୋରୀ ତ ଛିଣ୍ଡିବାର ନୁହେଁ – କେହି ମନେ ପକେଇବା ବି ଆବଶ୍ୟକ ନୁହେଁ । ଭାବୁ ଭାବୁ ସୁଲକ୍ଷଣା ଭାବପ୍ରବଣ ହୋଇପଡ଼ନ୍ତି ।

ନାରୀର ଜୀବନ ହିଁ ଏମିତି – ନଦୀଟିଏ ଭଳି । ଦି' କୂଳକୁ ଧରି ବହି ଚାଲିଥିବ... ସଂପର୍କର ଶାଖାପ୍ରଶାଖା ମେଲେଇ, ସ୍ନେହ ସରାଗର, ଶ୍ରଦ୍ଧାସଦିଚ୍ଛାର ସବୁଜିମା ବାଣ୍ଟି ବାଣ୍ଟି । ଜୀବନ ଗଢୁଥିବ ସଂପର୍କ... ସଂପର୍କରୁ ସଂପର୍କ ହେଇ କେତେ ସଂପର୍କ, ପିଢ଼ିରୁ ପିଢ଼ି... ଜନ୍ମରୁ ଜନ୍ମାନ୍ତର ହୋଇ କାଳରୁ କାଳାନ୍ତର ଯାଏ । କେତେ କଥା, କେତେ କାହାଣୀ, କେତେ ଇତିହାସର ସୃଷ୍ଟି କରି ।

ସବୁ ସେଇ ଦୁଇଟି ମଣିଷ ପାଇଁ ତ । ଏକ ଅଲଂଘ୍ୟ ପ୍ରତିବଦ୍ଧତା ନେଇ । ସୁଲକ୍ଷଣା ଭାବି ଯାଉଥିଲେ ନିଜ ଭାବିବା ଢଂଗରେ । ଭାବନା ସୂଅରେ ଭାସି ଯାଉଯାଉ କେତେବେଳେ କିମିତି ମୁହୂର୍ତ୍ତେ ଥୟ ଧରି ତଟସ୍ଥ ହେଇ ଚାହୁଁଥିଲେ ଆଗକୁ ପଛକୁ । ପୁଣି କେତେବେଳେ ସୁଅର ତୋଡ଼ରେ ମାଡ଼ିଯାଇ ସମଗ୍ର ମାନବଜାତିକୁ ଦରାଣ୍ଡି ପକଉଥିଲେ ନିଜ ଆଖି ଆଉ ବିଚାର ନେଇ । ସମସ୍ତେ ଲାଗୁଥିଲେ ଆପଣାର ।

ଏଇ ଭାବନାର ଖେଳ ତାଙ୍କ ପାଇଁ କିଛି ନୂଆ ନୁହେଁ । ନିଛାଟିଆ । ଏକୁଟିଆ ବେଳରେ ସେ ଏମିତିକା ଖେଳରେ ମାତିଯାନ୍ତି । ପୁଣି ନିଜ ପାଦତଳର ମାଟିକୁ ଛୁଇଁଲା ପର୍ଯ୍ୟନ୍ତ । ଛୁଇଁସାରି ଭାବନ୍ତି – ସତକଥା ତାଙ୍କ ଜୀବନର ସବୁ ଭାବଭାବନା, ହର୍ଷଉଲ୍ଲାସ, ବର୍ଷା ବସନ୍ତ, ସେଇ ମଣିଷଟାକୁ କେନ୍ଦ୍ର କରି, ସେ ମୂର୍ତ୍ତ କି ଅମୂର୍ତ୍ତ, ତାଙ୍କର ସମସ୍ତ ମୁହୂର୍ତ୍ତ ଉତ୍ସର୍ଗୀତ ହୁଏ ମଣିଷଟା ପାଇଁ । ତାଙ୍କୁ ବାଦ୍‌ଦେଇ ଦେଲେ ନିଜ ସ୍ଥିତି କାହିଁ ?

ଅପରାହ୍ନର ସୂର୍ଯ୍ୟ ମଉଳି ଆସେ କ୍ରମଶଃ । ଭାବନା ସହିତ ତାଳଦେଇ । ରାସ୍ତା ଉପରେ ଅଗଣିତ ମଣିଷଙ୍କ ଗହଳି ବଢୁଥିଲା । ସ୍କୁଲ ଆଉ ଅଫିସ୍ ଫେରନ୍ତି ସମସ୍ତେ ଏକଲୟରେ ଚାଲିଛନ୍ତି ଘରମୁହାଁ । ଶୁଖିଲା ଦିଶୁଛି ମୁହଁସବୁ ।

ନନ୍ଦା ବୋଧେ ଟିକିଏ ଶୋଇପଡ଼ିଛି କ୍ଲାନ୍ତ ହୋଇ । ସିଲାଇ ମେସିନର ଖଟ୍‌ଖାଟ ଶବ୍ଦ ଶୁଭୁନି । ଶୋଇଥାଉ ବିଚରୀ ଆଉ ଟିକିଏ । ସିଏ ବି ତ ସ୍ୱାମୀ ଆଉ ସନ୍ତାନ ପାଇଁ ନିଜ ଦିନରାତିକୁ ସମର୍ପି ଦେଇଛି, ନିଜ ପାଇଁ ଫୁରୁସତ୍ ନାହିଁ ତା'ର । ଆଉ ଟିକିଏ ପରେ ଅରୁଣ ଫେରିବ ଅଫିସ୍‌ରୁ । ସୁମାରୁମା ଫେରିବେ ସ୍କୁଲରୁ । ଫେରିଆସନ୍ତେଣି, ଆଜି କାହିଁକି ଡେରି ହେଲାଣି । ଅବଶ୍ୟ ସ୍କୁଲ ଗଲାବେଳେ ତୁନିତୁନି କ'ଣ ସବୁ ଆଲୋଚନା କରୁଥିଲେ ଦୁଇ ଭଉଣୀ– ମା'କୁ କହୁଥିଲେ ବୋଧେ ଟିକିଏ ଡେରି ହେବ ଫେରିଲାବେଳକୁ । କୁଆଡ଼େ ଯିବେ କେଜାଣି ! ଏଇ ମାଘମାସିଆ ସଂଜ, ଦେଖୁ ଦେଖୁ ମାଡ଼ିଆସିବ । ସମସ୍ତେ ଫେରିଲେ ଚ'ଜଳଖିଆ ପର୍ବ ଆରମ୍ଭ ହେବ ନନ୍ଦାର । ସବୁ କ୍ଲାନ୍ତିତକ ପଣତରେ ପୋଛି ଦେଇ ପୁଣି ସତେଜ ହୋଇ ଉଠିବ ସେ । ବୁଲିବ ଚରଖିଭଳି ସମସ୍ତିଙ୍କୁ ଖୁସି ଆନନ୍ଦ ବାଣ୍ଟିବ ବୋଲି ।

କଲିଂବେଲ୍ ବାଜି ଉଠିଲା ବାହାରେ ! ସୁମାରୁମା ନିଶ୍ଚେ ଆସିଲେ ... ନନ୍ଦା ଉଠି ଦୁଆର ଖୋଲିବାକୁ ଗଲା ବୋଧେ । ଉଚ୍ଛଳ ଝରଣା ଲୋଟିପଡୁଛି ସତେଯେମିତି... ସେଇ ପ୍ରବାହର ଛଳଛଳ ତାନ ବହି ଆସୁଥିଲା ଘର ଭିତରକୁ କ୍ରମଶଃ ।

ସୁଲକ୍ଷଣା ଉଠିଲେ ବାଲ୍‌କୋନିରୁ । ତାଙ୍କୁ ବି ସଂକ୍ରମିତ କରୁଥିଲା ସେଇ ଝରଣାର ଛଳଛଳ ତାନ । ଫୂର୍ତ୍ତି ତାଙ୍କର ଦ୍ୱିଗୁଣିତ ହେଲା । ଏଥର ସେ ନାତୁଣୀମାନଙ୍କ ସହିତ ବସି ଚ' ପିଇବେ ଆଉ ଗପର ପସରା ଖୋଲିବେ । ପୁଣି ଦୁହେଁ ପଢ଼ା ଟେବୁଲ୍‌କୁ ଗଲା ପର୍ଯ୍ୟନ୍ତ । ତେଣିକି ସେ ନନ୍ଦାର ରୋଷେଇ ଘରେ ବସି ବରାଦ କରିବେ ପିଲାଙ୍କ ଇଚ୍ଛାର ଖାଦ୍ୟ କାହା ପାଇଁ ଅଣ୍ଡାଭଜା ତ କାହାପାଇଁ ଘିଅ ପରଟା, କାହାପାଇଁ ଭେଣ୍ଡି ସନ୍ତୁଳା । ପିଲାଙ୍କ ପଢ଼ା ସରିଲେ, ଏକାଠି ସମସ୍ତେ ଖାଇବେ । ଏଇ ରାତିବେଳାଟା ସେ ନିଜେ ସମସ୍ତଙ୍କୁ ବାଢ଼ିଦିଅନ୍ତି ! ନନ୍ଦା ବାରଣ କରେନା, ନିଜେ ବି ବସେ, କୁହେ, ତମେ ବାଢ଼ିଦେଲେ ଶାନ୍ତି ଲାଗେ ବୋଉ, ପେଟ ପୂରିଯାଏ । ଯାହା ହେଲେ ବି ମା' ହାତର ପରଷା । ସକାଳବେଳା ତାଙ୍କ କାମ ସରିନଥାଏ । ଦିଅଁ ପୂଜାରେ ବ୍ୟସ୍ତ ଥା'ନ୍ତି । ସମସ୍ତେ ତରବର ଅଫିସ୍, ସ୍କୁଲ ଯିବାକୁ । ନନ୍ଦା ହିଁ ସମ୍ଭାଳେ । ରାତିଟା ତାଙ୍କ ପାଇଁ ସୁବିଧା । ସଇସିଆରେ ପିଲାଙ୍କୁ ସେ ଖୁଆନ୍ତି । ଦିନର କାର୍ଯ୍ୟକ୍ରମ ଏଇଠି ସରେ ତାଙ୍କର ଓ ନାତୁଣୀଙ୍କୁ ନେଇ ଶୋଇବାକୁ ଯା'ନ୍ତି ।

ବାଲକୋନି୍‌ର ଦୁଆର ବନ୍ଦ କରି ଭିତର୍‌କୁ ଆସିଲେ ସୁଲକ୍ଷଣା କାନରେ ବାଜିଲା, ସୁମା ପଚାରୁଛି ବୋଉକୁ ତା'ର – ଜେଜେମା' କୁଆଡ଼େ ଗଲେ କି, ଦିଶୁନାହାନ୍ତି ତ ?

ଆଜି କାହିଁକି ପାଗଳା ଦି'ଟାକୁ ଭୋକଶୋଷ ନାହିଁ, ହାତ ଗୋଡ଼ ନ ଧୋଇ ଆଗ ଜେଜେମା'କୁ ଖୋଜା ପଡ଼ିଛି... ଘଟଣା କ'ଣ, ସୁଲକ୍ଷଣା ଡାଇନିଂ ହଲ୍‌କୁ ଆସିଲେ ପ୍ରସନ୍ନ ଚିତ୍ତରେ ।

– 'ମୁଁ ପରା ଏଇଠି ଅଛିରେ... କ'ଣ ହେଲା କି ମା'... ?' –'ହାପି ଭାଲେଣ୍ଟାଇନ୍ ଡେ ଜେଜେମା'... କହୁ କହୁ ଦୁହେଁ ମାଡ଼ିଆସିଲେ ଜୁଆର ଭଳି ଏବଂ ତାଙ୍କ ହାତକୁ

ଲାଲ୍‌ଗୋଲାପର ଫୁଲତୋଡ଼ା ଆଉ ସୁନ୍ଦର ସୁଗନ୍ଧିତ ଲଫାପାଟିଏ ବଢ଼େଇଦେଇ ଅଜାଡ଼ି ହେଇ ପଡ଼ିଲେ ତାଙ୍କ ଉପରେ । ଅସ୍ତବ୍ୟସ୍ତ କରି ତାଙ୍କୁ ଗେଲ କରୁ କରୁ ଲହଡ଼ି ଚୂଡ଼ା ଭାଙ୍ଗିଲା ।

ଆଲୋ ଆଲୋ, ଇଯେ କ'ଣ ହେଉଛି କିରେ, ଆଜି କ'ଣ କି ତମର ? ଦେଖିଲୁ ନନ୍ଦା ଏଇ ବାୟାଣୀ ଦି'ଟାଙ୍କୁ... ବୁଢ଼ୀ ଜେଜେମା'କୁ ଏତେ ଗେଲ କାହିଁକି ମ... କିଛି ବୁଝିପାରୁ ନଥିଲେ ସୁଲକ୍ଷଣା, ଘଟଣା କ'ଣ, କଣ କହୁଛନ୍ତି, ଏଇ ଫୁଲତୋଡ଼ା କାହିଁକି, ପୁଣି ଏଇ ଲଫାପାରେ ଅଛି କ'ଣ ? କିଛି ବୁଝିନପାରି ଡାକ ପକାଉଥିଲେ ନନ୍ଦାକୁ ।

ଆଜିପରା ଭାଲେଣ୍ଟାଇନ୍ ଡେ ଜେଜେମା' - ରୁମା କହିଲା ଆଖିମିଟିକା ମାରି । 'ବାର୍ଥ ଡ଼େ' ଶବ୍ଦ ସହିତ ସୁଲକ୍ଷଣାଙ୍କର ପରିଚୟ ଅଛି ଅଳ୍ପ ବହୁତ । ସେ ଜାଣନ୍ତି ବାର୍ଥଡ଼େ ମାନେ ଜନ୍ମଦିନ । ହେଲେ ଶବ୍ଦଟାକୁ କିମିତି କ'ଣ କରି କହୁଛନ୍ତି - ବୁଝିହେଉନି ଠିକ୍ । ସେ ଠଉରେଇପାରୁ ନାହାନ୍ତି କିଛି । ଏଇ ଇଂରେଜ ଶବ୍ଦଗୁଡ଼ାକ ବଡ଼ ଅଡୁଆ ତାଙ୍କ ପାଇଁ । ପଢୁଛନ୍ତି ଇଂରେଜ ପାଠ ବୋଲି, କଥାରେ ବି ଅଧା ଇଂରେଜି ଶବ୍ଦ । ପଚାରିଲେ– 'କାହା ଜନ୍ମ ଦିନ କି, ତମ କାହାର ତ ନୁହଁ, ମୋର ବି ନୁହଁ, ମୋର ସମସ୍ତଙ୍କ ତିଥିବାର ତାରିଖ ମନେଅଛି ।'

- ସୁମା ହସିଦେଇ କହିଲା - କାହା ଜନ୍ମଦିନ କାହିଁକି ହେବ କି ଜେଜେମା', ଆଜି ପରା ଫୋର୍ଟିନ୍‌ଥ ଫେବୃୟାରୀ । ସୁଲକ୍ଷଣାଙ୍କ ଆଖିରେ ପ୍ରଶ୍ନବାଚୀ !

ସୁମା ବୁଝିପାରିଲା ନିଜ ଭୁଲ, ଜିଭ କାମୁଡ଼ି ନିଜକୁ ସଂଶୋଧନ କରି କହିଲା - ଚଉଦ ଫେବୃୟାରୀଟା ଭାଲେଣ୍ଟାଇନ୍ ଡେ ପରା ।

- 'ଟା' ମାନେ କ'ଣ ? କେବେ ଶୁଣିନି ତ ଏକଥା ।'

- 'ମାନେ... ମାନେ ଟା କିମିତି ବୁଝେଇବି ଯେ... ଥମଥମ ହେଲା ସୁମା । ତାକୁ ଦେଖି ରୁମା ବୁଦ୍ଧି ବତେଇଲା, ବୋଉକୁ ପଚାର ସେ ବୁଝେଇଦେବ ଠିକ୍ ।

'ଆରେ ସତେତ', ମନକୁ ପାଇଲା କଥାଟା, ବୋଉ ବୁଝେଇଦେଇ ପାରିବ, ଡାକିଲା ସୁମା ବୋଉକୁ । 'ଏ ବୋଉ ଆସିଲୁ ଶୀଘ୍ର...ପ୍ଲିଜ୍...ବୋଉ...'

'ସ୍କୁଲରୁ ଆସୁ ଆସୁ ଦି'ଭଉଣୀ ଖୁପୁରାଖୁପୁରି ହେଲେଣି ବୋଧେ, ନହେଲେ ବୋଉକୁ କାହିଁକି ଏତେ ଡାକ ପଡ଼ିଛି' - କହୁ କହୁ ନନ୍ଦା ଆସିଲା, ସାଂଗରେ ବନ୍ଦିତା, ପାଖଘର ବିନୟବାବୁଙ୍କ ସ୍ତ୍ରୀ, କନ୍‌ଭେଣ୍ଟ୍ ଟିଚର । ସୁମାରୁମାଙ୍କୁ ପଢ଼େଇ ଆସିଛି ପିଲାଟିଦିନରୁ । ପାରିବାରିକ ସଂପର୍କ ଖୁବ୍ ଭଲ । ପିଲାଙ୍କୁ ଖୁବ୍ ଭଲପାଏ । ବନ୍ଦିତା ମାଉସୀଙ୍କୁ ଦେଖି ଖୁସିରେ ଉଛୁଳି ଉଠିଲେ ସୁମାରୁମା, ଏବଂ ଭାଲେଣ୍ଟାଇନ୍ ଡେ'ର ଶୁଭକାମନା ଜଣେଇଲେ । ସୁଲକ୍ଷଣାଙ୍କୁ ପ୍ରଣାମ ଜଣେଇଲା ବନ୍ଦିତା । ଚଉକିଟିଏ ଟାଣିଆଣି ବସୁ ବସୁ ବନ୍ଦିତା ସୁମାରୁମାଙ୍କୁ ଲକ୍ଷ୍ୟକରି କହିଲା– 'ତା'ହେଲେ ଆଜି ତମେ ଜେଜେମା'ଙ୍କ ସହିତ ଭାଲେଣ୍ଟାଇନ୍ ଡେ' ପାଳନ କଲ ନା ?'

ଏଇ ସମସ୍ତ ପ୍ରକ୍ରିୟା ଏତେ ଶୀଘ୍ର ଘଟିଯାଇଥିଲା ଯେ, ସୁଲକ୍ଷଣାଙ୍କୁ କିଛି ଗୋଟାଏ

ଭାବିବା ପାଇଁ ସମୟ ହିଁ ନ ଥିଲା । ସେ କେବଳ ଚକିତ ହେଇ ରହିଁଥିଲେ - ଆଶ୍ଚର୍ଯ୍ୟକଥା, ସୁମାରୁମା ବନ୍ଦିତାକୁ ବି ସେଇକଥା କହି ଫୁଲତୋଡ଼ାରୁ ଫୁଲଟିଏ କାଢ଼ିଦେଲେ । ଅଥଚ ମନରେ ଉଠିଥିବା ପ୍ରଶ୍ନର ଉତ୍ତର ଏ ଯାଏ ତାଙ୍କୁ ମିଳିଲାନି । ବଡ଼ ବିଚିତ୍ର କଥା ! ପିଲାଙ୍କର ହାବଭାବ କିଛି ବୁଝିହେଉନି ।

ନନ୍ଦା ଠିଆ ହୋଇ ଚୁପ୍‌ଚାପ୍ ଲକ୍ଷ୍ୟ କରୁଥିଲା ଶାଶୂଙ୍କୁ । ବୁଝିପାରିଲା, ସେ ଟିକିଏ ଅପ୍ରସ୍ତୁତ ବୋଧ କରୁଛନ୍ତି । ଏତିକିବେଳକୁ ମନେପଡ଼ିଲା ସୁମାର, ଯେ ସେ ବୋଉକୁ ଖୋଜୁଥିଲା । ଜେଜେମା'ଙ୍କୁ ଭାଲେଣ୍ଟାଇନ୍ ଡେ'ର ମାନେ କ'ଣ ବୁଝେଇଦେବାକୁ, ସେ ବୁଝିପାରୁନାହାନ୍ତି ବୋଲି । କହିଲା, ବୋଉ ପ୍ଲିଜ୍ ଟିକିଏ ବୁଝେଇ ଦେ'ତ ଜେଜେମା'ଙ୍କୁ ଭାଲେଣ୍ଟାଇନ୍ ଡେ'ର ମାନେଟା । ରାତି ପାଇଁ ବ୍ୟବସ୍ଥା କରୁ କରୁ ନନ୍ଦା ହାଲୁକା ଭାବରେ ହିଁ ପଚାରିଲା ଝିଅକୁ– ତୁ ଜାଣିନୁ ? ସୁମା ମୁଣ୍ଡ ହଲେଇ ନିଜ ଅଜ୍ଞତା ପ୍ରକାଶ କଲା 'ଜାଣିନି' ।

'ଅଥଚ ତମେ କିଛି ନ ଜାଣି ଜେଜେମା'ଙ୍କୁ ୱିସ୍ କରିଛ - ସେ ତ ଜାଣିନାହାନ୍ତି ମୋଟେ କିମିତି ଗ୍ରହଣ କରିବେ ତମର ଶୁଭକାମନା । ଇଏ କ'ଣ ଠିକ୍ ହେଲା ? ଆଗରୁ ପଚାରି ବୁଝିଥାନ୍ତ, କିଏ ଭାଲେଣ୍ଟାଇନ୍ ? ଏଇ ଦିନଟିର ମହତ୍ତ୍ୱ କ'ଣ । ତମ ପାଇଁ ଉଚିତ ମନେହେଲେ ୱିସ୍ କରିଥାନ୍ତ । ବନ୍ଦିତା କଥାଛଳରେ ମୃଦୁ ତାଡ଼ନା ଦେଇ ସୁମାରୁମାଙ୍କ ଉଲ୍ଲସିତ ବେଲୁନ୍‌ଟାକୁ ଗୋଲାପ କଣ୍ଟାରେ ସେମିତି ଆଂଚୁଡ଼ି ଦେଲା । ମନ ଉଣା ପଡ଼ିଗଲା ସେମାନଙ୍କର । ହୁଏତ ଟିକିଏ ଅପ୍ରସ୍ତୁତ ବି ବୋଧକଲେ । ଫୁଲ୍‌କା ବେଲୁନ୍‌ଟାରୁ ପବନ ଖସି ଖସି ଯାଉଛି ତ ! ବନ୍ଦିତା ମାଉସୀ ଭୁଲ୍‌ଟାକୁ ଉଖାରି କାଢ଼ି ଦେଖେଇ ଦେଇଛନ୍ତି ବି । ଜେଜେମା'ଟା ବୋକୀ, ସବୁକଥା ଟିକିନିଖି କରି ବୁଝିବ । ସୁମା ନିଜ ମନର ବିରକ୍ତି ଭାବକୁ ଲୁଚେଇ କହିଲା, 'ବାବାରେ ଯିଏ ଯାହାକୁ ଭଲପାଏ, ତାକୁ କିଛି ନା କିଛି ଗିଫ୍‌ଟ ଦେଇ ୱିସ୍ କରେ ଆଜି, ଆମେ ବି ଜେଜେମା'ଙ୍କୁ ଭଲପାଉ, ୱିସ୍ କରିଛୁ - ଭୁଲ୍ ରହିଲା କୋଉଠି ? ସମସ୍ତେ ତ ଏମିତି ସେଲିବ୍ରେଟ୍ କରନ୍ତି ।

ସେଲିବ୍ରେଟ୍ ତ କରନ୍ତି ସମସ୍ତେ, ହେଲେ କାହିଁକି କରନ୍ତି, ସେ କଥା ତମର ଜାଣିବା ଉଚିତ ଥିଲା ବୋଲିତ କହୁଛନ୍ତି ବନ୍ଦିତା ମାଉସୀ । ଜେଜେମା'ଙ୍କ ସମୟରେ ଏସବୁ ପ୍ରଥାର ପ୍ରଚଳନ ନଥିଲା ବୋଲି ସେ ଜାଣିନାହାନ୍ତି । ତମେ ଯେହେତୁ ସେଲିବ୍ରେଟ୍ କରୁଛ ତମର ଜାଣି ରଖିବା ଉଚିତ । କୌଣସି କାମ ଏମିତି ଅନ୍ଧ ଭଳି ତ କରାଯାଏନି । ନନ୍ଦାର କଣ୍ଠସ୍ୱର ବି ଟିକିଏ କଠୋର ଶୁଭୁଥିଲା । ସୁମାରୁମାଙ୍କ ମୁହଁ ଶୁଖିଗଲା ହଠାତ୍ ।

ସୁଲକ୍ଷଣା ସବୁକଥା ଶୁଣିଥିଲେ ପାଟି ନ ଖୋଲି । ଅପରାଧବୋଧରେ ମନ ତାଙ୍କର ମକଚି ହେଇ ଯାଇଥିଲା । ନିଜ ଅଜ୍ଞତା ପାଇଁ ପିଲା ଦି'ଟାଙ୍କ ଖୁସିରେ ଭଟ୍ଟା ପଡ଼ିଗଲା । ଭଲ ଲାଗିଲା ନାହିଁ ତାଙ୍କୁ । ପିଲା ମନରେ ନାଚିକୁଦି ଡେଇଁବା କଥା । କଥାର ମହତ୍ତ୍ୱ ଗୁରୁତ୍ୱ ବୁଝିବା ବୟସ ହେଇନି ଆହୁରି । ସମସ୍ତେ କରୁଛନ୍ତି ଆମେ ବି କରିବା - କାହିଁକି କ'ଣର ଉତ୍ତର

ଖୋଜିବାକୁ ବେଳ ନାହିଁ ତାଙ୍କୁ । ଜେଜେମା' ଆମକୁ ଭଲପା'ନ୍ତି, ଆମେ ବି ତାଙ୍କୁ ଭଲ ପାଉ । ବାସ୍ ଏଠି କଥା ସରିଲା । ଆହା ! ଗେଲବସରୀ ନାତୁଣୀଙ୍କର ଚନ୍ଦ୍ରଉଦିଆ ମୁହଁଟିମାନ ଶୁଖିଗଲା ସିନା । ସ୍କୁଲରୁ ଆସୁ ଆସୁ ନଖାଇ ନପିଇ ଧାଇଁ ଆସିଥିଲେ ତାଙ୍କ ପାଖକୁ ଖୁସିର ଫୁଲତୋଡ଼ା ଦେବେ ବୋଲି । ଅଥଚ ଏତିକିବେଳକୁ ମା'ମାଉସୀଙ୍କର ମା'ପଣର ବଚନିକା ବାହାରିବାକୁ ଥିଲା । ଆଜି ଦିନଟା ଗଲେ କାଲିକୁ କହିଥିଲେ ହୋଇନଥାନ୍ତା । ଭାବୁ ଭାବୁ କହିପକେଇଲେ ବି ସୁଲକ୍ଷଣା । ବଡ଼ ହେଲେ ସବୁକଥା ବୁଝିବେନି । ସେମାନେ ମୋତେ ଖୁସିରେ ଫୁଲ ଦେଲେ କି ଗେଲ କଲେ, ମୁଁ ତ ନେଲି ଖୁସିରେ - ତମର ଏତେ କଥା ପଡ଼ିଛି କାହିଁକି ? ଭୋକରେ ମୋ' ପିଲାଙ୍କ ମୁହଁ ଶୁଖିଗଲାଣି, ତାଙ୍କୁ ଖାଇବାକୁ ଦେବୁ କ'ଣ ନା ଉଚିତ ଅନୁଚିତର ପାଠ ପଢ଼ା ଚାଲିଛି । ତୋ ବୁଦ୍ଧିବୃତ୍ତି ବି କାମ କରୁନି । ସୁଲକ୍ଷଣାଙ୍କ କଣ୍ଠସ୍ୱର କଠିଣ ଶୁଭିଲା । ସୁମାରୁମାଙ୍କୁ କୋଳକୁ ଟାଣିନେଇ କହିଲେ– ନାଇଁରେ ମା' ମୁହଁ ଶୁଖାନି, ମୁଁ ତମ ଖୁସି ଉପହାରକୁ ଗ୍ରହଣ କରିଛି । ଯୋଉ କଥା ଜାଣିବାକୁ ଚାହୁଁଚି ପରେ ତୋ ବୋଉଠୁ ବୁଝିନେବି । ବୋଉ ଜଳଖିଆ ବାଢୁଛି, ଖାଇଦେଇ ଯାଅ, ଖେଳିବ । ନନ୍ଦା ହସିଲା ବନ୍ଦିତାକୁ ଚାହିଁ । ଦୁହେଁ ବୁଝିଲେ । ଶାଶୂଙ୍କ ସାମନାରେ ପିଲାଙ୍କୁ ଶାସନ କରିବା ଠିକ୍ ହେଲାନି । ପିଲାଙ୍କୁ ପଦେକଥା କହିଲେ ସେ ସହିପାରନ୍ତିନି । ଜେଜେମା' ଥିଲେ ସୁମାରୁମାଙ୍କ ସାହସ ବଢ଼ିଯାଏ । ଶାଶୂ ଥିଲା ଯାଏ ନନ୍ଦାର ମା'ପଣ କିଛି କାମରେ ଲାଗେନି କି ସେ ଲଗାଏନି ।

ଏଥର ନନ୍ଦା ପରିବେଶକୁ ହାଲୁକା କରିବାକୁ ଚାହିଁଲା । ବନ୍ଦିତା ଆଣିଥିବା ମିଠା ହାଣ୍ଡିକୁ ସୁମାରୁମାଙ୍କ ଆଗରେ ଥୋଇ କହିଲା– ମାଉସୀ ତୁମ ପାଇଁ ଗୋଲାପଜାମ୍ ଆଣିଛି ନିଅ । ରୁମା ନିଜ ଖୁସିକୁ ଚାପି ନ ପାରି କହିପକେଇଲା 'ଇସ୍ କେତେ ମିଠା ! ରୁମାର ପ୍ରିୟ ଗୋଲାପଜାମ୍ ବନ୍ଦିତା ଜାଣେ । ସେ ନିଜେ ବାଢ଼ିଦେଲା ସୁମାରୁମାଙ୍କ ପ୍ଲେଟ୍‌ରେ ।

ନନ୍ଦା ସମସ୍ତଙ୍କ ପାଇଁ ଚା'ଜଳଖିଆ ବାଢ଼ି ନିଜେ ଚା'କପେ ନେଇ ବସିଲା । ଗରମ ଚା' ବିଶେଷ କରି ଏଇ ସଂଧ୍ୟାବେଳେ ଖାଇବାଟା ତାର ଗୋଟାଏ ସଉକ । ସକାଳ ଚା'ଟା ତାର ନିଶା ହେଲେ ବି ସମୟ ନଥାଏ ମୁହୂର୍ତ୍ତେ ବସି ମନପୂରେଇ ପିଇବାକୁ । କାମର ଫାଙ୍କରେ ଚା'କପ୍‌ଟା କିମିତି ପିଏ ସେ ଜାଣେନା । ଏଇ ସମୟଟାକୁ ସେ ନିଜେ ବାଛିଚି । ପିଲେ ସ୍କୁଲରୁ ଫେରିଥାନ୍ତି ଅରୁଣ, ବି ଫେରିଥାନ୍ତି ଅଫିସ୍‌ରୁ । କାମର ତାଗିଦା ନ ଥାଏ । ତେଣୁ ଗରମ ଚା'କପ୍‌ର ମଜା ଉଠେଇ ଗପ କରୁ କରୁ ନିଠେଇ ନିଠେଇ ସେ ପିଏ । ଗରମ ଚା' ଭିତରେ ତା' ମନ ପ୍ରାଣ ସତେ ଯେମିତି ଜଡ଼ି ଯାଇଥାଏ ।

ଦିନେ ଦିନେ ବନ୍ଦିତା ବି ଆସିଯାଇଥାଏ । ତା' ପୁଅ ରିକନ୍ ସ୍କୁଲରୁ ଫେରି ବି ଟିଉସନ୍ ଯାଏ । ହାତରେ କିଛି କାମ ନ ଥାଏ । ବିନୟବାବୁ ପ୍ରାୟ ଡେରିରେ ଫେରନ୍ତି ଅଫିସ୍‌ରୁ । ଏକୁଟିଆ ତାକୁ ବି ଭଲ ଲାଗେନି ଚା' ପିଇବାକୁ । ଚାଲିଆସେ ନନ୍ଦା ପାଖକୁ । ନ ଆସିଥିଲେ ନିଜେ ନନ୍ଦା ଡାକ ପକାଏ ଝରକା ଏପାଖରୁ । ଦୁହେଁ ମିଶି ଗପର ଆସର ଜମାନ୍ତି । ସଂଜହେଲେ

ନନ୍ଦା ଉଠେ ସଂଜ ବସେଇବାକୁ ଏବଂ ବନ୍ଦିତା ବିନୟବାବୁଙ୍କ ସ୍କୁଟର ଶବ୍ଦ ଶୁଣିଲେ ଉଠେ । ଏଇଟା ନନ୍ଦାର ନିତିଦିନିଆ ରୁଟିନ୍ । ଅତଏବ ଏଇ ସମୟଟା ତା' ପାଇଁ ରିକ୍ରିଏସନ୍‌ର ସମୟ । ନହେଲେ ଆମୋଦ ପାଇଁ ତାକୁ ଫୁରୁସତ୍ ନଥାଏ ଦିନ ତମାମ !

ଯେତେବେଳେ ଶାଶୂଆ'ନ୍ତି, ଏଇ ଗପର ଆସରଟା ଟିକିଏ ଲମ୍ବିଯାଏ । ସୁଲକ୍ଷଣା ଟିକିଏ ଗପୁଡ଼ିଆ ମଣିଷ, ମଣିଷ ରଙ୍କୁଣୀ । ଗାଁରେ ତ ସବୁବେଳେ ମଣିଷ, ଅଖଣ୍ଡ ସମୟ । ସହରୀ ଜୀବନ ହିସାବୀ, ରୁଟିନ୍ ବନ୍ଧା, ମଣିଷ ମିଳନ୍ତିନି କଥାପଦେ ହେବାକୁ । ସେଇ କଥାପଦକ ବି ମପାଚୁପା । ସେ ବି ଏହି ସମୟଟିକୁ ଋହିଁ ବସିଥାନ୍ତି । ବନ୍ଦିତା ସ୍କୁଲରୁ ଫେରୁଛି ଦେଖିଲେ, ବାଲ୍‌କୋନିରୁ ଡାକପକାନ୍ତି ନନ୍ଦାକୁ ଚ'ବସେଇବାକୁ । ନନ୍ଦା ଜାଣିପାରେ । ବନ୍ଦିତା ଆସିଲେ ଗପର ସିନ୍ଦୁକ ଖୋଲେ ।

ଆଜି ସେମିତି ଋହିଁ ବସିଥିଲେ । କିନ୍ତୁ ସେ ଜାଣିନଥିଲେ ଯେ, ଆଜି ଗୋଟିଏ ଆନନ୍ଦର ଦିନ । ସ୍କୁଲ ଫେରନ୍ତି ସୁମାରୁମା ଯେତେବେଳେ ତାଙ୍କ ହାତକୁ ଗୋଲାପ ତୋଡ଼ାଟି ବଢ଼େଇ ଦେଲେ, ସତ କହିଲେ, ତାଙ୍କୁ ଯେତିକି ଚକିତ ଲାଗିଥିଲା, ସେତିକି ଉଲ୍ଲାସ ବି ଲାଗିଥିଲା । କେବଳ କାରଣଟା ଜାଣିନପାରି ଯାହା ପଋରିଦେଲେ । ଆଉ ତା'ପରେ ତ ମା' ଗୁରୁମାଙ୍କର ଆରମ୍ଭ ହେଇଗଲା ତନାଘନା । ପିଲାଙ୍କ ଖୁସିରେ ମାଠିଆଏ ପାଣି ଢଳିଦେଲେ ଯେ, ଏକାବେଳକେ ସବୁତକ ଖୁସି ଫସ୍‌କି ଗଲା ।

ନହେଲେ ବନ୍ଦିତା ଯୋଉ ମିଠା ହାଣ୍ଡିକ ଆଣିଚି, ଅନ୍ୟଦିନ ହୋଇଥିଲେ ପିଲାଏ ତ ହରିହାଟ ବସେଇଥାନ୍ତେ । ସାନ ରୁମାଟା ସେଥିରୁ ଗୋଟିଏ କାହାକୁ ନ ଦେଇ ମାଡ଼ିବସିଥାନ୍ତା ଏକା ଖାଇବ ବୋଲି । ତାଙ୍କରି ଯୋଗୁଁ ଖୁସିଟା ପାଣି ଫାଟିଗଲା । ଏବେ ପଛରେ ଭାବିଲେ ଆପଣାକୁ ଦୋଷୀ ଦୋଷୀ ଲାଗୁଛି । ସେଇଥିପାଇଁ ମଣିଷକୁ ଋରିଆଖିଆ ହେବା ସାଥେ ସାଥେ ଋରିକଥା ଜାଣିବାକୁ ହୁଏ, ନହେଲେ ଏମିତିକା ଅପଦସ୍ତିଆ ପରିସ୍ଥିତି ସୃଷ୍ଟି ହୁଏ । ଯାହା ବି ହେଉ ଘଟଣା ତ ଘଟିସାରିଲାଣି । ମଣିଷ କେତେକେତେ ଉପାୟ ନ ଖୋଜୁଛି ଟିକିଏ ଆନନ୍ଦ ପାଇବା ପାଇଁ । ତାଙ୍କ ଛାତି ଫାଟିଯାଏ, ପିଲାଏ ତାଙ୍କର ପ୍ରାଣ । ମୁହଁପୋତି ଚୁପ୍‌ଋପ୍ ଜଳଖିଆ ଖାଉଛନ୍ତି ସୁମାରୁମା । ବନ୍ଦିତା ଗମ୍ଭୀର ହେଇ ବସିଛି । ନନ୍ଦା ଚ'କପ୍ ଭିତରେ ବୁଡ଼ିଯାଇଛି । ନିତିଦିନିଆ ଆସରର ହଇଚଇ ନାହିଁ । ଗୁମ୍‌ସୁମ୍ ଲାଗୁଛି ପରିବେଶ । ଅଥଚ କିଛି କାରଣ ନାହିଁ କଥାର ।

ଭଲ ଲାଗିଲାନି ସୁଲକ୍ଷଣାଙ୍କୁ । ନା, ତାଙ୍କୁ ହିଁ କିଛି କରିବାକୁ ହେବ । ମିଠାହାଣ୍ଡିରୁ ନିଜପାଇଁ ଧରିଲେ ଗୋଟିଏ ଗୋଲାପଜାମ୍ । ପାଟିରେ ପୂରେଇଲେ, କହିଲେ – ସତରେ ଭଲ ଲାଗୁଛି ମିଠାଟା, ଭଲ କାରିଗର ହାତରେ ତିଆରି ଇଏ । ନଉନୁ ବନ୍ଦିତା ତୁ ଗୋଟିଏ ନେ, ନନ୍ଦା ତୁ ବି ନେ ଗୋଟେ । ବନ୍ଦିତା ମୁହଁରେ ପ୍ରସନ୍ନତା ଫୁଟିଉଠିଲା । କହିଲା, ତମେ ଆଉ ଗୋଟିଏ ନିଅ ମାଉସୀ । ନାଇଁମ ଆଉ । ରିକନ୍, ଅରୁଣ, ବିନୟ କେହି ଆସି ନାହାନ୍ତି,

·ରଖିଦେଇଥା' ତାଙ୍କ ପାଇଁ । ନନ୍ଦା ମିଠା ହାଣ୍ଡିଟାକୁ ଚାହିଁ କହିଲା, ଅଛି ବୋଉ, ଢେର ଅଛି । ବନ୍ଦିତା କ'ଣ କେବେ କମ୍ ଆଣେ ?

ବନ୍ଦିତା କହିଲା - ରିକନ୍ କ'ଣ ଏତେ ଶୀଘ୍ର ଆସିବ କି, ସିଏବି ତ ସାଂଗସାଥୀଙ୍କ ସହିତ ଭାଲେଣ୍ଟାଇନ୍ ଡେ ମନଉଥିବ । କହିଯାଇଛି ଡେରି ହେବ ବୋଲି ।

- ଧେତ୍, ଏତେ ଖୁସିବାସର ଦିନ ଆଜି, ଅଥଚ ମୁଁ ଏମିତି ମୂର୍ଖ ଯେ କିଛି ଜାଣିନି ଏ ବିଷୟରେ !'

- 'ଖୁସିବାସିର ଦିନ କହୁଛ ମାଉସୀ, ମୋ ଚାକରାଣୀଟା ବି କହିଯାଇଛି କାଲିଠୁ ଆଜି ଆସିବନି ବୋଲି । ସ୍ୱାମୀ ସ୍ତ୍ରୀ ଦୁହେଁ ଯିବେ ନନ୍ଦନକାନନ, ଭାଲେଣ୍ଟାଇନ୍ ଡେ' ମନେଇବାକୁ । କେତେ ଯୋଜନା ଅଛି ତାଙ୍କର । ଗତ ବର୍ଷ ପ୍ରେମବିବାହ କରିଥିଲେ । ଆଜି 'ପ୍ରେମଦିବସ' ନ ମନେଇଲେ କେମିତି ହେବ କହୁନ ?'

ତା'ମାନେ... ଏଇ ଯୋଉ... ଆଜି.. କି ଡେ' ଟି ତମର - ସୁଲକ୍ଷଣା ପଚାରିଲେ ଉଚ୍ଚାରଣ କରି ନପାରି । ସୁମା ମୁହଁ ହାତ ଧୋଉଥିଲା । ହଠାତ୍ ତାର ମନେ ପଡ଼ିଗଲା - କହିଲା 'ମନେପଡ଼ିଲା ଜେଜେମା' ଆଜି 'ପ୍ରେମ ଦିବସ' । କହି ପକେଇ ଜିଭ କାମୁଡ଼ି ପକେଇଲା । ଆଖିରେ ଦୁଷ୍ଟାମି ଚମକି ଉଠିଲା - ହସି ପକେଇଲା ନନ୍ଦା ଝିଅ ମୁହଁକୁ ଚାହିଁ- ଏତିକି ବେଳକୁ ବାହାରେ ସ୍କୁଟର ରହିବାର ଶବ୍ଦ ଶୁଣି କହିଲେ - ଗଲୁରେ ସୁମା ଦୁଆର ଖୋଲିଦେବୁ, ବାପା ଆସିଲାଣି ବୋଧେ ।

ସୁମା ଗୁମା ବାଦବୁଦିଆ ହେଇ ଚାଲିଲେ ଦୁଆର ଖୋଲିବାକୁ...

ସୁଲକ୍ଷଣାଙ୍କର ମନରେ କିନ୍ତୁ ଭାଲେଣ୍ଟାଇନ୍ ଡେ'ର ପ୍ରଶ୍ନଟା ଗୁଡ଼େଇତୁଡ଼େଇ ହୋଇ ବାଟ ଓଗାଳି ଠିଆହେଲା । କେହି ଯେତେବେଳେ ନିଜଆଡୁ ଉତ୍ତର ଦେଉନାହାନ୍ତି, ତାଙ୍କୁ ହିଁ ସିଧାସଳଖ ପଚାରିବାକୁ ପଡ଼ିବ । ନହେଲେ ପ୍ରଶ୍ନ ହେଇ ହିଁ ରହିଯିବ । କଥା ଆଉ କାମର ଗହଳି ଭିତରେ ବାଟ ଭୁଲିଯିବ ପ୍ରଶ୍ନଟା । ଭାବୁ ଭାବୁ ସେ ପ୍ରଶ୍ନକୁ ନନ୍ଦା ଆଉ ବନ୍ଦିତା ଉଦ୍ଦେଶ୍ୟରେ ଦୋହରାଇଲେ । କହିଲନି ତ ମୋତେ ଏଇ ପ୍ରେମ ଦିବସଟା କ'ଣ ଓ କାହାର ? ରାମାୟଣ ନା ମହାଭାରତ ନା ଇତିହାସର କଥା ? କେତେ ତ ପ୍ରେମକାହାଣୀ ଅଛି ଆମ ପୁରାଣମାନଙ୍କରେ ।

ନନ୍ଦା ଉତ୍ତର ଦେଲା ଚା'ର ଶେଷ ଢୋକ ନେଇ । ନାଇଁ ବୋଉ ଏଇଟା ଆମ ଦେଶର ପ୍ରେମ କାହାଣୀ ନୁହେଁ । ବିଦେଶୀ ପ୍ରେମ । ଏଇ କିଛି ବର୍ଷ ହେଲା ଆମ ଦେଶକୁ ଆସିଛି । ପିଲାଏ କହୁଛନ୍ତି ଇଏ କୁଆଡ଼େ ଏକ ନୂଆ ଚେତନା, ନା କ'ଣ ବନ୍ଦିତା ?

ହଁ, ପୂରାପୂରି ବିଦେଶୀ ଆମଦାନୀ । ବନ୍ଦିତା ଉତ୍ତର ଦେଲା । ଅବଶ୍ୟ କିଏ କେବେ ଆଣି ଆମ ଦେଶର ମାଟିରେ ତାକୁ ଥାପିଛି - ମୁଁ କହିପାରିବିନି । ହେଲେ ଖୁବ୍ କମ୍ ସମୟରେ ହିଁ ଆମେ ତାକୁ ଆପଣାର କରି ନେଇଛୁ । ଆମ ଜନ ଜୀବନ ଭିତରକୁ ପଶି ଆସି ଗାଦି ମାଡ଼ି

ବସିଛି । ଆମ ନୂଆ ପିଢ଼ି ଏଇ ଚଳଣିକୁ ତ ଏକପ୍ରକାର ସାଂସ୍କୃତିକ ଜୀବନର ଅଂଗ ଭଳି ଗ୍ରହଣ କରି ନେଲେଣି । ଖାଲି ଆମ ଦେଶ କାହିଁକି, ଅନେକ ସଭ୍ୟ ଦେଶ ଏଇ ପ୍ରଥାକୁ ମାନ୍ୟତା ଦେଇ ପାଳନ କରୁଛନ୍ତି ।

– ଇମିତି କି ପ୍ରେମ କଥା ମ... ? ଆମ ଦେଶର କେଦାରଗୌରୀ, ନା ଇତିହାସର ମମତାଜ୍ ? ଅଗସ୍ତ୍ୟ-ଲୋପାମୁଦ୍ରା, ଜନକ-ସୁଲଭା, ଭାସ୍କର-ପୃଥା ଭଳି କେତେ ପ୍ରେମ କାହାଣୀ ଅଛି ଆମ ମହାଭାରତରେ ଏମାନଙ୍କୁ ଠୁ ବଳି ? ଇଏ କୋଉ ଦେଶର କଥା କି ? ପଚାରିଲେ ସୁଲକ୍ଷଣା ।

ରୋମର କାହାଣୀ ମାଉସୀ । ଭାଲେଣ୍ଟାଇନ୍ ହେଉଛନ୍ତି ଜଣେ ସନ୍ଥ । ଅନେକ ବର୍ଷ ତଳର କଥା । ସେ ଦେଶର ରାଜା କ୍ଲାଉଡ଼ିୟସ୍ (ଦ୍ୱିତୀୟ) ଖୁବ୍, ନିଷ୍ଠୁର ସ୍ୱଭାବର ଥିଲେ ନିଶ୍ଚୟ । ତାଙ୍କର ଧାରଣା ଥିଲା, ସୈନିକମାନେ ଯଦି ପ୍ରେମରେ ଲିପ୍ତ ହେବେ କିମ୍ବା ବିବାହ ବନ୍ଧନରେ ବାନ୍ଧି ହେବେ, ସେମାନେ ଦୁର୍ବଳମନା ହୋଇଯିବେ - ଉପଯୁକ୍ତ ସୈନିକ ହୋଇପାରିବେନି - ଦେଶରକ୍ଷା କରିବାରେ ଅସମର୍ଥ ହୋଇପଡ଼ିବେ; ଫଳରେ ଦେଶ ବିପଦଗ୍ରସ୍ତ ହେବ । ତେଣୁ ରାଜା ସୈନିକମାନଙ୍କ ପାଇଁ ଏକ ନିଷେଧାଦେଶ ଜାରି କରିଥିଲେ ଯେ– ସେମାନେ କେହି ପ୍ରେମ କରିପାରିବେନି କିମ୍ବା ବିବାହ କରିପାରିବେ ନାହିଁ ।

କିନ୍ତୁ ରେମାନ୍‌ମାନେ ରାଜାଙ୍କର ଏଇ ଆଦେଶ ବିରୋଧରେ ଯୁଦ୍ଧ ଘୋଷଣା କଲେ । ଯୁଦ୍ଧ ହେଲା । ବହୁ ସୈନିକ ବନ୍ଦି ହେଲେ । କୁହାଯାଏ, ସେଇ ସମୟରେ ଭାଲେଣ୍ଟାଇନ୍ ଚର୍ଚ୍ଚରେ ଧର୍ମଯାଜକ ଭାବେ କର୍ମରତ ଥିଲେ । ଯେହେତୁ ସେ ଜଣେ ଦୟାଳୁ ଏବଂ ହୃଦୟବାନ୍ ମଣିଷ ଥିଲେ, ବନ୍ଦି ସୈନିକମାନଙ୍କର ମାନସିକ ସ୍ଥିତି ଓ ଯନ୍ତ୍ରଣାକୁ ଗଭୀର ଭାବେ ହୃଦୟଙ୍ଗମ କରିଥିଲେ । ସୈନିକମାନେ ଚିନ୍ତାକରି ଜେଲ୍‌ରେ ଜେଲର ମହାଶୟଙ୍କୁ ନିଜ ନିଜ ଦୁଃଖ ଜଣେଇ ତା'ର ନିରାକରଣର ଉପାୟ ଚିନ୍ତା କରିବାକୁ ଅନୁରୋଧ କଲେ । ନିଜେ ଜେଲର ଆଷ୍ଟେରିୟସ୍ ଜଣେ ସଦୟ ଏବଂ ଧର୍ମପ୍ରାଣ ବ୍ୟକ୍ତି ହୋଇଥିବାରୁ, ଏ ସଂପର୍କରେ ସନ୍ଥ ଭାଲେଣ୍ଟାଇନ୍‌ଙ୍କ ସହିତ ପରାମର୍ଶ କଲେ ଏବଂ ସୈନିକମାନଙ୍କର ଦୁଃଖ ଦୂର କରିବାର ଉପାୟ ଖୋଜିବା ପାଇଁ ଅନୁରୋଧ ଜଣାଇଲେ ।

ଏହାଶୁଣି ଭାଲେଣ୍ଟାଇନ୍ ସୈନ୍ୟମାନଙ୍କୁ ସାହାଯ୍ୟ କରିବା ପାଇଁ ଗୋପନରେ ସେଇ ପ୍ରେମିକ ପ୍ରେମିକାମାନଙ୍କୁ ମିଳାଇ, ସେମାନଙ୍କର ବିବାହ ସଂପନ୍ନ କରାଇଥିଲେ । ଜେଲର ଆଷ୍ଟେରିୟସ୍‌ଙ୍କର ଅନ୍ଧୁଣୀ ଝିଅଟିଏ ଥିଲା । ତାଙ୍କ ମନରେ ବି ଗୋଟିଏ ଧାରଣା ହେଲା ଯେ, ଭାଲେଣ୍ଟାଇନ୍ ନିଶ୍ଚୟ ଜଣେ ସିଦ୍ଧ ପୁରୁଷ । ସେ ଅନେକ ଈଶ୍ୱରୀୟ ଗୁଣର ଅଧିକାରୀ କେବଳ ନୁହଁନ୍ତି - ସେ ନିଜେ ହିଁ ଇଶ୍ୱର । ଇହିଁଲେ ତାଙ୍କ ଝିଅର ଅନ୍ଧତ୍ୱକୁ ଦୂର କରିପାରିବେ । କିନ୍ତୁ ସନ୍ଥ ଭାଲେଣ୍ଟାଇନ୍ ନିଜର ଅସାମର୍ଥ୍ୟ ପ୍ରକାଶ କରି କହିଥିଲେ ଯେ, ଏହା ତାଙ୍କ ଦ୍ୱାରା ସମ୍ଭବ ନୁହେଁ । ସେ କେବେ ବି ଈଶ୍ୱର ନୁହଁନ୍ତି । ସେ ଜଣେ ସାଧାରଣ ମଣିଷ । ମଣିଷକୁ ଭଲ

ପା'ନ୍ତି ବୋଲି ସେମାନଙ୍କର ଦୁଃଖ ସହ୍ୟ କରିନପାରି କିଛିଟା ସାହାଯ୍ୟ ସହଯୋଗ କରିଛନ୍ତି ମାତ୍ର । ରାଜା ମଧ୍ୟ ତାଙ୍କ ଈଶ୍ୱରତ୍ୱକୁ ବିଶ୍ୱାସ କରୁନଥିଲେ । ବରଂ ତାଙ୍କର ଧାରଣା ହେଲା ଯେ ଭାଲେଣ୍ଟାଇନ୍ ଜଣେ ଦେଶଦ୍ରୋହୀ । ଦେଶ ଓ ରାଜାଦେଶ ବିରୋଧରେ କାର୍ଯ୍ୟ କରୁଛନ୍ତି । ଅତଏବ ସେ ଫାଶୀ ପାଇବା ଉଚିତ । ଫାଶୀଦଣ୍ଡ ଘୋଷିତ ହେଲା । ବନ୍ଦିତା ଟିକିଏ ରହି ନିଃଶ୍ୱାସ ନେଲା । 'ସନ୍ଥ ମଣିଷଟା ଫାଶୀ ପାଇଲା ଶେଷରେ ! ମନଧ୍ୟାନ ଲଗେଇ କାହାଣୀଟିକୁ ଶୁଣୁଥିବା ସୁଲକ୍ଷଣା ପ୍ରଶ୍ନ କଲେ – ତାହେଲେ...' ।

ବନ୍ଦିତା ଗ୍ଲାସରୁ ପାଣି ପିଇ ସାରି କହିଲା – ସରିନି ମାଉସୀ କାହାଣୀଟା, କହୁଛି... ଫାଶୀ ହେବା ପୂର୍ବରୁ ସନ୍ଥ ଭାଲେଣ୍ଟାଇନ୍ ଖଣ୍ଡେ କାଗଜ ମାଗିଥିଲେ ।

ଏବଂ 'ଫ୍ରମ୍ ୟୋର ଭାଲେଣ୍ଟାଇନ୍' ନାମରେ କିଛି ଲେଖିଥିଲେ ସେଇ କାଗଜରେ । 'କ'ଣ ଲେଖିଥିଲେ ?' ନିଜ କୌତୂହଳକୁ ଚପି ନ ପାରି ସୁଲକ୍ଷଣା ପଚାରିଲେ, କାରଣ କାହାଣୀଟିର ନିର୍ଯ୍ୟାସ, କିଛି ଗୋଟିଏ ସ୍ୱଷ୍ଟ ଚିତ୍ର ତାଙ୍କ ମନରେ ଆଙ୍କି ପାରୁନଥିଲା । ବନ୍ଦିତା ବୁଝିପାରି କହିଲା, 'ସେଇତ ଅଡୁଆ ମାଉସୀ, କ'ଣ ଲେଖିଥିଲେ, କାହାକୁ ଉଦ୍ଦେଶ୍ୟ କରି ଲେଖିଥିଲେ, ସେ ବିଷୟରେ କେହି କିଛି କହିନାହାନ୍ତି – ଅସ୍ୱଷ୍ଟ ହୋଇ ରହିଯାଇଛି, କଥାଟା । ଯାହା ପ୍ରଚଳିତ ହେଉଛି, ତାହାହେଲା ଏଇ ଚଉଦ ଫେବୃୟାରୀରେ ପ୍ରେମିକ ପ୍ରେମିକାଏ 'ପ୍ରେମଦିବସ' ପାଳନ କରିବାକୁ ଯାଇ କାଗଜ ଖଣ୍ଡିକରେ 'ଫ୍ରମ ୟୋର ଭାଲେଣ୍ଟାଇନ୍' ବୋଲି ଲେଖି ନିଜ ନିଜର ପ୍ରେମିକ ପ୍ରେମିକାକୁ ଦିଅନ୍ତି । କାରଣ ରୋମାନ୍ ଯୁବକଯୁବତୀ ମାନେ ଏଇଭଳି ପାଳନ କରୁଥିଲେ, କରିଆସୁଛନ୍ତି ମଧ୍ୟ । ତମେ ଯୋଉ କାର୍ଡ଼ ଖଣ୍ଡିକ ଧରିଛ... ସେଥିରେ ମଧ୍ୟ ଏଇୟା ଲେଖା ଅଛି ।

ଏଇ ଭାଲେଣ୍ଟାଇନ୍ ଡେ' ସଂପର୍କରେ ଅନେକ ମତ ରହିଛି ।

ତେବେ କେହି କେହି ଅନୁମାନ କରନ୍ତି – ନିଜେ ସନ୍ଥ ଭାଲେଣ୍ଟାଇନ୍ ଜେଲରଙ୍କ ଅନ୍ଧୁଣୀ ଝିଅଟିକୁ ହୁଏତ ପ୍ରେମ କରୁଥିଲେ । ତାର ଉଦ୍ଦେଶ୍ୟରେ କିଛି ଲେଖିଥାଇ ପାରନ୍ତି । ଅବଶ୍ୟ ଏଇଟା ଗୋଟାଏ ଆନୁମାନିକ ଧାରଣା । ଅଥବା ଏଇ ଫେବୃୟାରୀ ଚଉଦରେ ଭାଲେଣ୍ଟାଇନ୍‌ଙ୍କୁ ଫାଶୀ ଦିଆଯାଇ ଥାଇପାରେ । କୌଣସିଟା ସ୍ୱଷ୍ଟ ନୁହେଁ । ତେବେ ପ୍ରଥା ଅଛି, ଚଳି ଆସୁଛି । ଆଗରୁ ଇଂଲଣ୍ଡ, ଫ୍ରାନ୍ସ ଆଦି ୟୁରୋପିଆନ୍ ଦେଶମାନଙ୍କରେ ଚଳି ଆସୁଥିଲା । ଆଜିକାଲି ସବୁ ଦେଶରେ ପାଳନ କରୁଛନ୍ତି । ପ୍ରଥମେ କୁଆଡ଼େ ଡ୍ୟୁକ୍ ଅଫ୍ ଅରଲିୟାନ୍‌ସ, ଜେଲରେ ବନ୍ଦି ଥିବାବେଳେ ତାଙ୍କ ରାଣୀଙ୍କ ପାଖକୁ 'ହ୍ୟାପି ଭାଲେଣ୍ଟାଇନ୍ ଡେ' ଲେଖି ପଠେଇଥିଲେ । ସେଇ ଲେଖାକୁ ବ୍ରିଟିଶ୍ ମ୍ୟୁଜିୟମ୍ ସାଇତି ରଖିଛି, ଜାଣିଛୁ ନା ନନ୍ଦା, ବନ୍ଦିତା ନନ୍ଦାକୁ ଉଦ୍ଦେଶ୍ୟ କରି କହିଲେ ।

– 'ଆଜିକାଲି ତ ଏଇଟା ଗୋଟିଏ ଫ୍ୟାଶନ୍ ହୋଇଗଲାଣି । ମାସେ ଆଗରୁ 'ପ୍ରେମ ଦିବସ' ମନେଇବେ ବୋଲି ଆମ ଯୁବପିଢ଼ି କେତେ ପ୍ରକାର ଯୋଜନା ପ୍ରସ୍ତୁତ କରୁଛନ୍ତି ।

ଦୁର୍ଗାପୂଜା, କାଳୀପୂଜା କିମ୍ବା ଜନ୍ମାଷ୍ଟମୀ ଗଣେଶପୂଜା କଥା ଆମ ପିଲାଙ୍କର ମନେ ନଥିବ, ମନେ ନଥିବ ବାପା ମାଆଙ୍କ ଜନ୍ମଦିବସ କି ଶ୍ରାଦ୍ଧ ଦିବସ ପଛକେ ଭାଲେଣ୍ଟାଇନ୍ ଡେ' ପାଳିବାରେ ଉତ୍ସାହର କିଛି କମ୍ ନାହିଁ । ଚା' ଛାଣୁ ଛାଣୁ ରୋଷେଇ ଘରୁ କଥା ଯୋଡ଼ିଲା ନନ୍ଦା ।

- ସୁଲକ୍ଷଣା ଏଥର ପାଟି ଖୋଲିଲେ, ଶୁଣୁଥିଲେ ସବୁକଥା ଚୁପ୍‌ଚାପ୍ । ଠିକ୍ କହିଛୁ ମା', ମୋତେ ତ ଜାଣ, ଅବାଗିଆ ଲାଗୁଛି ଏସବୁ । କାହାଣୀ ଚାଲିଛି ତା' ବାଟେ ବାଟେ, ଘଟଣା ଘଟିଛି ତା' ବାଟରେ ଆମେ ତାକୁ ପାଳୁଛୁ ଆଉ ପ୍ରକାରେ, ଆମ ବାଗରେ । କିଛି ଖାପ ଖାଉନି କାହା ସହିତ ନା ଆମ ମାଟି ପାଣି ପବନକୁ, ନା ଆମ ସଂସ୍କୃତି, ଚଳଣିକୁ - ମୁଁ କ'ଣ କିଛି ଭୁଲ କହୁଛି ମା' ?

ଅରୁଣ ସେତିକିବେଳକୁ ପ୍ୟାଣ୍ଟ ସାର୍ଟ ବଦଳେଇ ଚା' ଖାଇବାପାଇଁ ଆସରରେ ଆସି ଯୋଗଦେଇ ଶୁଣିଲେ । ଭାଲେଣ୍ଟାଇନ୍ ଡେ' କୁ ନେଇ ଆଲୋଚନା ଚାଲିଛି- ସେଥିରେ ପୁଣି ବୋଉ ଭାଗ ନେଇଛି । ଆଶ୍ଚର୍ଯ୍ୟ ଲାଗିବା କଥା । କହିଲେ, 'ବୋଉ ତୋତେ ବି କ'ଣ ପଶ୍ଚିମା ପବନ ବାଜିଲାଣି, ତୁ ବି ପାଳନ କରିଛୁ ଭାଲେଣ୍ଟାଇନ୍ ଡେ' କହୁ କହୁ ହସି ପକେଇଲେ, ଯା ହେଉ ତୋ ଦେହରୁ ଗାଁର ଗନ୍ଧ କଟିଗଲା । ଫୁଲତୋଡ଼ାକୁ ଧରି ଆଘ୍ରାଣ କଲେ ମନ ଖୁସିରେ ଅରୁଣ । - 'ସେଇକଥା ପରା, ସୁମାରୁମା ମୋତେ ଦେଇଛନ୍ତି ସେଇ ଫୁଲତୋଡ଼ାଟା । ମୁଁ କିଛି ଜାଣିଥିଲିକି ଏସବୁ କଥା - ବନ୍ଦିତାଠୁ ଶୁଣୁଛି ଯାହା ।'

- ଅରୁଣ ଚେୟାର ଉପରେ ନିଜକୁ ସହଜ କରି କହିଲେ ଆମେ ପରା ମଡ଼ର୍ଣ୍ଣ ହେଲୁଣି ବୋଉ । ତାରି ପ୍ରଭାବରେ ଆମେ ଯେତେବେଳେ ଆଧୁନିକତାର ହାତ ଧରି ଡାକି ଆଣିଛୁ, ସେଇ ଢଂଗରେ ତ ନିଜକୁ ପେଶ କରିବାକୁ ହେବ । ପୋଷାକ, ଆଦବକାଇଦା, ଚାଲିଚଳଣି ରୁଚି କୁହ କି ପାର୍ଟି, କ୍ଲବ, ହୋଟେଲ ଡ୍ୟାନ୍ସ, ଗିଫ୍ଟ, ପ୍ରେମ ସମ୍ଭାଷଣ, ଖାଦ୍ୟପେୟ କୁହ, ସବୁଥିରେ ପଶ୍ଚିମା ଚଳଣିର ଛାପ । ତା'ଛଡ଼ା ମୁକ୍ତ ଜୀବନ ଆଉ ବ୍ୟକ୍ତି ସ୍ୱାତନ୍ତ୍ର୍ୟ, ଆମ ଜୀବନକୁ କୁଆଡ଼େ ଉତ୍ତରଣ ମାର୍ଗରେ ନେଇଯାଏ ବୋଲି ପଶ୍ଚିମା ପଣ୍ଡିତମାନେ କହିଛନ୍ତି । ତେଣୁ ଆଧୁନିକତାର ମୁଖ୍ୟସ୍ରୋତରେ ଯେତେବେଳେ ଆଜିର ଯୁବପିଢ଼ି ଝାଂପ ଦେଇଛନ୍ତି ସେଠି, ମୋ ବୋଉ, ଆମ ଭାରତୀୟ ମାଟି ଆଉ ପରଂପରାର ବାସ୍ନାକୁ କାହିଁକି ଖୋଜୁଛି କହିଲ ବନ୍ଦିତା ? କହିଲେ ଅରୁଣ ବନ୍ଦିତାକୁ ଚାହିଁ । ସହରୀ ଜୀବନର ଏଇ ଚଳଣି ଗାଁ ଗହଳି ଭିତରକୁ ବି ମାଡ଼ିଗଲାଣି ଶିଉଳି ଭଳି । ସତେ ଯେମିତି ସାର୍ବଜନୀନ ହୋଲି ପର୍ବ । "ଜାଣିଛୁ ବୋଉ, ଆଜି ବଜାରରେ ଝୁଡ଼ି ଝୁଡ଼ି ରକ୍ତଗୋଲାପ କୁଆଡ଼େ ଉଭାନ ହୋଇ ଯାଇଛି । ହୋଟେଲ, ନଈକୂଳ, ପାର୍କ, ଖୋଲାପଡ଼ିଆ, ଦୋକାନ ବଜାର, ସବୁଠି ଯୋଡ଼ାଯୋଡ଼ି ପୁଅଝିଅ ଆଳାପ କୁହ କି ପ୍ରେମାଳାପରେ ମସଗୁଲ । ଭୟ ନାହିଁ କି ସଂକୋଚ ନାହିଁ । ଅନ୍ୟ ଆଖିକୁ କ'ଣ ଦିଶୁଥିବ । ଅଭିଭାବକମାନଙ୍କର ବି କୌଣସି କର୍ତ୍ତୃତ୍ୱ ନାହିଁ । କହିବାକୁ ଗଲେ ପ୍ରେମର ନଈବଢ଼ି । ଦୋକାନ ବଜାରରେ ଭଲ କିଣାବିକା ବି ଚାଲିଛି ।"

– 'ଇଏ ବିଶ୍ୱ ଉଦାରୀକରଣ ଆଉ ଜଗତୀକରଣର ପ୍ରଭାବ, ବନ୍ଦିତା କଥା ଯୋଡ଼ିଲା । ଏଥିରେ ଉଭୟ ପକ୍ଷକୁ ଲାଭ । ଇଏ ତ ନୂଆ ଚଳଣି । ଆମର ଆଉ ଗୋଟିଏ ନୂଆ ପ୍ରକାର ଚଳଣି ବି ଆରମ୍ଭ ହୋଇନି କି ଅରୁଣ ଭାଇ, ଶ୍ରାବଣୀ ସୋମାବାର, କାଉଡ଼ିଆଙ୍କ ଜଳାଭିଷେକ । ଦେଖିଲେ ମନେହେଉଛି - ସତେଯେମିତି ଜନାନ୍ଦୋଳନ ଅଥବା ଭାକ୍ତିକ ଆନ୍ଦୋଳନର ଶୋଭାଯାତ୍ରା । ନା, ନା, ତମେ ଭାବନି ଯେ ମୁଁ ବ୍ୟଙ୍ଗ କରୁଛି । ସେମାନଙ୍କ କାର୍ଯ୍ୟକଳାପକୁ ଅନୁଧ୍ୟାନ କଲେ ମୋର ତ ସେଇୟା ମନେ ହୁଏ । ଆମ ଭିତରେ ଏଇ ଭକ୍ତିପ୍ରବଣତା ଥିଲା, ଅଛି ମଧ୍ୟ, କିନ୍ତୁ ଏଭଳି ପାଗଳାମି ତ ନଥିଲା । ଏଠି ଈଶ୍ୱରଙ୍କ ପାଇଁ କେତେ ନିଷ୍ଠା ଅଛି ଜାଣେନା । ତେବେ ଏଇ ପ୍ରେମଦିବସ ପାଳନ କରିବା ମୂଳରେ ବି ସେଇ କଥା । ପ୍ରେମ ଆଉ ଭଲପାଇବାରେ ପରସ୍ପର ପ୍ରତି କେତେ ଆନ୍ତରିକତା ରହିଛି ମୁଁ କହିପାରିବିନି । ତେବେ ଏ ସବୁରେ ବେପାରୀ ମତଲବ ଯଥେଷ୍ଟ ରହିଛି ଏକଥା ବୁଝିହେଉଛି ।'

– ଏକଦମ୍ ସତ । ତା'ଛଡ଼ା ଆଉଟିକିଏ ଗଭୀର ଭାବେ ଚିନ୍ତା କଲେ ମନେ ହେଉଛି, ଆମ ଭିତରେ ଆତ୍ମବିଶ୍ୱାସର ଅଭାବ । ଆତ୍ମବିଶ୍ୱାସ ହରେଇଥିବା ମଣିଷ ହିଁ ନିଜ ବ୍ୟତୀତ, ଆଉ ସବୁକୁ ବିଶ୍ୱାସ କରେ । କହିଲେ ଅରୁଣ । ତେବେ ଆଜିର ସଭ୍ୟତା ଆମକୁ ତତ୍କାଳ ଲାଭ, କ୍ଷଣିକ ସୁଖ ପାଇଁ ଅନବରତ ବହୁ ପ୍ରକାରେ ପ୍ରୋତ୍ସାହିତ କରୁଛି । ଆଉ ନିର୍ବୋଧ ମଣିଷ ତା' ପଛରେ ପାଗଳଙ୍କ ଭଳି ଧାଉଁଛି । କେତେ ବାଟ ଏମିତି ଧାଇଁବ ଅଣନିଶ୍ୱାସୀ ହୋଇ କେଜାଣି ?

ନନ୍ଦା ଆଣି ଋ' ଜଳଖିଆ ଥୋଇଲା ଟେବୁଲ ଉପରେ ଅରୁଣଙ୍କ ପାଇଁ ।

–ସୁଲକ୍ଷଣା କହିଲେ, ଇଏ ତ ଲଂଗଳାମୁକୁଳା ସଂସ୍କୃତିରେ ପୁଅ । ଟିକକ ଆଗର ଉତ୍ଫୁଲ୍ଲତା ହଜିଯାଇଥିଲା ତାଙ୍କ ମୁହଁରୁ । ଟିକେ ଚିନ୍ତିତ ହୋଇ କହିଲେ, ମୁଁ ଯାହା ତମ କଥାରୁ ବୁଝିଲି, ଆମର ଏଠି ଏଇ 'ପ୍ରେମଦିବସ' ପାଳନ କରିବାର କିଛି ମାନେ ନାହିଁ । ନିଜ ଭିତରର ସ୍ନେହଶ୍ରଦ୍ଧା ଜଣେଇବା ପାଇଁ ନିର୍ଦ୍ଦିଷ୍ଟ ଗୋଟିଏ ଦିନର ଆବଶ୍ୟକତା କ'ଣ ପାଇଁ କହିଲୁ ?

– କ'ଣ ପାଇଁ ଆଉ କ'ଣ କି ବୋଉ, ମଉଜମଜଲିସ୍ କରିବା ପାଇଁ । ମୁକୁଳା ଜୀବନର ସ୍ୱାଦ ଋଖିବା ପାଇଁ ଶୃଙ୍ଖଳାର ବଳୟ ଭିତରୁ କିଛି ସମୟ ବାହାରି ନୂଆ କକ୍ଷଟିଏ ଗଢ଼ି ବୁଲିବାର ଗୋଟିଏ ଭ୍ରାନ୍ତିଜନିତ ଆନନ୍ଦ ପାଇଁ ତ । ନ ହେଲେ ଯା ପଛରେ ସ୍ଥାୟିତ୍ୱ କାହିଁ ? ଆଉ ଏଇ ଆମ ସୁମାରୁମା ଭଳି ଅବୋଧମାନେ ସେମାନଙ୍କ ଦେଖାଦେଖି ଗିଫ୍ଟ, ଫୁଲ, କାର୍ଡ଼ ଆଉ ମିଠା ଭିତରେ ନିରୀହ ଆନନ୍ଦ ଲୁଟୁଛନ୍ତି - କଣ ନା, ପ୍ରେମ ତ ପ୍ରେମ ଯିଏ ଯାହାକୁ ଭଲପାଏ । ଗିଫ୍ଟ ଦେଇ ନେଇ ପୂର୍ତ୍ତି କରିବା କଥା ତ କରୁଛନ୍ତି ।

– ତୁ ଠିକ୍ କଥା କହୁଛୁ, ପିଲାଙ୍କର ଗୋଟିଏ ଉଚ୍ଛନ୍ନ ହେବାର ବୟସ ଥାଏ – ସେଥିପାଇଁ ସେମାନେ କିଛି ଗୋଟାଏ ଏଭଳି କାମନା ଖୋଜନ୍ତି – ଯା ବୋଲି ବୁଝିଲା ଶୁଝିଲା ମଣିଷ ବି

ଏମିତି ମାତିବାଟା ସୁନ୍ଦର ଦିଶୁଛି ? ପ୍ରେମ ସୃଷ୍ଟି ଆରମ୍ଭରୁ ମଣିଷ ସହିତ ଯୋଡ଼ି ହେଇ ରହିଛି, ରହିବ, ରହିଥିଲା । ଇଏ ପ୍ରେମକୁ ଆଧାର କରି ତ ନାରୀ ପୁରୁଷ ଏକାଠି ସୃଷ୍ଟିକୁ ସମ୍ଭାଳୁଛନ୍ତି । ହେଲେ ଆମ ପରଂପରାରେ ଯା' ଚେହେରା ଟିକିଏ ଭିନ୍ନ । ସ୍ୱରୂପ ଅଲଗା । ଏଥିରେ ସମର୍ପଣ ଭାବ ଅଛି, ତ୍ୟାଗ ଅଛି, ପରସ୍ପର ପ୍ରତି ବିଶ୍ୱାସ ଅଛି । ଗାମ୍ଭୀର୍ଯ୍ୟ ବି କିଛି କମ୍ ନୁହେଁ । ସେଇଥିପାଇଁ ତ ମଣିଷ ଜୀବନରେ ପ୍ରେମର ପ୍ରକାଶ ଓ ପ୍ରତିଷ୍ଠାର ପଟାନ୍ତର ନାହିଁ । ସୁଲକ୍ଷଣା ନିଜ ପରଂପରାର ଜୟଗାନ କଲେ ଶତମୁଖ ହୋଇ । ନନ୍ଦା ସେଥିରେ ଆଉ ଦି'ପଦ ଯୋଡ଼ିବାକୁ ଯାଇ କହିଲା 'ଆମ ପାଇଁ ପ୍ରେମ କିଛି ଖେଳଘର ନୁହେଁ । ଆଉ ବାହାଘର ବି ସେମିତି । ଥରେ ଅଗ୍ନିକୁ ସାକ୍ଷୀରଖି ସ୍ୱୀକାର କରିନେଲେ ହେଲା । ତା' ବି ଗୋଟାଏ ଜୀବନ ପାଇଁ ନୁହେଁ...'

– 'ସାତ ଜନ୍ମ ପାଇଁ ମା', ଆମର ଏଇ ବନ୍ଧନ ଗୋଟାଏ ଜନ୍ମ ନୁହେଁ, ସୁଲକ୍ଷଣା ଦି'ଗୁଣ ଉତ୍ସାହରେ ସମର୍ଥନ କଲେ ବୋହୂକୁ । ଆମେ ବୁଝିପାରିଥିଲୁ ଏକଥା । ଆମର ବିଶ୍ୱାସ ଥିଲା ପରସ୍ପର ପାଇଁ ।'

– "ଏବେ ତ ବିବାହବାର୍ଷିକୀ ପାଳନ କରାଯାଉଛି, ମନେ ପକେଇବାକୁ ଯେ, ଆମ ଦ୍ୱୈତ ଜୀବନକୁ ଏତେବର୍ଷ ହେଲା । ଆଜିକାଲିର ପିଲାଏ ସଂଜସକାଳେ ପରସ୍ପରକୁ ଗୀତର ଦୋହା ଧରିଲା ଭଳି କହିଚାଲିଛନ୍ତି 'ଆଇ ଲଭ ୟୁ...' ବୋଲି, ମାନେ ମୁଁ ତମର, ତମର ହୋଇ ଅଛି । ଏଇୟା ନା ମାଉସୀ ?" ମୁହଁରେ ହସ ଫୁଟାଇ କହିଲା ବନ୍ଦିତା ।

– 'ସତ କଥା । ମା' ହସିବାର କିଛି କାରଣ ନାହିଁ । ସେତିକି ଅତୁଟ ବିଶ୍ୱାସ ଥିଲା ସ୍ୱାମୀ ସ୍ତ୍ରୀ ମଧ୍ୟରେ, ଆଜିକାଲି ତା' ନାହିଁ । ନାହିଁ ବୋଲି ତ ଏତେ ଛାଡ଼ପତ୍ର । ବାହାଘର ଭାଂଗୁଛି ତୁହାକୁ ତୁହା । ମୂଳଦୁଆ ଦୁର୍ବଳ ବୋଲି ନା । ଏଠି ପ୍ରେମ ନାହିଁ – ସ୍ୱାର୍ଥ ଅଛି । ସ୍ୱାର୍ଥକୁ ମୂଳ କଲେ ବନ୍ଧନର ଗଣ୍ଠି ହୁଗୁଳି ଯିବ ନିଁଶ୍ଚେ – ଯୁକ୍ତି ବାଢ଼ିଲେ ସୁଲକ୍ଷଣା ।

"ତା' ସତ ଯେ, ସେକଥା ଏକାବେବେକେ ଅଯଥାର୍ଥ ବୋଲି ବି କହୁନି । ତେବେ ତମ ସମୟର ଯୋଉ ସାତଜନ୍ମର କନସେପ୍ଟ ବା ଧାରଣାଟାକୁ ଆଜି କାଲି ସ୍ୱୀକାର କରିବେନି କେହି ମାଉସୀ । ସେତେବେଳେ ଏଇସବୁ ଧାରଣା ଭିତରେ ନାରୀ ଶୋଷି ହେଉଥିଲା ଅତ୍ୟାଚରିତ ହେଉଥିଲା ସମାଜ ଦ୍ୱାରା, ତମର ସେକାଳର ଅଖଣ୍ଡ ବିଶ୍ୱାସ ଉପରେ ରକ୍ଷଣଶୀଳତାର ଧୂଳି ଜମି ଯାଇ ଅନେକ କ୍ଷତି କରିଛି ନାରୀ ଜାତିର । ଆଜି ସମୟ ବଦଳିଛି । ପୁରୁଷ ଭଳି ନାରୀ ସମାନ ଅଧିକାର, ସମାନ ସ୍ୱାଧୀନତା ଦାବି କରୁଛି ସ୍ୱାଭାବିକ ଭାବେ । ପୁରୁଷ ସହିତ ପାଦ ମିଳାଇ ଚାଲୁଛି ମଧ୍ୟ ।"

– "ଚାଲୁ, କିଏ ମନା କରୁଛି କି, ହେଲେ ଶୃଙ୍ଖଳା ଭିତରେ ଥାଇ ନିଜ ମାନ ସମ୍ମାନକୁ ଜଗିରଖିବାର ଦାୟିତ୍ୱବୋଧ ନଥିଲେ, ପରିବାର ଭାଂଗିବ, ଜୀବନ ଧ୍ୱସ୍ତବିଧ୍ୱସ୍ତ ହୋଇଯିବ । ବିଦେଶ ଭଳି ଆମେ ତ ବାରଂବାର ସ୍ୱାମୀ ସ୍ତ୍ରୀ ବଦଳେଇ ପାରିବାନି । ଆମ ଚଳଣି ତାହା ନୁହେଁ – ସେଥିରେ ସୁଖ କେତେ ଥିବ ତ ମୁଁ କଳ୍ପନା କରିପାରୁନି, ହେଲେ ଶାନ୍ତି ନିଶ୍ଚୟ

ନଥିବ । ଆଧୁନିକ ହେବାକୁ ତ କାହାକୁ ମନା ନାହିଁ । ଯୁଗ ବଦଳୁଛି, ବଦଳିବ । ବଦଳିବା ତ ସମୟର ଧର୍ମ ମା' । ଏହା ବୋଲି ସାମୟିକ ସୁଖ ଭୋଗ ପାଇଁ ବିପଦକୁ ଡାକିଆଣି ତା' ଭିତରକୁ ପଶିବା ଆମେ ଦିଶାହରା ହୋଇ ? ଏସବୁ ଆମ ସଂସ୍କୃତିରେ ନାହିଁ । ଆମ ପିଲାଙ୍କୁ ଆମେ ଶିଖେଇବାକୁ ପଡ଼ିବ ଏକଥା । ସୁଲକ୍ଷଣା କଥାର ମୁଣ୍ଡି ମାରିଲେ ।

ସଂଜ ହୋଇ ଆସୁଥିଲା । ଏଥର ସଂଜ ବସେଇବାକୁ ପ୍ରସ୍ତୁତ ହେବେ ସେ । ବାହାରେ ବିନୟବାବୁଙ୍କ ସ୍କୁଟର ରହିବାର ଶବ୍ଦ ଶୁଣି ବନ୍ଦିତା ଉଠିପଡ଼ିଲା - ସେ ଏଥର ଘରକୁ ଯିବ । ନନ୍ଦା କହିଲା, 'ତୁ ଯାଇ, ରିକନ୍‌କୁ ପଠେଇଦେବୁ ଏଠିକି । ନହେଲେ ସୁମାରୁମା ଦୁଃଖ କରିବେ ।'

- 'ଠିକ୍ ଅଛି, ପଠେଇଦେବି । ମାଉସୀ, ମୁଁ ତା'ହେଲେ ଆଜି ଆସୁଛି । ଅନେକ ଗପିଲେ, ଆଲୋଚନାଟା ବି ଜମିଲା । କାଲି ଆସିଲେ ପୁଣି କଥା ।'

ନନ୍ଦା ଗଲା ବନ୍ଦିତାକୁ ବାଟେଇଦେବାକୁ । ଅରୁଣ ଖବରକାଗଜ ଭିତରେ ବୁଡ଼ି ଯାଇଥିଲେ ।

ଡାଇନିଂ ଟେବୁଲ ଉପରେ ରୁମାସୁମାଙ୍କ ରକ୍ତଗୋଲାପର ଫୁଲତୋଡ଼ା ଟିକିଏ ଆଉଜି ପଡ଼ିଥିଲା ସ୍ୱାଭାବିକ ଢଂଗରେ । ସେଇ ଫୁଲର ଗହଳି ଭିତରୁ ପ୍ରେମର ରକ୍ତିମ ଆଭା ଚହଟେଇ ହସୁଥିଲେ ଭାଲେଣ୍ଟାଇନ୍ - ଯେମିତି କହୁଥିଲେ, ନା, ମୁଁ କିଛି ମନେ କରିନି, ତମ ଆଲୋଚନା, ବିଲୋଚନାକୁ । ମନେରଖିନି ବି କିଛି କାରଣ, ମୁଁ ତୁମକୁ ଭଲପାଏ; ବାସ୍ । ଆଇ ଲଭ୍ ୟୁ- ୟୋର୍ସ ଭାଲେଣ୍ଟାଇନ୍ । ... ବାୟ'



# ଦିଗନ୍ତ ଏବଂ ବିଷାଦଯୋଗ

ଭୂମିକାର ଏତେଟିକିଏ ଦେହ ଖରାପ ହେଲେ ହିଁ ବ୍ୟସ୍ତତା ବଢ଼ିଯାଏ ଦିଗନ୍ତଙ୍କର । ଅଦ୍‌ଭୁତଭାବେ ସେ ପ୍ରତିକ୍ରିୟାଶୀଳ ହୋଇଉଠନ୍ତି । କେହି ନ ଦେଖିଲେ ବିଶ୍ୱାସ କରିବେନି । ଠିକ୍ ତାଙ୍କ ସ୍ୱଭାବର ଓଲଟା । ତାଙ୍କ ବ୍ୟବହାରରେ ରୁକ୍ଷ ଏବଂ କଠୋରପଣ ସ୍ପଷ୍ଟ ଫୁଟିଉଠେ । ଅସୁସ୍ଥ ପତ୍ନୀଙ୍କୁ ଆଦରଯତ୍ନ କିମ୍ବା ଟିକିଏ ସହାନୁଭୂତି ଦେଖେଇ ଦି'ପଦ ଆଶ୍ୱାସନା ଦେବେ କ'ଣ ଓଲଟି ଘର ଭିତରେ ଛୋଟକାଟିଆ ଝଡ଼ଟିଏ ବୁହାଇଦେବେ । ଏଥିରେ ରୋଗୀର ଅସୁସ୍ଥତା ଦ୍ୱିଗୁଣିତ ନହେବ ବା କିମିତି ?

ବିଶେଷ କରି ଏଇ ଦି'ବର୍ଷହେଲା ଦିବ୍ୟ ରେସିଡ଼େନ୍‌ସିଆଲ ସ୍କୁଲରେ ଭର୍ତ୍ତି ହେବାଦିନୁ, ସେ ଦେଖି ଆସୁଛି ଦିଗନ୍ତଙ୍କ ବ୍ୟବହାରରେ ଏଇ ବିଶେଷ ପରିବର୍ତ୍ତନକୁ । ତାକୁ ବିସ୍ମିତ ଲାଗେ... ଭାବି ହୁଏ, କ'ଣ ହୋଇପାରେ କାରଣ !

ଘରର ସବୁ ଦାୟିତ୍ୱ ତ ସେ ନିଜେ ସମ୍ଭାଳୁଛି, 'ଦିବ୍ୟ' ପାଇଁ ବି ସେ କେବେ ମୁଣ୍ଡ ଖେଳାନ୍ତିନି । ତା' ପଢ଼ା, ସ୍କୁଲ, ସ୍ୱାସ୍ଥ୍ୟ ଠୁ ଆରମ୍ଭ କରି ଖାଇବା, ପିନ୍ଧିବା, ଇଚ୍ଛାଅନିଚ୍ଛା ଅଳିଅର୍ଦ୍ଦଳି ପର୍ଯ୍ୟନ୍ତ ଏମିତିକି 'ଦିଗନ୍ତ' ନିଜପାଇଁ ବି କିଛି ଭାବନ୍ତି ନାହିଁ । ସେ ହିଁ ଭାବେ, ଚିନ୍ତାକରେ, ତାଙ୍କ ମୁହଁରେ ଚିନ୍ତାର ରେଖା ଫୁଟିଉଠିଲେ, କି ଅନ୍ୟମନସ୍କ ଲାଗିଲେ ଅଥବା ଥଣ୍ଡାଶର୍ଦ୍ଦି ଟିକିଏ ହେଲେ ବି, ନିଜେ ମା'ଭଳି ସେବାଯତ୍ନ କରିବାରେ ତାର ଟିକିଏ ବି ହେଳା ହୁଏନି । ବରଂ ନିଜକଥା ପଛକୁ ପୋପାଡ଼ି ବାପପୁଅଙ୍କ ଯତ୍ନ ନେବାରେ ସେ ଧନ୍ଦି ହେଉଥାଏ ଅହରହ । ପାଖରେ ବସି ତାଙ୍କ କଷ୍ଟରୁ ସେୟାର ମାଗେ – "କ'ଣ ହୋଇଛି ତମର, ମୁହଁ କାହିଁକି ଶୁଖିଲା ଦିଶୁଛି – ଅଫିସରେ କିଛି ଅସୁବିଧା, ନ ଦେହ ଭଲ ଲାଗୁନି... ପ୍ଲିଜ୍ କୁହନା ମୋତେ ..."

ଗୁଡ଼େଇ ତୁଡ଼େଇ ହେଇ ସେ ଦିଗନ୍ତଙ୍କ ପଛେ ପଛେ ଲାଗିଥିବ, ତାଙ୍କୁ ଟିକିଏ କିମିତି ଆରାମଦେବ ବୋଲି । ଦିଗନ୍ତଙ୍କ ସୁଖିଲା ମୁହଁ ଦେଖିବାକୁ ତାକୁ ଭଲ ଲାଗେନା । ସେଇଥିପାଇଁ ତ ତାର ବାଂଧବୀ ଶୋଭନା ଟିପ୍ପଣୀ କରେ 'ଏକଦମ୍ କ୍ଲାସିକାଲ, ସମର୍ପିତା ପତ୍ନୀ'ଟିଏ ବୋଲି । କିନ୍ତୁ ଏଇଟା ତାର ସ୍ୱଭାବ । ନିଜ ଦାୟିତ୍ୱ ପ୍ରତି ଖୁବ୍ ସଚେତନ । ଅଥଚ ତା' ଦେହ ଖରାପ ହେଲେ, ଦିଗନ୍ତଙ୍କର କାହିଁକି ଅସହ୍ୟ ହୁଏ, ସେ ବୁଝିପାରେନା । ସେ ତ ନିଜେ ଇଚ୍ଛାକରି ଦେହ ଖରାପକୁ ଡାକିଆଣୁନି । ସେ ତ ବି ମଣିଷ, ଦେହ ଅଛି ମାନେ ରୋଗ ଆସିବ । କାରଣ ଖୋଜି ପାଏନା । ତଟସ୍ଥ ହେବା ଛଡ଼ା ଆଉ କିଛି ଉପାୟ ନଥାଏ ତା'ପାଖରେ । ଅଭିମାନର ତାତିବଢ଼େ । ଅସୁସ୍ଥତା ବି ବଢ଼େ । ନିଜେ ବିଛଣାଧରିଲେ, ଘରକାମରେ ବାଧାଉପୁଜେ । ଦିଗନ୍ତ କିମିତି ବୁଝିପାରନ୍ତିନି କେଜାଣି ସବୁବେଳେ ଔଷଧଟା ଯେ କାମ ଦେଖେଇବ ଆମ ଇଚ୍ଛାରେ, ତା'ତ ନୁହେଁ - ଆଶ୍ୱାସନାର ବି କିଛି ଭୂମିକା ଅଛି । ହେଲେ ଦିଗନ୍ତଙ୍କ ମ୍ୟାନେଜ୍‌ମେଣ୍ଟ୍ ବହିରୁ ଏଇସବୁ ଇମୋସନାଲ୍ ଚାପ୍‌ଟରଟା ଉଡ଼ିଯାଇଛି ।

ସେ ଜାଣେ, ଘରସଂସାର ସମ୍ଭାଳିବା ଦିଗନ୍ତ ଜାଣନ୍ତିନି । ସଂସାରର ବ୍ୟାକରଣ ତାଙ୍କୁ ମାଲୁମ ନାହିଁ । ଯଦିଓ ସେ କେବେ ହାତ ବାନ୍ଧି ଅଳସୁଆଙ୍କ ଭଳି ବସି ରହନ୍ତିନି - ହେଲେ ସେ ଯାହା କରନ୍ତି, ତାଙ୍କ ଅଫିସ୍ ପାଇଁ । କଂପାନିର କେମିତି ଉନ୍ନତି ହେବ, ଲାଭ ହେବ କେବଳ ସେଇ ଚିନ୍ତା । ଦିନରୁ ରାତି ସେଇ ଅଫିସ୍ କାମରେ ବୁଡ଼ି ରହିବାରେ ତାଙ୍କର ସୁଖ । ମଣିଷଟାର ସ୍ୱଭାବ ହିଁ ସେମିତି । ଏ ଘରକୁ ଆସିଲାଦିନୁ ପ୍ରାୟ ସେ ଦେଖିଆସିଛି । ବୁଲାବୁଲି, ମାର୍କେଟିଂ ପାର୍ଟି ପିକ୍‌ନିକ୍ ସିନେମାରେ ତାଙ୍କର ମନ ନଥାଏ ।

ଅଥଚ ତାର ବୁଲିବାକୁ ମନ, ରେଷ୍ଟୋରାଁରେ ଖାଇବାକୁ ମନ, ସିନେମା ଦେଖିବାକୁ ମନ, ନଈକୂଳରେ ଯାଇ ଘଣ୍ଟାଘଣ୍ଟା ବସିବାକୁ ମନ । ତାର ଯାହା ପସନ୍ଦ, ଦିଗନ୍ତଙ୍କର ସେ ସବୁ ନାପସନ୍ଦ । ତଥାପି ସେ ଚେଷ୍ଟାକରେ ତାଙ୍କ ମନ ରଖିବାକୁ । ଯା'ବୋଲି ଯେ ଦିଗନ୍ତ ତାକୁ କୁଆଡ଼େ ନିଅନ୍ତିନି ତା'ନୁହେଁ । ତେବେ କିଛି ଗୋଟାଏ ବାହାନା ଦେଖେଇ ଯୋଜନାଟିକୁ ଟାଳିବାପାଇଁ ଚେଷ୍ଟା କରନ୍ତି । ସେ ଜାଣିପାରେ, ଆଗରୁ 'ଦିବ୍ୟ'ର ଆଳ ନେଇ ସେ ବି ଅନେକ କରୁଥିଲେ - "ଚାଲ ନା ଆଜି ମେଟ୍ରୋରେ ସିନେମା ଦେଖି ଚାଇନିଜ୍ ଖାଇ ଫେରିବା - ସେଇ ପାଖରେ ନୂଆ ଚାଇନିଜ୍ ରେଷ୍ଟୁରାଣ୍ଟ ଖୋଲିଛି - 'ଦିବ୍ୟ' କହୁଥିଲା । କିନ୍ତୁ ଏବେ 'ଦିବ୍ୟ' ହଷ୍ଟେଲ ଗଲାପରେ ନିଜପାଇଁ କହିବାକୁ ଇଚ୍ଛା ହେଉନି, କହିଲେ ବି ସେଇ ଏକା ଉତ୍ତର– "ଏଇଦେଖ ମୋର କେତେ କାମ ବାକି ପଡ଼ିଛି, ରାତିଆଠଟା ପୂର୍ବରୁ ଅଫିସ କେବେ କ'ଣ ମୋତେ ଫ୍ରି କଲାଣି ! ତା'ଛଡ଼ା ତମେ ତ ରିମା କି ଶୋଭନାକୁ ନେଇ ଯାଇପାରିବ - ଫାଇଲ ଭିତରୁ ମୁହଁ ନ ଉଠାଇ ଉତ୍ତର ଫେରାନ୍ତି ଦିଗନ୍ତ" ।

ଅଭିମାନରେ ଫାଟିପଡ଼େ ଭୂମିକା, କୁହେ, ମୁଁ ଜାଣିଥିଲି ତୁମେ ଏଇୟା କହିବ ବୋଲି, ସେଇଥିପାଇଁ ତ ମୁଁ ତୁମକୁ କିଛି କୁହେନି । କେବଳ ତମେ ହିଁ ତ ଚାକିରି କରିଛ ନା, ଆଉ

କିଏ କରିଛି କି ? ମାସକୁ ମାସ ପୁଳାଏ ଟଙ୍କା ଦରମା ଦେଇ କଂପାନି ଯିମିତି ତମକୁ କିଣି ନେଇଛି । ତମର ଯେ ପରିବାଟିଏ ଅଛି, ଘରେ ସ୍ତ୍ରୀ ଅଛି ପୁଅ ଅଛି - ସେମାନଙ୍କର ମନବୋଲି କିଛି ଅଛି, ଦିନେ କେବେ ଭାବିଛ ସେମାନଙ୍କ କଥା ? ରିମା ଶୋଭନାଙ୍କ ସହିତ ସହିତ ସିନେମା ଯିବା, ତୁମ ସହିତ ସିନେମା ଯିବା ଭିତରେ କିଛି କିଛି ତଫାତ୍ ନାହିଁ ? ଆଶ୍ଚର୍ଯ୍ୟ ସତରେ ! ତମର ଇମୋସନ ବୋଲି କଣ କିଛି ନାହିଁ ? ଏମିତି କିନ୍ତୁ ତମେ ଆଗରୁ ନଥିଲ କହୁ କହୁ ଟପ୍‌ଟପ୍ ଲୁହ ଖସିପଡ଼େ ଭୂମି ଆଖିରୁ ।

ଅବଶ୍ୟ ବ୍ୟସ୍ତ ହୋଇପଡ଼ନ୍ତି । ଦିଗନ୍ତ ଉଠିଆସନ୍ତି ଫାଇଲ ଛାଡ଼ି ଲୁହ ପୋଛି ଦେବାକୁ- 'ତମେ ଏମିତି ପିଲାଙ୍କ ଭଳି ଅବୁଝା କାହିଁକି ହେଉଛ ଆଜିକାଲି । ତମେ ମୋର, ଅଫିସ୍‌ଟା ବି ତ ମୋର, ମୋ' ଦାୟିତ୍ୱ । ଏଠି ତ ସରକାରୀ ଚାକିରିର ନିଶ୍ଚିନ୍ତପଣ ନାହିଁ । କଂପାନିର ପ୍ରଫିଟ୍ ନହେଲେ ସେ ମୋତେ ଉତ୍ତରଦାୟୀ କରିବ - ତୁମେ ଏକଥା ବୁଝିପାରୁନା ?'

ଅବଶ୍ୟ ସେ ବୁଝେ । ହେଲେ କାହିଁକି କେଜାଣି ନିଜକୁ ତ ବୁଝେଇ ପାରେନା । ଯେମିତି ଲାଗେ, ଏଇ ସଂସାରରେ ଖୁବ୍ ନିଃସଙ୍ଗ ସେ । ଯଦିବି ସେ କ୍ୱଚିତ୍ କେବେ ଦିଗନ୍ତଙ୍କ ସାଥିରେ କୋଉଠିକି ଯାଏ, ସେଠି ବି ସେ ଏକା, ଦିଗନ୍ତ ନିଜ ସାଥି ଖୋଜି ଗପ ଯୋଡ଼ନ୍ତି– 'ଦିବ୍ୟ' ଥିଲା, ତା' କାମରେ ତା' ସହିତ ରହି ସମୟ କଟି ଯାଉଥିଲା - 'ଦିବ୍ୟ' ଥିଲା ତା'ର ଜୀବନର ସ୍ୱପ୍ନ । ସେଇଥିପାଇଁ ତ ସେ ଚାହୁଁନଥିଲା ତାକୁ ହଷ୍ଟେଲ ପଠେଇବାକୁ । ହେଲେ ଏକା ଜିଦ୍ ଦିଗନ୍ତଙ୍କର - "ସେ ଯିବ ନିଶ୍ଚୟ । ତା' ଭବିଷ୍ୟତ ଗଢ଼ିବା ଦାୟିତ୍ୱ ଆମର । ତୁମ ପଣତ ତଳେ ରହି ସେ ନିଜ ଭବିଷ୍ୟତ ଗଢ଼ି ପାରିବନି, ନିଜେ ବଂଚିବା ଶିଖି ପାରିବନି । ତା' ଛଡ଼ା ସେ ତ ଦିନେ ଯିବ ଆମ ପାଖରୁ ନା... । ତମେ ଆଉ ଜିଦ୍ କରନି ।"

ଦିନେ ସକାଳୁ ଦୁହେଁ ନେଇଁ 'ଦିବ୍ୟ'କୁ ରେସିଡ଼େନସିଆଲ ସ୍କୁଲରେ ଆଡ଼ମିଟ୍ କରି, ହଷ୍ଟେଲ୍‌ରେ ଛାଡ଼ିଦେଇ ଆସିଥିଲେ । ପ୍ରଥମେ ପ୍ରଥମେ 'ଦିବ୍ୟ'କୁ ବି କଷ୍ଟ ହେଇଥିଲା- ଆଉ ତା' ପାରିବାରିକ ଜୀବନର ଛନ୍ଦଟା ହଠାତ୍ ବେଛନ୍ଦ, ବେସୁରା ହୋଇଗଲା; ସେଇଦିନୁ ସମୟଟା ପାହାଡ଼ ଭଳି ମାଡ଼ିବସିଛି ତା' ଉପରେ । ନିଛାଟିଆ ଘର... ଖାଁ ଖାଁ କରୁଛି । କେତେ ବସିବ ଟେଲିଭିଜନ୍ ଆଗରେ, ଫେସବୁକ୍‌ରେ କେତେ ଚାଟିଂ କରିବ କେତେ ଗପିବ ମୋବାଇଲ୍‌ରେ ଅଥବା ବ୍ୟସ୍ତ ରହିବ ହ୍ୱାଟ୍‌ସଅପ୍ ନେଇଁ ? ମନର ତ କିଛି ଦାବୀ ଅଛି । ଅବଶ୍ୟ 'ଦିବ୍ୟ' ସହିତ କିଛି ସମୟ ଗପେ । କେତେ ଗପିବ ବି । ଦିବ୍ୟର ସାନ୍ନିଧ ତାକୁ ଯେତିକି ଆନନ୍ଦ ଦେଇଥାନ୍ତା - ତାହା ତ ଫୋନ୍‌ରେ ସମ୍ଭବ ନୁହେଁ । ପିଲାଟା ଆଗରେ ନିଜ ଛାତି ତଳର ଖାଲିପଣକୁ ତ ଦେଖେଇ ପାରିବନି । ତଥାପି ପଚାରେ ଦିବ୍ୟ 'ତୋ କଥା ଏବେ କ୍ଷୀଣ କାହିଁକି ଶୁଭୁଛି ମାମା, କାନ୍ଦୁଛୁ ନା ଦେହଭଲ ନାହିଁ ?'

ତାକୁ ଭୁଲେଇ ଭାଲେଇ କୁହେ 'ମୁଁ ଭଲ ଅଛି ବାବା, ନିଜର ଯତ୍ନ ନବୁ, ମନଦେଇ ପଢ଼ିବୁ । ଠିକ୍ ଭାବେ ଖିଆପିଆ କରୁଥିବୁ କାଲି ଫୋନ୍ କରିବି - ଏବେ ରଖୁଛି । ଫୋନ୍

ଥୋଇ ମନକୁ ମନ କୁହେ, ଦେହ ଆଉ ଭଲ କୋଉଠି ରହୁଛି- ଛ' ମାସ ହେଲାଣି କ'ଣ ହେଉଛି କେଜାଣି - ଖାଇବାକୁ ତ ଇଚ୍ଛା ହେଉନି - ବାନ୍ତି ଦେଖାଉଛି - ମୁଣ୍ଡ ଉପରେ କିଏ ଯେମିତି ପଥର ଲଦି ଦେଇଛି ଲୋ' ଫିଭର । ଶୋଇ ରହିବାକୁ ହିଁ ମନ ହେଉଛି । ଗୋଟେଦିଟା କ'ଣ ବଟିକା ଗିଳିଦେଲେ ଆରାମ ଲାଗୁଛି ସାମୟିକ ଭାବେ, କାମ ଚଳିଯାଉଛି । ବିଛଣାରେ ଶୋଇବା ଦେଖିଲେ ତ ଦିଗନ୍ତଙ୍କର ମୁଡ୍‌ଅଫ୍ ହୋଇଯିବ - ସିଏ ଆସିଲାବେଳକୁ ସେ ଯେମିତି ଠିକ୍ ଥିବ । ଜାଳୁଥିବ ଏଭାରେଡ଼ି ବ୍ୟାଟେରି ଭଳି । ଏଇ ତ ଗତସପ୍ତାହର କଥା– ଜ୍ୱର ଥିଲା ବୋଲି ଶୋଇପଡ଼ିଥିଲା, ସେଦିନ ଦିଗନ୍ତ ଶୀଘ୍ର ଫେରିଥିଲେ ସଂଧ୍ୟାରେ - ଆଖିରେ ପଡ଼ିଗଲା - ଗୁଡ଼ାଏ ବିରକ୍ତ ହେଲେ - "ମୁଁ ତ ଡାକ୍ତର ନୁହେଁ ମୋ' ଆଗରେ ଜ୍ୱର ବୋଲି ଶୋଇରହିଲେ କ'ଣ ହେବ - ଆମ ଫିଜିସିଆନ୍‌ଙ୍କ ସହିତ ପରାମର୍ଶ କରି ଔଷଧ ଖାଅ... ସବୁକଥା ଯଦି ମୁଁ ହିଁ କରିବି ତମର ଆଉ କ'ଣ କାମ କି ? ଏତିକି ପାରିବନି ।"

କିଛି ଯୁକ୍ତି କରିନଥିଲା । ଆଜିକାଲି ସେ ଆଉ କିଛି କୁହେନା - କିନ୍ତୁ ଦିଗନ୍ତଙ୍କର ଏଇ ମମତାଲଗା ଅବହେଳା ତାକୁ ଅସହ୍ୟ ଲାଗେ । ଔଷଧ ନ ଖାଇଲେ ମରି ତ ଯିବନି - ହେଉ ଯାହା ହେବା କଥା । ମରିଗଲେ ବି କୋଉ ଅସୁବିଧା ହୋଇଯିବ ତାଙ୍କର । ବରଂ ମରିଗଲେ ଭଲ । ବଳେ ବୁଝିବେ ତା'ର ଅପରିହାର୍ଯ୍ୟତା କେତେ । ଦିନେ କହିବି ଦେଇଥିଲା ବିରକ୍ତ ହେଇ... ତା' ଉତ୍ତର ବି ସେ ଫେରେଇ ଦେଇଥିଲେ ସାଂଗେ ସାଂଗେ । ମୁଁ ସେ ଯାଏ ଥିଲେ ତ ବୁଝିବି... ।

ମାନେ !! କି ଆଶ୍ଚର୍ଯ୍ୟ ! ତା'ର ସମ୍ବେଦନଶୀଳ, ସ୍ପର୍ଶକାତର ମନଟା ହଠାତ୍ ବରଫ ପାଲଟି ଯାଇଥିଲା । କ'ଣ କରିବ ମଣିଷଟା କେଜାଣି । ଜିଦ୍‌ଖୋର ମଣିଷଙ୍କୁ ବୁଝେଇବା ଭାରି କାଠିକର ପାଠ । ଥରେ ଥରେ ଆଲୋଚନାବେଳେ 'ୟୁଥାନାସିଆ' ସପକ୍ଷରେ ବେଶ୍ ଯୁକ୍ତି ବାଢ଼ନ୍ତି– "ଦୁଃଖ ଯନ୍ତ୍ରଣା ଭୋଗି କଲବଲ ହୋଇ ବଂଚିବା ଅପେକ୍ଷା ମରିଯିବା, କିମ୍ବା ରୋଗୀକୁ ମାରିଦେଇ ତାକୁ ଯନ୍ତ୍ରଣାରୁ ମୁକ୍ତ କରିଦେବା ସହସ୍ରଗୁଣରେ ଶ୍ରେୟସ୍କର ବୋଲି ତାଙ୍କର ମତ । ଏସବୁ ଶୁଣିଲେ ସେ ଖୁବ୍ ବିରକ୍ତ ହୁଏ । ଭାବେ, ମଣିଷଟା ଏମିତି ନିର୍ଦ୍ଦୟ କେମିତି ହେଲା । ଜୀବନଯାକର ସ୍ନେହପ୍ରେମ ସଂପର୍କ ଅନ୍ତରଂଗତାର କିଛି ମାନେ ନାହିଁ - ଏଇ ଭଲ ପାଇବା ? କେଜାଣି କି ବିଚାର– ପ୍ରଶ୍ନର କୁହେଳୀ ଭିତରେ ସେ ବାଟବଣା ହୋଇଯାଏ । ସେ ତ ନାରୀ, ସ୍ନେହପ୍ରେମର ସଂଜିବନୀ ଦେଇ ଜୀବନକୁ ବଂଚେଇ ରଖିବା, ସାଇତିସଜାଡ଼ି ରଖିବା ଶିଖିଛି - ଏଇଟା ତା'ର ସ୍ୱଭାବ ଈଶ୍ୱର ଦତ୍ତ ଗୁଣ । ପଦେ ମିଠା କଥା, ନିମିଷକର ଆଶ୍ୱାସନା ଯୋଉଠି ଦୁଃଖଯନ୍ତ୍ରଣା ଭୁଲେଇ ଦେବାରେ ସମର୍ଥ - ସେଠି ଏଇ ନିର୍ଦ୍ଦୟତା କାହିଁକି ?

ଦିନେ ଆଲୋଚନା ପ୍ରସଙ୍ଗରେ ଦୀପା ଭାଉଜଙ୍କ ଆଗରେ ଦିଗନ୍ତଙ୍କ ବ୍ୟବହାର ନେଇ ସେ ଅଭିଯୋଗ କରିଥିଲା । ଭାଉଜ କହିଲେ, ବୁଝିଲ ଭୂମି ଦିଗନ୍ତ ତମକୁ ଖୁବ୍ ଭଲପା'ନ୍ତି - ଏତେ ଭଲପା'ନ୍ତି ଯେ, ତମର ଅବର୍ତ୍ତମାନ ତାଙ୍କ ପାଇଁ ଅସହ୍ୟ - ମା' ମନ ଯିମିତି ତା'

ପିଲାଟିର ଟିକିଏ କ'ଣ ହେଇଗଲେ ଅଜଣା ଆଶଂକାରେ ଥରିଉଠେ – ତା' ଭାବନା କେତେ ଆଗକୁ ମାଡ଼ିଯାଏ, ଠିକ୍ ସେମିତି ଭୟ । ତମର କିଛିଟିକେ ହେଇଗଲେ ତାଙ୍କର ଭୟାର୍ତ୍ତ ମନ ଆହୁରି ଭୟ ଦେଖାଏ, ସେଇ ଭୟକୁ ଆଡ଼େଇବା ପାଇଁ, ନିଜକୁ ଶାସନ କରିବା ପରିବର୍ତ୍ତେ ତମଉପରେ ଝଡ଼େଇ ହୁଅନ୍ତି- ଟାଣପଣ ଦେଖାନ୍ତି । ଗୋଟାଏ ଅଜଣା ଭୟ ତାଙ୍କ ଅବଚେତନକୁ ମାଡ଼ିବସେ । ଯେମିତି ଅବୋଧ ଶିଶୁ... ଅଂଧାରକୁ ଡରୁଥିଲେ ବି କୁହେ 'ମୁଁ ଡରୁନି' । ଅଥଚ କାହା ହାତ କି ପଣତଟିଏ ଅଂଧାର ଭିତରେ ବି ଖୋଜି ପାଇଲେ ତାକୁ ଜାବୁଡ଼ି ଧରିଥାଏ – ଜଣେ ଅବୋଧ ଶିଶୁର ଚମତ୍କାର ମନସ୍ତତ୍ୱ-ଦିଗନ୍ତ ଭିତରେ ଆଜି ବି ଜଣେ ଅବୋଧବାଳକ ବଞ୍ଚି ରହିଛି – ଆଉ ତମେ ସେଇ ଅବୋଧଶିଶୁର ଦମ୍ଭର ଆଲୁଅ, ଅଥବା ଆଶ୍ୱାସନାର ହାତ । ବୁଝିଲ... ତମେ ମନକଷ୍ଟ କରନି ବରଂ ଗର୍ବକର ।

ଅବଶ୍ୟ ବଡ଼ଭାଉଜଙ୍କ ଏଇ ବିଚାର ବିଶ୍ଳେଷଣ ତାକୁ କିଛିଟା ଆଶ୍ୱସ୍ତ ଯେ ନ ଦେଇଛି ତା' ନୁହେଁ, ତଥାପି ତାକୁ କଷ୍ଟଦିଏ । ଶାରୀରିକ ଅସୁସ୍ଥତା ବି ଲାଗିରହେ, ସମସ୍ୟାର ସମାଧାନ ହୁଏନା – ସ୍ଥିତି ବଦଳେନା, ଶୋଇ ଶୋଇ ଭାବେ, ଏ ଘରକୁ ସେ ନୂଆ ନୂଆ ଆସିବାବେଳର କଥା । କେତେ ସ୍ୱପ୍ନ, କେତେ ସମ୍ଭାବନା, କେତେ ଯୋଜନା ଭବିଷ୍ୟତର – ରାତି ଅଣ୍ଟୁନଥିଲା, ଆଶା ତେଜୁଥିଲା ଦୁହିଁଙ୍କର । ଆଉ 'ଦିବ୍ୟ' ଆସିଲାପରେ ତ ଉଛୁଳି ଉଠିଥିଲେ ଏ ଘରର କୋଣ ଅନୁକୋଣ । ଦୁହିଁଙ୍କ ଜୀବନର ଇଚ୍ଛା, ଅଭିଳାଷ, ଚାହିଁବା ପାଇବା ସବୁକିଛି ହାତ ଧରାଧରି ହୋଇ ଚାଲିଥିଲେ – ସିଏ ଘର ସମ୍ଭାଳିବ, ଦିଗନ୍ତ ବାହାର ସମ୍ଭାଳିବେ – କଥା ତ ଏଇୟା ଥିଲା । ଦିଗନ୍ତଙ୍କ ନୂଆ ଚାକିରି – କହିବାକୁ ଗଲେ ନିଃସଙ୍ଗତାକୁ ସେ ଭେଟି ନ ଥିଲା । ବରଂ ଯୁକ୍ତି କରୁଥିଲା– "ସେ ଗୋଟାଏ ନଦୀ – ନଦୀର ଅଧିକାଂଶ ଗୁଣ ତା' ପାଖରେ ଅଛି । ତା'ର ଧର୍ମହେଲା ବହିଯିବା କୌଣସି ଆବିଳତାକୁ ସେ ଧରି ରଖେନା – ଚାଲିବାରେ ତାର ଆନନ୍ଦ ସ୍ୱଭାବ ସ୍ୱଚ୍ଛ – ଅନ୍ତରର ସମସ୍ତ ସ୍ନେହ ଭଲପାଇବାକୁ ସେ ତା' ପବନ-ପଣତରେ ସମସ୍ତଙ୍କ ପାଖକୁ-ପଠେଇ ସେମାନଙ୍କ ମନପ୍ରାଣକୁ ଛୁଇଁଛୁଇଁ ଆଉଁଶି ଦିଏ – ସେଇଥିପାଇଁ ତ ସେ ସମସ୍ତଙ୍କର ଅନ୍ତରଂଗ... ପ୍ରତିଟି ମୁହୂର୍ତ୍ତରେ ସେ ଚାହେଁ ବଂଚିବାକୁ ଏବଂ ଅନ୍ୟକୁ ବଂଚେଇ ରଖିବାକୁ । ଆନନ୍ଦ ବାଣ୍ଟିବାକୁ – ସେ କେବେ ବି ଏକା ନୁହେଁ – ଦେଖୁନ... ମୋ' ଚାରିପଟେ କେତେ ଜୀବନ... ଜୀବନର ସବୁଜିମା ସବୁଠି ଲହଡ଼ି ଭାଙ୍ଗୁଛି... । କହୁ କହୁ ସେ ଭାବବିଭୋର ହୋଇପଡ଼େ । କୁହେ, ମୋ ମନଟା ନଦୀ ଭଳି ଖୁବ୍ ବଡ଼ । ମୋତେ ନେଇଚାଲ ନା ନଈକୂଳକୁ । ... ଦିଗନ୍ତ ଶୁଣନ୍ତି ତା' ମୁହଁକୁ ଏକା ଲୟରେ ଚାହିଁ- ଭାବନ୍ତି, ଭୂମିକା ସତରେ ପାଗଳୀଟିଏ । ଦୁନିଆରେ ଏତେ ଦେଖିବା ଜିନିଷ ଥାଉଥାଉ, ତା'ର ଗୋଟିଏ ମାତ୍ର ଦାବୀ – ସେ ନଦୀ ଦେଖିବ । ନଦୀ ତା'ର ଖୁବ୍ ପ୍ରିୟ । ଏକଥା ଅନେକଥର ମନେ ପକେଇଛନ୍ତି ଦିଗ୍ନନ୍ତ । ଅଥଚ ସମୟ କିମିତି ଘେରି କରି ନେଇଗଲା ସବୁ – ସବୁ ବଦଳିଗଲା । ଏବେ କେବଳ ମେଞ୍ଚା ମେଞ୍ଚା ନିର୍ଜନତା ଅସହାୟତା ଆଉ ଯନ୍ତ୍ରଣା !

ଅଫିସ୍ ସାରି ଘରକୁ ଫେରିଲାବେଳକୁ ଦିଗନ୍ତଙ୍କର ଡେରି ହୁଏ । ଯାହାକିଛି ରୋଷେଇ ସାରିଦେଇ ଭୂମିଜା ବିଶ୍ରାମ ନେଉଥାଏ, ନହେଲେ ଟି.ଭି. ଦେଖୁ ଦେଖୁ ଶୋଇ ବି ପଡ଼ିଥାଏ ଅସୁସ୍ଥ ଲାଗୁଥିଲେ । ଦିଗନ୍ତଙ୍କ ଗାଡ଼ି ଦୁଆରେ ବ୍ରେକ୍ ଦେଲେ, ଉଠି ଦ୍ୱାର ଖୋଲେ ଡାଇନିଂ ଟେବୁଲ ରେଡ଼ି କରିବା ପାଇଁ । ଦୁହେଁ ଏକାଠି ଖାନ୍ତି । ପ୍ରାୟ ଖାଇଲାବେଳେ ବି ଲାପ୍‌ଟପ୍ ଖୋଲି ବସନ୍ତି ଦିଗନ୍ତ । ଭୂମି ଚୁପ୍‌ଚାପ୍ ଖାଇଦେଇ ଉଠିଯାଏ । ଦିନେ ଦିନେ ଅଭିମାନ କରି ପଦେଅଧେ ଶୁଣାଇ ବି ଦିଏ– ଅଫିସ କାମ ଆହୁରି ବାକିଥାଏ ତୁମର ନା... ନିଶ୍ଚିନ୍ତରେ ଖାଇବି ପାରନା, ମୋ ପାଇଁ ତ ତମର କେବେ ବି ବେଳ ନଥାଏ... ଏଇ ଖାଇବା ବେଳେ ବି କାମ... ସତରେ ମୁଁ ପାଗଳ ହେଇଯିବି... ଇଯେ ତ ମୋ' ପାଇଁ ଘର ନୁହେଁ ମୃତ୍ୟୁର ଉପତ୍ୟକା - ମନଖୋଲି ପଦେ କଥା କହିବାକୁ କେହି ନାହି... ମୁଁ ଅଣନିଃଶ୍ୱାସୀ ହୋଇଯାଉଛି ଦିଗନ୍ତ... । ତା'ର ନିଃସଙ୍ଗତା ଓ ବିକଳ ମାତୃତ୍ୱ ମୁହଁ ଦେଖାଏ, ଅଭିଯୋଗ ବାଢ଼େ ।

ହେଲେ ବ୍ୟସ୍ତମଣିଷ ଦିଗନ୍ତଙ୍କ ପାଖରେ ସଂପର୍କର ଏଇ ନିରୁତା ଭାଷା ହୁଏତ ବିଶେଷ କିଛି ପ୍ରଭାବ ପକାଏନା; ଓଲଟି କୁହନ୍ତି - "କାହିଁକି, ମୁଁ ତ କୌଣସି କଥାରେ ତମକୁ ବାଧା ଦେଇନି । ତୁମ ପାଖରେ ପର୍ଯ୍ୟାପ୍ତ ସମୟ ଅଛି, ତମେ ତାକୁ ମନଇଚ୍ଛା ବିନିଯୋଗ କରିପାର । ତମକୁ ମୁଁ ଅଖଣ୍ଡ ସ୍ୱାଧୀନତା ଦେଇଛି, ଯେମିତି ଖୁସି ସେମିତି ସମୟ କଟାଅ ।"

ମୋର କିନ୍ତୁ ଏଇ ଅଖଣ୍ଡ ସ୍ୱାଧୀନତା ଏବଂ ଅନନ୍ତ ସମୟର ଆବଶ୍ୟକତା ନାହିଁ - ବରଂ ଏହା ମୋ ପାଇଁ ମନୋଟନ୍‌ସ । ମୁଁ ତୁମକୁ ଚାହେଁ ତୁମ ସାଂଗେ ଦି'ପଦ କଥା କହିବାକୁ ଚାହେଁ - ମୋ ପାଇଁ ଅଧଘଣ୍ଟାଏ ସମୟ ନାହିଁ ତୁମ ପାଖେ ? "କାହିଁକି, ତମର ପୁଣି କି କଥା ମୋ ପାଖେ, ଦିବ୍ୟ କିଛି କହୁଥିଲା କି ? ତୁମେ ନିଜେ ବି ତ ଦିନେ ଯାଇ ତାକୁ ଦେଖି ଆସିପାରନ୍ତ... ସେ ବି ଖୁସି ହୁଅନ୍ତା... ଭୂମି ମୁହଁକୁ ଚାହିଁ ଖାଉ ଖାଉ ପ୍ରସ୍ତାବ ଦିଅନ୍ତି ଦିଗନ୍ତ ।

ଭୂମି କିନ୍ତୁ ପ୍ରଶ୍ନ ଫେରାଏ - "କାହିଁକି ସେ କ'ଣ ଖାଲି ମୋ ପୁଅ, ତମର ଇଚ୍ଛା ହୁଏନା ତାକୁ ଦେଖି ଆସିବାକୁ ? ଦିବ୍ୟ ଯଦି ଚାହୁଁଥିବ ତା' ବାପାଙ୍କୁ ଦେଖିବାକୁ... ?

"ଓହୋ ! ତମେ ଏମିତି ପିଲାଙ୍କ ଭଳି ଯୁକ୍ତି କର କାହିଁକି କେଜାଣି ମୋ ବ୍ୟସ୍ତତା କଥା କ'ଣ ତମର ଅଜଣା; ବୁଝେଇ ଦବ ଦିବ୍ୟକୁ ।"

ଉତ୍ତର ଦେବାକୁ ଆବଶ୍ୟକ ମନେ କରେନା ଭୂମି, ଉଠିଯାଏ । କିଛି ଲାଭ ନାହିଁ ପଥର ପାଖେ ଲୁହ ନିଗାଡ଼ିଲେ । ପଥରର କୌଣସି ପ୍ରବଣତା ନ ଥାଏ । ବିଛଣା ଉପରେ ନିଜକୁ ଅଜାଡ଼ି ଦେଇ ଭାବେ ଆଉ ଭାବେ... ତା' ଚାରିପଟର ପୃଥିବୀଟା ଆଜିକାଲି ଯେମିତି ଶୂନ୍ୟ ବାଲୁବନ୍ତ ପାଲଟି ଯାଇଛି । ଦେହ ଭଲ ଲାଗୁନି - ଅସ୍ଥିର ମନ - ସଂସାର ଯାକର କ୍ଳାନ୍ତି ଯେମିତି ଜମି ରହିଛି ତା' ପାଖରେ । ଅସହାୟ ଲାଗୁଛି । ଯେମିତି ଦେହ ମନରେ ସେ କ୍ରିପରଟିଏ ପାଲଟିଯାଇଛି - ତା'ର ଆଶ୍ରା ଦରକାର ସେ ଲଟେଇଯିବ - ଜାଣେନା କାହିଁକି ତା'ର ଏଇ ଦୁର୍ବଳତା । ଯିଏ ଦିନେ ଅନ୍ୟକୁ ବଂଚେଇବ ବୋଲି ନିଜେ ବଂଚିବାକୁ ଚାହୁଁଥିଲା,

ଚଳିବାଟା ଯା'ର ଧର୍ମ ଥିଲା - ଆଜି ଜୀବନର ସେଇ ସବୁଜିମାତକ କେମିତି କୋଉଠି ହଜିଗଲା ଭାବିପାରେନା, ବ୍ୟସ୍ତ ହୋଇପଡ଼େ । ପୁଣି ଭାବନାକୁ ଗୋଟେଇ ନିଜକୁ ନିଜେ ସାନ୍ତ୍ୱନା ଦିଏ... ଏଇଟିକେ ଟିକେ ଜ୍ୱର ଆଉ କ୍ଳାନ୍ତି ନେଇଁ ସେ କାହିଁକି ଏତେ ଅଥୟ ହୋଇପଡ଼ୁଛି । ଡକ୍ଟର ଦାସଙ୍କ ସହିତ ଥରେ ପରାମର୍ଶ କରି ବିଶ୍ରାମ ନେଲେ ସବୁ ଠିକ୍‌ଠାକ୍ ହୋଇଯିବ ଦିନ କେଇଟାରେ । ଏକୁଟିଆ ଲାଗୁଛି ବୋଲି ମନଟା ବରଂ ଅସୁସ୍ଥ ହେଇ ଯାଉଛି । ଭାଇ ବି କହୁଥିଲେ– "ତୁ ଏବେ କିଛି ଗୋଟାଏ ଜବ୍ କରିବା ଦରକାର - ଆମଘର ପାଖ ହାଇସ୍କୁଲରେ ଟିଚର୍ ପୋଷ୍ଟଟିଏ ଖାଲିଅଛି ବୋଲି ଶୁଣିଛି - ଲିଭ୍ ଭାକେନ୍‌ସିରେ । ତୁ ଦରଖାସ୍ତ କର - ମୁଁ ଚେଷ୍ଟା କରିବି ତୁ କହିଲେ - ଭଲରେ ସମୟ କଟିବ - ମନ ବି ଭଲ ରହିବ ।

ଠିକ୍ କଥା । ତାର ବି ଚାକିରି କରିବା ଇଚ୍ଛା ଥିଲା । ସେତେବେଳେ ଦିଗନ୍ତ ଚାହିଁଲେନି । ଦିବ୍ୟ ପାଇଁ ସେ ବି ଇଚ୍ଛା କଲାନି । ଏଥର ଚେଷ୍ଟା କରିବ - ଦେହଟା ଟିକିଏ ସୁସ୍ଥ ଲାଗିଲେ ହେଲା, ... ଭାବିଲା ବେଳକୁ ଭଲ ଲାଗିଲା । ନିଜ ମନକୁ ଖୁସିରେ ଟିକିଏ ଆଉଁଶି ଦେଲା ଭୂମି । ଆଖିପତା ମାଡ଼ି ପଡ଼ୁଥିଲା କ୍ରମଶଃ... ଦିଗନ୍ତ ତାଙ୍କ କାମସାରି ବିଛଣାକୁ ଆସିବା ପୂର୍ବରୁ ସେ ଶୋଇପଡ଼ିଲା ।

ସେଦିନ... ଖୁବ୍ ଭୋରରୁ ଦିଗନ୍ତଙ୍କ ନିଦ ଭାଙ୍ଗି ଯାଇଥିଲା । ଅଫିସର ଟେନ୍‌ସନ ନଥିଲା ମୁଣ୍ଡ ଭିତରେ । ପାଖ ବିଛଣାରେ ଭୂମି ଶୋଇଛି । ଚାହିଁଲେ... ହଠାତ୍ କାହିଁକି ତାଙ୍କର ମନେହେଲା, ସେ ଅନେକ ଦିନ ହେଲା ଭୂମିକାକୁ ଦେଖିନାହାନ୍ତି ଠିକ୍ ଭାବେ । କାମର ଜଂଜାଳ ଭିତରେ ଆଡ଼େଇ ଯାଇଛନ୍ତି ନିଶ୍ଚୟ । ନହେଲେ ଭୂମିର ମୁହଁଟା ଏମିତି ଅଲଗା ଦିଶୁଛି କାହିଁକି... ! ଭାବୁ ଭାବୁ ଦିଗନ୍ତ ବିଛଣାରୁ ଉଠି ତକିଆକୁ ଆଉଜି ନିରେଖି ଚାହିଁଲେ ଶୋଇଥିବା ଭୂମିକା ମୁହଁକୁ ।

ସତରେ ଶେତା ଦିଶୁଛି ମୁହଁଟା । କେମିତି ନିସ୍ତେଜ... ଆଖି ତଳ କଳା ନ ଦିଶିଲେ ବି ଫିକା ଦିଶୁଛି... କାହିଁକି... ମନଟା ଦବିଗଲା ହଠାତ୍ - ମଉଳିଯାଇଥିବା ଫୁଲ ଭଳି... । ଛାତି ଭିତରଟା ଧଡ଼ଧଡ଼ ହେଇଗଲା ମୁହୂର୍ତ୍ତକ ପାଇଁ । ସତରେ ସେ ନିଜ ପାରିବାରିକ ଜୀବନ କଥା ଭୁଲିଯାଇଛନ୍ତି ଭୂମି ଉପରେ ଦାୟିତ୍ୱ ଲଦିଦେଇ । ଅନେକ ଥର ଏକଥା କହିଛି ଭୂମି । ନିଜ ଚାକିରି, କଂପାନିର ପ୍ରଫିଟ୍, ମ୍ୟାନେଜମେଣ୍ଟ ସମସ୍ୟା ଭିତରେ ଭୂମି କଥା ଭାବିନାହାନ୍ତି । ଗୋଟାଏ ନିଧଡ଼କପଣ, ଅଛି ତ ଅଛି । ଘରକୁ ଆସିଲା ବେଳକୁ ମଣିଷଟେ ଚଲାବୁଲା କରୁଛି ତ । ବାସ୍ ଅଥଚ ସେଇ ମଣିଷଟାର କିଛି ସୁବିଧା ଅସୁବିଧା ଥାଇପାରେ । ବିଶେଷ କରି 'ଦିବ୍ୟ' ହଷ୍ଟେଲ ଗଲା ପରେ ଏକା ହେଇଯାଇଛି ଭୂମି । ଦେହ ବୋଧେ ଭଲ ରହୁନି । ସେ ଯେତେଥର ତାଙ୍କୁ କିଛି କହିବାକୁ ଚାହିଁଛି, କାମର ତାଡ଼ନାରେ ସେ ଆଡ଼େଇ ଦେଇଛନ୍ତି । ତାଙ୍କ ପକ୍ଷରେ ଠିକ୍ ହେଇନି ନିଶ୍ଚୟ । ତାଙ୍କ ନିଜ ଅଜାଣତରେ ଅପରାଧବୋଧଟିଏ ପଶି ଆସି ଆଖି ଦେଖେଇଲା ସତେକି !

ଲମ୍ବା ଲମ୍ବା ନିଃଶ୍ୱାସ ନେଉଛି ଭୂମି । ଶୋଇଯାଇଛି ଗାଢ଼ ନିଦରେ । ଏତେ ଗଭୀର ନିଦରେ ତ ସେ କେବେ ଶୁଏନି । ସବୁବେଳେ ଫୂର୍ତ୍ତି ଥାଏ - ଅଳସୁଆ ସ୍ୱଭାବ ତା'ର ନୁହେଁ । ନଦୀଟିଏ ଭଳି ସବୁରି ମନପ୍ରାଣକୁ ଛୁଇଁ ଛୁଇଁ ବହିଯାଉଥିବ ଅଥଚ ଆଜି, ରାତିଶେଷର କ୍ଳାନ୍ତମୁଖୀ ଜହ୍ନ ଭଳି କେମିତି ବିବର୍ଣ୍ଣ ଦିଶୁଚି ମୁହଁଟା !

ହଠାତ୍ ନିଜ ଭିତରର ଅହଂମନ୍ୟ ପୌରୁଷଟା ନିଜ ଅପରାଧବୋଧକୁ ଘୋଡ଼େଇବାକୁ ଯାଇ ନିଜକୁ ନିଜେ କୈଫିୟତ ଦେଲା ଯିମିତି, ସେ କ'ଣ ଆଉ କରିଥାନ୍ତେ । ଭୂମି ଯଦି ଶିକ୍ଷିତା ଝିଅ ହୋଇ ନିଜ ଦେହର ଦାୟିତ୍ୱ ନ ନେବ ! ଡାକ୍ତର ବି ତ ଆପଣାର ମଣିଷ । ତାଙ୍କ ସହିତ କନ୍‌ସଲ୍ଟ କରି ପାରିଥାନ୍ତା । ଜାଣୁ ଜାଣୁ ସେ ନିଜ ଶରୀରର ଅବହେଳା କରିଛି ପରୋକ୍ଷରେ ତାଙ୍କୁ କଷ୍ଟ ଦେବ, ଦୋଷ ଦେବ ବୋଲି । ସେଇଥିପାଇଁ ସେ ବିରକ୍ତ ହୁଅନ୍ତି....

ଭୂମିର ଛୋଟ କପାଳ ଉପରୁ ଅଡୁଆତଡୁଆ କେଶକୁ ଆଡ଼େଇ ଟିକିଏ ଆଉଁଶି ଦେଲେ ଦିଗନ୍ତ । ମନକୁ ମନ ସ୍ୱଗତୋକ୍ତି କରି କହିଲେ, ମୋତେ ତମେ ନିଜର ବୋଲି ଭାବନି, ନହେଲେ ଏମିତି ନିଜକୁ କାହିଁକି କଷ୍ଟ ଦିଅନ୍ତ... ଏଣିକି ତମ ଦୁଃଶ୍ଚିନ୍ତାରୁ ଟିକିଏ ଭାଗଦିଅ ହେଲେ... । ସଂଶୟର ଦୋଳିରେ ଝୁଲେ ଦିଗନ୍ତଙ୍କ ମନ । ଭୂମି ଭଲ ଥିଲେ ସେ ନିଶ୍ଚିନ୍ତ, ବିଛଣାରେ ଶୋଇଥିବା ଦେଖିଲେ, ତାଙ୍କ ଭିତରଟା ଥରିଉଠେ - ଅଥୟ ଲାଗେ ସବୁକାମ ବିପର୍ଯ୍ୟସ୍ତ ହୋଇପଡ଼େ । କାହିଁକି ଏମିତି ଲାଗେ ସେ ବି ବୁଝିପାରନ୍ତି ନାହିଁ । ଭୂମିଜା କଡ଼ ଲେଉଟାଇଲା । ସକାଳ ହେଇ ଆସୁଛି... ଏଥର ତା' ନିଦ ଭାଙ୍ଗିବ ।

ନିଦ ଭାଙ୍ଗୁଭାଙ୍ଗୁ ଭୂମଜାର ଆଖି ପ୍ରଥମେ ବିଛଣାରେ ଅଧାଶୁଆ ହେଇ ତା' ମୁହଁକୁ ନିବିଷ୍ଟ ଆଖିରେ ଚାହିଁ ରହିଥିବା ଦିଗନ୍ତଙ୍କ ଉପରେ ପଡ଼ିଲା । ମୁହୂର୍ତ୍ତକ ପାଇଁ ଦୃଷ୍ଟି ତା'ର ସ୍ଥିର ରହିଗଲା । ଆଶ୍ଚର୍ଯ୍ୟ । ଅନେକ ଦିନପରେ... ସେ ଦେଖୁଛି ଦିଗନ୍ତଙ୍କ ଓଠରେ ଲାଗିରହିଛି ନରମ ହସରୁ ପାଖୁଡ଼ାଏ । ଆଶ୍ଚର୍ଯ୍ୟ ଲାଗିଲେ ବି ତାକୁ ଭଲ ଲାଗିଲା । ଖୁବ୍ ଅନ୍ତରଂଗ ମନେହେଲା ମଣିଷଟା - ଏଇ ମଣିଷଟାକୁ ହିଁ ସେ ଖୋଜୁଥିଲା - ଖୁସି ହେଇଗଲା ମନ । କ୍ଳାନ୍ତିର ହାଇ ତୋଳି ପ୍ରଶ୍ନ କଲା । ଏତେ ସକାଳୁ କିମିତି ନିଦଭାଙ୍ଗି ଯାଇଛି ତମର, କୁଆଡ଼େ ଯିବାର ଅଛି ?

ମୁଣ୍ଡ ହଲେଇ ନାହିଁ କଲେ ଦିଗନ୍ତ । ତା'ହେଲେ' ? ପଚାରିଲା ଭୂମି । "ତା'ହେଲେ ଆଉ କ'ଣ... ଏଇମିତି ନିଦ ଭାଙ୍ଗିଗଲା ତ... ଦେଖୁଛି ତମକୁ ।" ଭୂମି ଆଡ଼କୁ କଡ଼ ଲେଉଟେଇ କହିଲେ । ଆଚ୍ଛା ଭୂମି, ତମେ କ'ଣ ଠିକ୍ ଭାବେ ଖିଆପିଆ କରୁନ ? "କାହିଁକି ଏ ପ୍ରଶ୍ନ ?" ଉତ୍ତର ଫେରେଇଲା ଭୂମି । "ତା'ହେଲେ ତମ ସ୍ୱାସ୍ଥ୍ୟର ଏଇ ଦୁରାବସ୍ଥା କାହିଁକି, ନିଜକୁ ଦେଖିଛ ଆଇନାରେ ? ତମକୁ କହିଥିଲି ନା ଡକ୍ଟର ଦାସଙ୍କ ସହିତ ପରାମର୍ଶ କରିବା ପାଇଁ, କରିଛ ?

କିଛି ଉତ୍ତର ନ ଦେଇ ନିରବ ରହିଲା ଭୂମି । ମନେମନେ କହିଲା, ନିଜ ପାଇଁ ମୁଁ କେବେ ବି ଡାକ୍ତର ଡାକିବିନି । ଦୁନିଆ ଲୋକଙ୍କ ପାଇଁ ତମର ସମୟ ଅଛି, ହେଲେ ମୋ

ପାଇଁ ... ମୁଁ ସେମିତି ଭଲ ହେବି । ଅଭିମାନର ତାତି ଓହ୍ଲେଇ ଆସିଲା ମୁହଁକୁ, ଓଠ ଚିପି ଉଠିଗଲା ସେ କିଚେନ୍ ଆଡ଼କୁ - ଏଥର କଫି ଖାଇବେ ଦିଗନ୍ତ, ନହେଲେ ଉଠିବେନି ବିଛଣାରୁ ।

କିଛି ସମୟ ପରେ ... ବାମ୍ଫୁଆଳୀ କଫି କପ୍ ଆଣି ଡାଇନିଂ ଉପରେ ଥୋଇ ଡାକିଲା 'ତୁମ କଫି ନିଅ' । "ତୁମେ କିନ୍ତୁ ମୋ ଉପରେ ଅବିଚାର କରିଛ ଭୂମି - କଫି କପ୍ ଉଠେଇ ଦିଗନ୍ତ କହିଲେ ।" ତୁମେ ଜାଣ ମୁଁ କେତେ ବ୍ୟସ୍ତ, ଅଥଚ ତମେ ନିଜ ଉପରେ ଅତ୍ୟାଚାର କରି ମୋତେ ପରୋକ୍ଷରେ ଶାସ୍ତି ଦେବ ବୋଲି ଭାବିଛ ତ ? ଡକ୍ଟର ଦାସଙ୍କ ନମ୍ବର ଡାଏଲ କରୁକରୁ କହିଲେ । ଭୂମି ଆଶ୍ଚର୍ଯ୍ୟ ହେଇ ଚାହିଁଥିଲା ଦିଗନ୍ତଙ୍କ ମୁହଁର ଭାଷା ପଢ଼ିବାକୁ । ସତରେ ଆଶ୍ଚର୍ଯ୍ୟ ! ବୁଝିବି ବୁଝି ହୁଏନା । କେତେ ଆପଣାର ଅଥଚ କେତେ ଦୂର ବି । "ଠିକ୍ ଦଶଟା ବେଳେ ଡକ୍ଟର ଦାସ ଆସିବେ ଘରକୁ, ତମେ ପ୍ରସ୍ତୁତ ଥିବ ।" କହି ଉଠିଗଲେ ଦିଗନ୍ତ ।

ଡକ୍ଟର ଦାସ ଠିକ୍ ସମୟରେ ଆସି ପହଞ୍ଚିଥିଲେ କିନ୍ତୁ ଦିଗନ୍ତ ଗୋଟିଏ ଜରୁରୀ ଫୋନ୍ ପାଇ ଅଫିସ ଚାଲି ଯାଇଥିଲେ । ଡକ୍ଟର ଦାସ ଟିକିନିଖି ପ୍ରଶ୍ନ କରି ଭୂମିକୁ ପରୀକ୍ଷା କଲେ, କହିଲେ, କିଛି ହତାଶ ହେବାର ନାହିଁ । ଏଇ ଜ୍ୱର, ବାନ୍ତି, ମୁଣ୍ଡ ବୁଲେଇହେବା ସାଧାରଣ କଥା । ଖିଆପିଆରେ ଅବହେଳା କରୁଛ କି ? ନା ବେଶି ଭାବୁଛ ପୁଅ କଥା ?

ଭୂମି ଉତ୍ତର ଦେଲା - ସବୁ ତ ଠିକ୍ ଚାଲିଛି ଅଙ୍କଲ... ତଥାପି କ୍ଲାନ୍ତି ଯାଉନି ।

"ଆମେ ତା'ର କାରଣ ଜାଣିବା ପାଇଁ କିଛି ପାଥୋଲଜିକାଲ ଟେଷ୍ଟ କରିନେବା, ରକ୍ତ ପରୀକ୍ଷା କରିବା ପାଇଁ ତୁମକୁ କାଲି ମୋ କ୍ଲିନିକ୍‌କୁ ଯିବାକୁ ପଡ଼ିବ । ତେବେ ଦିଗନ୍ତଙ୍କ ସହିତ କିଛି କଥା ଥିଲା ମୁଁ ଫୋନ୍‌ରେ କରିନେବି । କାମର ଚାପ ତ ସବୁବେଳେ ରହିବ ମା', ହେଲେ ନିଜ ପାଇଁ କିଛି ସମୟ ଆମେ ହାତରେ ରଖିବା ଉଚିତ - କହିଦେବ ଦିଗନ୍ତଙ୍କୁ ।" ଗାଡ଼ିରେ ବସିଲେ ଡାକ୍ତର ଦାସ ।

ତା' ପରଦିନ ସକାଳୁ ଦିଗନ୍ତ ନିଜେ ଭୂମିକାକୁ ନେଇ ଡକ୍ଟର ଦାସଙ୍କ କ୍ଲିନିକ୍‌କୁ ଯାଇଥିଲେ ଯାହା ପରୀକ୍ଷା ହେବା କଥା ହେଲା - ବ୍ଲଡ୍ ଦେଇ ଆସିଲା ଭୂମି । ରିପୋର୍ଟ ଦିନେ ଦି'ଦିନ ପରେ ନେଇଯିବାକୁ କହିଥିଲେ ଡକ୍ଟର ଦାସ । ଫେରିଲା ବେଳେ ନିଜ ପ୍ରେସରଟା ବି ମାପି ନେଇଥିଲେ ଦିଗନ୍ତ । ଡକ୍ଟର ଦାସ ଚିନ୍ତା ପ୍ରକଟ କରି କହିଥିଲେ– ତୁମେ ନିଜକୁ ଟେନସନ୍ ଫ୍ରି କର ଦିଗନ୍ତ - ଏଇ ବୟସରୁ ପ୍ରେସର ବଢ଼ିବା ଭଲ ଲକ୍ଷଣ ନୁହଁ । ଠିକ୍ ଅଛି ଔଷଧ ଖାଅ - ବ୍ୟସ୍ତ ହେବାର କିଛି ନାହିଁ ।

× × ×

ଆଗରେ ପୂଜା । ସବୁଠି ମହାମାୟାଙ୍କ ଆବାହନ ପାଇଁ ପ୍ରସ୍ତୁତି । ଭୂମିକା ନିଜ ଭିତରେ ଖୁସି ଗୋଟେଇବାର ପ୍ରୟାସ କରୁଥିଲା । ଆସନ୍ତା ସପ୍ତାହରେ ଦିବ୍ୟ ଆସିବ କେତେ ବରାଦ ଅଛି ତା'ର । ଅଥଚ ତାକୁ ଫୂର୍ତ୍ତି ହିଁ ଲାଗୁନି କୌଣସି କାମରେ । ଆଉ ବିଦିଶା – ତା' ସାନ

ନଣନ୍ଦ, ସବୁ ପୂଜାଛୁଟିରେ ଆସେ ସମୀରଙ୍କୁ ନେଇ । ଘର ଉଠିବାପଡ଼ିବା କଥା, ଉଲ୍ଲାସରେ । କିନ୍ତୁ ତା' ମନ ଉଣା ହୋଇଯାଉଥିଲା ନିଜ କଥା ଭାବିଲା ବେଳକୁ - ମନେ ପଡ଼ିଗଲା ଡକ୍ଟର ଅଙ୍କଲ କହିଥିଲେ ମେଡ଼ିକାଲ ରିପୋର୍ଟ ଗୁଡ଼ାକ ଆସି ନେଇଯିବାକୁ । ଭୁଲି ଯାଇଛନ୍ତି ଦିଗନ୍ତ ନିଶ୍ଚୟ । ତା'ର ହିଁ ମନେ ପକେଇବା କଥା... ହଠାତ୍ ଲ୍ୟାଣ୍ଡଫୋନ୍‌ଟା ବାଜିଉଠିଲା - ରିସିଭର ଉଠେଇଲା ଭୂମି... ସେ ପାଖରୁ ଦିଗନ୍ତଙ୍କ କଣ୍ଠସ୍ୱର... ଗୋଟାଏ ଜରୁରୀ କଥା ଭୂମି... ଡକ୍ଟର ଦାସ ପୁଣିଥରେ ତମର ବ୍ଲଡ୍ ନେବେ ଟେଷ୍ଟ ପାଇଁ - ପ୍ରସ୍ତୁତ ଥିବ, ମୁଁ ଗାଡ଼ି ପଠଉଛି... ଥୋଇଦେଲେ ଫୋନ୍ ।

... ଦି'ଦିନ ତଳେ ତ ସେ ବ୍ଲଡ୍ ଦେଇ ଆସିଥିଲା । ପୁଣିଥରେ କାହିଁକି ନେବେ... ? ? ଭୂମି ଏଥର ଗୋଲକଧନ୍ଦାରେ ପଶେ, ଦେହମନର କ୍ଳାନ୍ତିକୁ ପଛରେ ପକାଇ ଦିଗନ୍ତଙ୍କ ମାର୍ଶାଲ ଅଡ଼ର ମାନିବାକୁ ପ୍ରସ୍ତୁତ ହୁଏ - ଅଦ୍ଭୁତ ମଣିଷ ଏ ତ !

ତାର ଦି'ଦିନ ପରେ ଦିନେ ସଂଧ୍ୟାରେ ହଠାତ୍ ବଡ଼ଭାଇ ଭାଉଜ ଆସି ଘରେ ହାଜିର । ଟିକିଏ ଚକିତ ଲାଗିଲା ଭୂମିକୁ । ଖବର ଅନ୍ତର ନାହିଁ - ଏମିତି ତ ଭାଇ କେବେ ଆସନ୍ତି ନାହିଁ । ଅବଶ୍ୟ ଆଗରେ ପୂଜା ଅଛି । ତେବେ ଖୁସି ଲାଗିଲା - ଭାଉଜ କହିଲେ ଏଥରକ ପୂଜାରେ ଝୁମା ଜ୍ୱାଇଁଙ୍କ ସାଂଗରେ ଜୟପୁର ଯିବ... ମୁଁ କହିଲି ଚାଲ ଭୂମି ପାଖରେ କିଛିଦିନ ରହି ଆସିବା, ବାସ୍ । ଦିଗନ୍ତ ବି କହିଲେ... ତମେ ଆସିଲେ ଭୂମି ଟିକିଏ ବିଶ୍ରାମ ପାଇବ । ଭୂମି ମନରେ ଖଟକା ଲାଗିଲା । ମୁହୂର୍ତ୍ତେ... ଏତେ କଥା କହିଲେ ଦିଗନ୍ତ... ଏତେ ଭାବୁଛନ୍ତି ତା' ପାଇଁ... କ'ଣ ହେଇଛି କି ତାର !! ବରଂ ଦିଗନ୍ତଙ୍କର ପ୍ରେସରଟା କିଛିଦିନ ହେଲା କଣ୍ଟ୍ରୋଲ ହେଉନି - ଚିନ୍ତାର ବିଷୟ । ମୁହଁ ଗମ୍ଭୀର ଦିଶୁଛି, ଅନ୍ୟମନସ୍କ ହୋଇଯାଇଛନ୍ତି କିମିତି । ପୁଣି କ'ଣ ସମସ୍ୟା ହେଲାଣି ।

ଦିନେ ଡାଇନିଂ ଟେବୁଲ୍‌ରେ ଖାଉ ଖାଉ ଅନେକ କଥା ପଡ଼ିଲା । ସେଦିନ ଭାଉଜ ତା' ପସନ୍ଦର ଚାଇନିଜ୍ ଡିସ୍ ପସ୍ତୁତ କରିଥିଲେ । ଆଗଭଳି ଯେମିତି ସେ ଖାଇ ପାରୁଥିଲା, ସେଭଳି ଖାଇପାରିଲାନି ସତ, ହେଲେ ଖାଲି ଖଟା ତୃପ୍ତିକର ଥିଲା । ଖାଇସାରି ଉଠିଗଲା ବେଳକୁ ତା' ହାତକୁ ସନ୍ଦେଶ ପ୍ଲେଟ୍‌କୁ ବଢ଼େଇ ଦେଇ ଦିଗନ୍ତ ଅଦ୍ଭୁତ ପ୍ରଶ୍ନଟିଏ ପଚାରିଲେ– "ଆଚ୍ଛା ଭୂମି, ମୋତେ ଛାଡ଼ି କିଛିଦିନ ତମେ ଏକା ରହିପାରିବ ?"

ସାଂଗେ ସାଂଗେ ଉତ୍ତର ଫେରେଇ ଭୂମି ପ୍ରଶ୍ନ କଲା– "ତମେ କୁଆଡ଼େ ଯିବକି ? ତା'ଛଡ଼ା ମୁଁ କ'ଣ କେବେ ତମକୁ ଛାଡ଼ି ରହିଛି, ଦିବ୍ୟ ସିନା ପଢ଼ିବାକୁ ଗଲା ବୋଲି ଛାଡ଼ିଲି ବାଧ ହୋଇ... ତେବେ ଏ ପ୍ରଶ୍ନ କାହିଁକି ଉଠୁଛି ?"

"କିଛି କାରଣ ନାହିଁ, ଏମିତି ପଚାରୁ ପଚାରୁ ହିଁ ପଚାରିଦେଲି । ସବୁ ପ୍ରକାର ସ୍ଥିତି ପାଇଁ ମଣିଷକୁ ତ ପ୍ରସ୍ତୁତ ରହିବାକୁ ପଡ଼େ - ସେଇ କଥା ପଚାରୁଥିଲି ।"

"ମାନେ, ବୁଝିପାରିଲିନି କିଛି, କାହିଁକି ଆସିବ ସେଇ ସ୍ଥିତି ? ବିଚିତ୍ର ମଣିଷ ତୁମେ

ସତରେ । ଏମିତି ଆଜେବାଜେ କଥା ସବୁ କାହିଁକି ଯେ ପଶେ ତୁମ ମୁଣ୍ଡରେ... ମୋତେ ଶୁଣିବାକୁ ଭଲ ଲାଗେନା ମୋଟେ – ମୁହଁ ଫୁଲେଇ କହିଲା ଭୂମି ।

ଭାଉଜ କିଛି କଥାକୁ ସହଜ କରିବାକୁ ଯାଇ କହିଲେ... ଏବେବି ତମ ମୁହଁ ସୁନ୍ଦର ଦିଶେ, ମୁହଁ ଫୁଲେଇଲେ । ଭୂମିକୁ ଲାଜ ଲାଗିଲା ଭାଉଜଙ୍କ ଟିପ୍ପଣୀ ଶୁଣି । ଏଇ ଭାଉଜଙ୍କୁ ସେ ପିଲାଟି ଦିନରୁ ଦେଖି ଆସୁଛି । ବୋଉ ଚାଲିଗଲା ପରେ ସେ ତାଙ୍କୁ ବୋଉର ଆସନଟା ଦେଇ ଦେଇଛି । ଭଲ-ମନ୍ଦ, ସୁଖ-ଦୁଃଖରେ ଏଇ ଭାଉଜଙ୍କ କାନ୍ଧରେ ଆଉଜି ପଡ଼ିଲେ ତାକୁ ଶାନ୍ତି ଲାଗେ ।

ତାକୁ ଅନ୍ୟମନସ୍କ ହେବା ଦେଖି ଭାଉଜ କହିଲେ କ'ଣ ଏତେ ଭାବୁଛ ଭୂମି... ? ମୁଁ କ'ଣ କହୁଥିଲି କି, ତୁମେ ଏଇ ପୂଜା ପରେ ଆମ ସଂଗେ ଚାଲ, ମୁମ୍ବାଇ ଯିବା ତମ ଭାଇ କହୁଥିଲେ, କୁଆଡ଼େ ତମେ ଥରେ କହୁଥିଲ ଅଜନ୍ତା-ଏଲୋରା ଦେଖିବ ତମର ଇଚ୍ଛା ଥିଲା । ଏଇଥର ସେଇ ପ୍ରୋଗ୍ରାମ କରିବା – ତମେ 'ହଁ' କଲେ ଫ୍ଲାଇଟ୍ ଟିକେଟ୍ ବୁକ୍ କରିବେ ଭାଇ... ।

କିଛି ସମୟ ନିରବ ରହି ଭୂମି କହିଲା– ଆଉ କ'ଣ ବୁଲିବୁଲି ଦେଖିପାରିବି ଭାଉଜ, ଭଲ ଲାଗୁନି ଦେହଟା ସତରେ । ତା' ଛଡ଼ା ଦିବ୍ୟ ତ ଥିବ ନା, ତା'ର ସ୍କୁଲ ଅଛି । "ଆମେ ଛୁଟି ପରେ ଯିବା, ଦିବ୍ୟ ହଷ୍ଟେଲ ଯାଇ ସାରିଥିବ ।" ମନା କରନି ପ୍ଲିଜ୍ - ଆହୁରି ତ ସମୟ ଅଛି ହାତରେ, ତୁମେ ସୁସ୍ଥ ହୋଇ ଯାଇଥିବ ନିଶ୍ଚୟ ।

ମହାସପ୍ତମୀ ସକାଳୁ ସକାଳୁ ବିଦିଶା ଓ ସମୀର ଦିବ୍ୟକୁ ସାଥିରେ ନେଇଁ ପହଞ୍ଚିଗଲେ । ଭୂମିର ପାଦ ତଳେ ପଡୁନଥିଲା ଖୁସିରେ । ସତେ ଯେମିତି ଜୀବନଟା ମହୋତ୍ସବମୟ ପାଲଟିଗଲା । ଅଥଚ ଦିଗନ୍ତ... ଏତେ ମହୋତ୍ସବ ଭିତରେ ନିଜକୁ ଏକା ନିଃସଙ୍ଗ ମନେ କରୁଥିଲେ– ଭୂମିକାର ସ୍ୱାସ୍ଥ୍ୟ ନେଇ ଡକ୍ଟର ଦାସଙ୍କ ସଂଦେହ ତାଙ୍କୁ ଚିନ୍ତାର ଆବର୍ତ୍ତ ଭିତରେ ପୂରେଇ ଦେଇଥିଲା । ଅଜଣା ଆଶଙ୍କାରେ ଥରି ଉଠୁଛି ଛାତି ଭିତରଟା । ବାୟୋପ୍ସି ରିପୋର୍ଟକୁ ଯାହା ଅପେକ୍ଷା । ତାଙ୍କୁ ଅସ୍ଥିର ଅଥୟ ଲାଗିଲା ବୋଲି ତ ବଡ଼ଭାଇ ଆଉ ଦୀପାଭାଉଜଙ୍କୁ ଡକେଇ ଆଣିଛନ୍ତି । ଅନେକଥର ଭୂମି କହିଲାଣି ରିପୋର୍ଟଗୁଡ଼ାକ ଆଣିବା ପାଇଁ - ସେ ଖାଲି ବାହାନା କରି ସମୟ ନେଉଛନ୍ତି । ଭୂମି ମୁହଁକୁ ଚାହିଁଲେ ହିଁ ତାଙ୍କ ଛାତି ଭିତରେ ଯେମିତି ସହସ୍ର କେନ୍ଦରା ବାଜି ଉଠୁଛି କରୁଣ ସ୍ୱରରେ ।

ଏଇମାତ୍ର ପନ୍ଦରଟା ଦିନର କଥା... ତାଙ୍କ ଜୀବନର ସବୁକିଛି ଓଲଟପାଲଟ ହୋଇଯିବ, ସେ କଳ୍ପନା ବି କରିପାରି ନଥିଲେ । ଈଶ୍ୱରଙ୍କ ଏ କି ପରୀକ୍ଷା ତାଙ୍କ ପାଇଁ !! ଭୂମିକାକୁ ବାଦ୍ ଦେଇ ସେ ଯେ ବଂଚିପାରିବେ, ଭୂମି ନ ଥାଇ ସେ ଅଛନ୍ତି – କଳ୍ପନାତୀତ ତାଙ୍କ ପାଇଁ । ଏ ସଂସାର ତ ଭୂମିକୁ ନେଇଁ – ଅଥଚ ଭୂମି ନାହିଁ, ଘର ଅଛି ତା' କିମିତି ସମ୍ଭବ ହେବ ! ହେ ଭଗବାନ, ସେ କ'ଣ କରିବେ... ତାଙ୍କ ଆଖିକୁ ସପ୍ତାହେ ହେଇଯିବ ନିଦ ନାହିଁ । ତାଙ୍କର ଭୟ

ହେଉଛି, ସେ ଆଖିବୁଜି ଶୋଇପଡ଼ିଲେ । କାଳେ ନିଦ ଭାଙ୍ଗିଲା ବେଳକୁ ଯଦି ଭୂମି ନ ଥିବ... ଏଇ ଅନିଦ୍ରା ଉଦ୍‌ବେଗ ଆଉ ଭୟ ତାଙ୍କୁ କାବୁ କରି ରଖିଛି । ନିଜକୁ ବିପର୍ଯ୍ୟସ୍ତ ମନେ କରୁଛନ୍ତି । ଦିଗନ୍ତ କ୍ରମଶଃ ବିଷାଦ ଭିତରକୁ ପଶି ଯାଉଥିଲେ ।

... ଏଇ ଚିନ୍ତାର ତାଡ଼ନାରେ ବିଜୟାଦଶମୀ ସକାଳୁ କଫି ଖାଉ ଖାଉ ହଠାତ୍ ଅଚେତ ହୋଇପଡ଼ିଲେ ଦିଗନ୍ତ । ମୁହୂର୍ତ୍ତକରେ କଫି ଆସରର ଉଷ୍ଣତା ବରଫ ପାଲଟି ଗଲା । ମୁହୂର୍ତ୍ତେ ବିଳମ୍ବ ନ କରି ଡାକ୍ତର ଦାସଙ୍କ ପରାମର୍ଶରେ ତାଙ୍କୁ ହସ୍‌ପିଟାଲକୁ ସିଫ୍‌ଟ କରିବାକୁ ପଡ଼ିଲା । ତିନିଦିନ ଆଇ.ସି.ୟୁ.ରେ ରହିଲା ପରେ ଘରକୁ ଫେରିଲେ ଦିଗନ୍ତ । ହେଲେ ଭୂମି ବ୍ୟସ୍ତବିବ୍ରତ ହେବା ଫଳରେ ଅସୁସ୍ଥ ହୋଇ ବିଛଣା ଧରିଲା - ଡକ୍ଟର ଦାସ ଜଣେଇଦେଲେ - "ଆଉ ବିଳମ୍ବ କରିବା ଉଚିତ ହେବନି, ଭୂମିକୁ ମୁମ୍ବାଇ ନେଇଯିବା ଉଚିତ ହେବ । ସମୟ ଯେତେ ଆଗେଇବ ଆମ ହାତରୁ ଚିକିତ୍ସାର ସୁଯୋଗ ଖସିଯିବ ଦିଗନ୍ତ... ।" ତୁମେ ନିଜେ ଶକ୍ତ ହେବାକୁ ପଡ଼ିବ । ଭାଙ୍ଗି ପଡ଼ିଲେ ଚଳିବନି । ତା'ଛଡ଼ା ଚିକିତ୍ସାବିଜ୍ଞାନ ଏତେ ଆଗେଇଲାଣି ଯେ, ହତାଶ ହେବାର କିଛି କାରଣ ନାହିଁ । ବରଂ ତୁମେ ନିଜେ ଗୋଟାଏ ବଡ଼ ବିପଦରୁ ରକ୍ଷା ପାଇଯାଇଛ । ବ୍ରେନ୍ ହାମ୍‌ରେଜ୍ ହେବା କିଛି ଅସମ୍ଭବ ନଥିଲା । ଛାଡ଼ ! ଏଣିକି ଆମକୁ ଭୂମି ପାଇଁ ଚିନ୍ତା କରିବାକୁ ପଡ଼ିବ । ରିପୋର୍ଟ ସବୁ ଆସିଯାଇଛି । ମୋର ଆଶଙ୍କା ସତ ହେଇଛି । ତଥାପି... ଆମେ ଆଶା ରଖିବା ।

ଦିଗନ୍ତଙ୍କ କାନକୁ କିଛି ଶୁଭୁନଥିଲା - ଆଖି ଆଗରେ ଅଂଧାର ଚହଟି ଯାଉଥିଲା । ପାଖରେ ଥାଇ ମନୁଭାଇ ଓ ସମୀର ଆଶାର ବାଣୀ ଶୁଣାଉଥିଲେ, ବୁଝାଉଥିଲେ । ଭୂମି ଶୁଣିଲେ ଭାଙ୍ଗି ପଡ଼ିବ ବୋଲି, ସମସ୍ତଙ୍କୁ ରୀତିମତ ଅଭିନୟ କରିବାକୁ ପଡୁଥିଲା । ଅତଏବ ଭୂମି ଦିଗନ୍ତଙ୍କ ପାଇଁ ସିନା ଚିନ୍ତାରେ ପଡ଼ିଥିଲା ହେଲେ ନିଜ ସଂପର୍କରେ ଅଂଧାର ଭିତରେ ଥିଲା । ନିଜ ସ୍ୱାସ୍ଥ୍ୟପାଇଁ ଛୁଟିରେ ଥିଲେ ଦିଗନ୍ତ । ଭୂମି ଭାବୁଥିଲା, ଦିଗନ୍ତଙ୍କ ପାଇଁ ନିହାତି ଜଳବାୟୁ ଓ ସ୍ଥାନ ପରିବର୍ତ୍ତନର ଆବଶ୍ୟକତା ଅଛି । ଆଉକିଛି ଅଧିକା ପରୀକ୍ଷାନିରୀକ୍ଷାର ପ୍ରୟୋଜନ ବି ରହିଛି । ତାଙ୍କୁ ନେଇ କିଛିଦିନ ମୁମ୍ବାଇ ଯିବା ଉଚିତ ହେବ । ତାଙ୍କୁ ଟେନ୍‌ସନ୍‌ରୁ ଫ୍ରି ନ କଲେ ତାଙ୍କ ପରିସ୍ଥିତି ଆହୁରି ଖରାପ ହେବ । ମୁମ୍ବାଇ ଯିବାକୁ ପଡ଼ିବ ।

ଭୂମି ଭାବିଥିଲା ଦିବ୍ୟକୁ ନେଇଯିବ ସାଥିରେ ! ଖୁସି ହୁଅନ୍ତା ଦିବ୍ୟ, ଏଲୋରା-ଅଜନ୍ତା କଥା ସେ ଶୁଣିଛି - ଦେଖିବାର ଇଚ୍ଛା ଥିବ, ଜୁହୁ ଦେଖିବ । ହେଲେ ଦିଗନ୍ତଙ୍କ ଦେହକୁ ନେଇ ତା'ର ଚିନ୍ତା । ଭାଉଜ ବି ମନ କରୁଛନ୍ତି । ଗ୍ରୀଷ୍ମଛୁଟିରେ ପଛେ ପୁଣିଥରେ ଯିବା ତମେ ଆଉ ଦିଗନ୍ତ ଦୁହେଁ ସୁସ୍ଥ ହୋଇଯାଇଥିବ ସେତେବେଳକୁ । ଠିକ୍‌କଥା ବି ।

ସେଇ ରାତିରେ ମନୁଭାଇ, ସମୀର ଓ ବିଦିଶାଙ୍କ ସହିତ ଏକାନ୍ତରେ ଆଲୋଚନା କଲେ ଦିଗନ୍ତ । ଦିବ୍ୟର ଦାୟିତ୍ୱ ବିଦିଶା ନେବ ଭୂମି ହସପିଟାଲରୁ ଫେରିବାଯାଏ । ମନୁଭାଇ ଭାଉଜ ମୁମ୍ବାଇ ଯିବେ ଭୂମି ସାଥିରେ । ପରିସ୍ଥିତି ଦେଖି ଦିଗନ୍ତ ସେଠି ରହିବେ କି ଫେରିବେ ପରେ ନିର୍ଣ୍ଣୟ କରାଯିବ ।

ଦିଗନ୍ତ କିନ୍ତୁ ନିଜ ଭାବନାକୁ ବାହାରେ ପ୍ରକାଶ କରିପାରୁ ନଥିଲେ । ତାଙ୍କର ମନେ ହେଉଥିଲା ଭୂମିର ହାତଗଢ଼ା ସଜଡ଼ା ସଂସାର ଭାଙ୍ଗିଯାଉଛି । ସତରେ କ'ଣ ଭୂମି ଫେରିବ !! ଅଫୁରନ୍ତ ଉଲ୍ଲାସରେ ବହିଯାଉଥିବା ନଦୀ କେମିତି ଏମିତି ବାଲୁଚର ପାଲଟି ଯାଉଛି ! ନିଜ ଭିତରେ ସେ ଶୂନ୍ୟ ହୋଇଯାଉଛନ୍ତି କ୍ରମଶଃ ।

ନିଛାଟିଆ ଛାତ ଉପରେ ବସି ଦିଗନ୍ତ ଭାବୁଥିଲେ; ଏତେଦିନ ଧରି କେବଳ ନିଜ ପ୍ରତିଷ୍ଠା, ନିଜ ପରିଚୟ, ନିଜ ପାଦତଳର ମାଟିକୁ ସଜାଡ଼ି ଚାଲିଥିଲେ ନିହାତି ସ୍ୱାର୍ଥପର ଭାବେ । ଘର ଭିତରେ ସମର୍ପିତା ପତ୍ନୀ, ତା'ର ଇଚ୍ଛା ଅଭିଳାଷ, ସୁଖଦୁଃଖର ଖବର ରଖିବାକୁ ସେ ଭୁଲି ଯାଇଛନ୍ତି ସତରେ । ନିଜ ଅହଂପଣକୁ ସୁରକ୍ଷା ଦେଉ ଦେଉ କେତେବେଳେ ଯେ ସମୟ ହାତଛଡ଼ା ହୋଇଗଲା, ସେ ଜାଣି ପାରିଲେନି । ଯୋଉ ଭୂମି ତାଙ୍କ ପାଇଁ ଦିନରାତି ଧାଇଁଛି ତାକୁ ସେ କ'ଣ ଦେଇଛନ୍ତି, କିଛି ରୁକ୍ଷ ବ୍ୟବହାର କଠୋର ଶବ୍ଦ ଶୁଣେଇବା ବ୍ୟତୀତ । ସେ ଚାହାଁନ୍ତି, ଅନ୍ତରର ସହିତ, ଭୂମି ଖୁସିଥାଉ, ଭଲଥାଉ, ଫୁଲ ହୋଇ ଫୁଟିଥାଉ ନିତିଦିନ, ଅଥଚ କିଛି ତା'ର ଅସୁବିଧା ହେଲେ, ସେ ସହ୍ୟ କରି ପାରନ୍ତିନି - ଗୋଟାଏ ଅଜଣା ଭୟ ତାଙ୍କୁ ମାଡ଼ିବସେ - କାହିଁକି କେଜାଣି ସେ ପ୍ରତିକ୍ରିୟାଶୀଳ ହୋଇ ଉଠନ୍ତି ନିଜକୁ ସମ୍ଭାଳି ନ ପାରି । ଭୂମି କଷ୍ଟପାଏ - ବେଳେବେଳେ ସେ ବୁଝିବି ପାରନ୍ତି । ତେବେ ସେଇଟା ତାଙ୍କର ପୌରୁଷ ଅଧିକାରପଣ ଭିତରେ ଯାଏ । ଏବେ କିନ୍ତୁ ସେ ଜାଣିସାରିଲେଣି, ଭୂମିକୁ ସେ ବେଶୀଦିନ ଅଟକେଇ ରଖିପାରିବେନି, ଯିଏ ଯେତେ ଆଶ୍ୱାସନା ଦେଲେ ବି..., ଏକଥା ଭାବିଲା ବେଳକୁ ତାଙ୍କ ଛାତି ଭିତରେ କିଏ ଯେମିତି ଛୁରିରେ ଖେଞ୍ଚି ପକାଇଲା । ଏବଂ ଦିଗନ୍ତ ପିଲାଙ୍କ ଭଳି କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ । ଆକାଶ ଆଉ ନିଶୂନତା ବ୍ୟତୀତ ଆଉ କେହି ନଥିଲେ ତାଙ୍କ ପାଖରେ ବୋଧ ଦେବାକୁ । ବଡ଼ ଅସ୍ଥିର ... ବଡ଼ ଅସ୍ଥିର ଲାଗୁଥିଲା ତାଙ୍କୁ । କିଛି ସମୟ ପରେ ନିଜକୁ ପ୍ରକୃତିସ୍ଥ କଲେ । ଭାବିଲେ, ଭୂମିପାଇଁ ତାଙ୍କର କିଛି ଦାୟିତ୍ୱ ଅଛି... ତାକୁ ସେମିତି ଛାଡ଼ିପାରିବେନି ଦେଖୁ ଦେଖୁ । ତାକୁ ମୁମ୍ବାଇ ନେବେ - ସବୁଠୁ ଭଲ ଚିକିତ୍ସା ଦେବେ । ଭୂମିଜା ଏବେବି ବିଭ୍ରମ ଭିତରେ ଅଛି । ସବୁକଥା ଜାଣିଲେ ତା'ର ପ୍ରତିକ୍ରିୟା କିଭଳି ହେବ କେଜାଣି । ସିଧାସଳଖ ତା' ମୁହଁକୁ ଚାହିଁଲା ବେଳକୁ ମାଡ଼ିପଡୁଛି... ପାରୁପର୍ଯ୍ୟନ୍ତ ନିଜକୁ ଆଡ଼େଇ ରଖିଛନ୍ତି । ବିଦିଶା ଏକଥା ଠିକ୍ ଲକ୍ଷ୍ୟ କରିଛି । ଦୀପା ଭାଉଜଙ୍କୁ କହୁଥିଲା– "ଭାଇ କିମିତି ନିରବ ହେଇଯାଇଛନ୍ତି ନା ଭାଉଜ - ସବୁତକ ଖୁସି କିଏ ଯେମିତି ଲୁଟି ନେଇଛି ତାଙ୍କ ଭିତରୁ ।" ସତରେ ତ ଭୂମି ତାଙ୍କର ଦୁର୍ବଳତା - ତାକୁ ସେ ଅମ୍ଲାନ ଅକ୍ଷତ ଦେଖିବାକୁ ଚାହାଁନ୍ତି । ଈଶ୍ୱର କିନ୍ତୁ ନିଷ୍ଠୁର । କେତେ ମିଛର ବାହାନା ନେବେ । ବାସ୍ତବତାର ଚାବୁକ୍ ଯେ ଅସହ୍ୟ ତାଙ୍କ ପାଇଁ । ଭାବିଲା ବେଳକୁ ସବୁ ମିଛ, ଶୂନ୍ୟ ମନେ ହେଲା ସଂସାରଟା ।

ଏଣେ ମନୁଭାଇଙ୍କ ଆଦେଶ, ସମସ୍ତେ ସ୍ୱାଭାବିକ ହୁଅ । ସ୍ୱାଭାବିକ ବ୍ୟବହାର କର ଭୂମି ସହିତ । କିଛି ହେଇନି ତା'ର । ଖୁସିର ମାହୋଲ ଭିତରେ ମୁଁ ତାକୁ ମୁମ୍ବାଇ ନେବି ଆଉ

ସେ ଫେରିଆସିବ ସୁସ୍ଥ ହୋଇ । ଆଉ ମାତ୍ର ଦିନଚାରିଟା ରହିଲା ଯିବାପାଇଁ । ... ରାତିରେ ସେଦିନ ଭୂମି ଖୁବ୍ ବ୍ୟସ୍ତ ହୋଇ ପଚାରିଲା– ତମେ ଏମିତି ଗୁମ୍‌ସୁମ୍ କାହିଁକି, କ'ଣ ଆଉ ଭାବୁଛ ଯେ ? ମୁଁ ତ ଠିକ୍ ଅଛି ଏବେ । ଦିବ୍ୟ ଅଛି, ସମସ୍ତେ ଅଛନ୍ତି ଘରେ, ଅଥଚ ତୁମ ପ୍ରେସର୍‌ଟା କମୁନି, ନରମାଲ୍ ହେଉନି । ଅବଶ୍ୟ ତମେ ଖୁସିରେ ଏତେ ସାମିଲ ହୁଅନା - ଅଫିସ୍ ଭଲ ତ ତୁମେ ଭଲ । ତଥାପି କ'ଣ ଭାବୁଛ ନିଶ୍ଚୟ ... ଦିବ୍ୟ ଯାଉନି ବୋଲି ମନ କଷ୍ଟ ହେଉଛି ? ମୋର ବି ହେଉଛି ଯେ । ହେଲେ ପରିସ୍ଥିତିର ଚାପ... ମିଛରେ ହଇରାଣ ହେବ ପିଲାଟା ଆମ ପାଇଁ ... ନା କ'ଣ କହୁଛ... । ଭୂମିର କଥା ଶୁଣି ହସି ପକେଇଲେ ଦିଗନ୍ତ ନିଜକୁ ସହଜ କରିବା ପାଇଁ... । କହିଲେ ମୁଁ କିଛି ଭାବୁନି, ବିଶ୍ୱାସ କର । ଦିବ୍ୟ ତ ଖୁସିରେ ରହିବ ବିଦିଶା ପାଖରେ । ତେବେ ଆଗରେ କିଛି ସମସ୍ୟା ଅଛି ତ, ମାନେ ଏଇ ଯିବା ଆସିବା, ସୁବିଧା ଅସୁବିଧା ଇତ୍ୟାଦି । ମୋ' ଉପରେ ଦାୟିତ୍ୱ ରହିଲେ ମୋର ଟିକିଏ ଟେନ୍‌ସନ୍ ଥାଏ... ତମେ ଜାଣ । ତେବେ ସେ ସବୁଚିନ୍ତା ଛାଡ଼ । ରାତି ବେଶି ହେଲାଣି । ତମେ କ୍ଳାନ୍ତ ବି ଦିଶୁଛ - ଶୋଇପଡ଼ । ସକାଳ କଥା ସକାଳକୁ । ଆଲୁଅ ଲିଭେଇ ଦିଅନ୍ତି ଦିଗନ୍ତ, ଆଗକୁ କଥା ନ ବଢ଼େଇ ।

ଯିବା ଦିନ ଆସିଲା । ମନ ଯଦିଓ ଉଲ୍ଲାସରେ ଉଚ୍ଛୁଳୁନଥିଲା, ତଥାପି ସମସ୍ତଙ୍କ ଶୁଭକାମନା ସାଥିରେ ନେଇଁ ବଡ଼ଭାଇ ଭାଉଜଙ୍କ ସାଥିରେ ଭୂମି ଆଉ ଦିଗନ୍ତ ମୁମ୍ବାଇ ଉଦ୍ଦେଶ୍ୟରେ ଫ୍ଲାଇଟ୍ ଧରିଲେ । ଏୟାରପୋର୍ଟରେ ବିଦିଶା ସମୀରଙ୍କ ସହିତ ଦିବ୍ୟ, ପାପା-ମମିଙ୍କୁ ବିଦାୟ ଦେଲା– 'ଶୀଘ୍ର ଫେରି ଆସିବ ମମି... ବାୟ' । ଓଜନିଆ ମନରେ ଟିକିଏ ହସିଦେଇ ଭୂମି କହିଲା– 'ନିଶ୍ଚୟ ଫେରିଆସିବି, ତୁ କିନ୍ତୁ ପଢ଼ାରେ ମନଦେବୁ' ।

ମୁମ୍ବାଇ ଏୟାରପୋର୍ଟରୁ ହୋଟେଲ ଯିବା ବାଟରେ ମନୁଭାଇଙ୍କୁ ଭୂମି ପଚାରିଲା, କାଲି ସକାଳୁ ହସପିଟାଲ ଯିବା ନା ଆଜି ?

"କାଲି ସକାଳ ଦଶଟା ବେଳେ ସାକ୍ଷାତ୍ ପାଇଁ ସମୟ ଦେଇଛନ୍ତି ଡାକ୍ତର - ଆଜି ସଂଧ୍ୟାଟା ଆମ ପାଇଁ ବିଶ୍ରାମ । କାହିଁକି ପଚାରିଲୁ, ତୁ ଆଉ କୁଆଡ଼େ ଯିବାକୁ ଚାହୁଁଛୁ ? "ନା ଭାଇ, କୁଆଡ଼େ ଆଉ ଯିବା, ଦିଗନ୍ତଙ୍କର ବିଶ୍ରାମ ଦରକାର - ଦେଖୁନ କେମିତି କ୍ଳାନ୍ତ ଦିଶୁଛନ୍ତି ।" ମନେମନେ ହସିଲେ ଦୀପା ଭାଉଜ, ନିଜ କଥା ନ ଭାବି, ବିଚାରୀ ଦିଗନ୍ତ ପାଇଁ ଚିନ୍ତା କରୁଛି ପାଗଳୀଟିଏ ସତରେ - କଳାକାଠ ପଡ଼ିଗଲାଣି ମୁହଁ... । ଭାବନାକୁ ଚାପିରଖି କହିଲେ, କାହିଁକି ଯେ, ସଂଧ୍ୟାବେଳଟା ମେରାଇନ୍ ଡ୍ରାଇଭରେ କଟେଇଲେ କିଛି ମନ୍ଦ ହେବନି... ମନଟା ପ୍ରଫୁଲ୍ଲ ରହିବ । ତା' ଛଡ଼ା ଭୂମିର ତ ପସନ୍ଦ, ନହେଲା ଏବେ ନଦୀକୂଳ... କ'ଣ ଦିଗନ୍ତ ? ମ୍ଳାନ ହସର ରେଖାଟିଏ ଫୁଟି ଉଠିଲା ଦିଗନ୍ତଙ୍କ ମୁହଁରେ - "ମୋର କିଛି ଆପତ୍ତି ନାହିଁ ଭାଉଜ..."

ସକାଳୁ ସମସ୍ତଙ୍କୁ ନେଇଁ ଟ୍ୟାକ୍ସି ସିଧା ଟାଟା ମେମୋରିଆଲ ହସପିଟାଲର ଗେଟ୍ ସାମ୍‌ନାରେ ବ୍ରେକ୍ ଦେଲା । ଟ୍ୟାକ୍ସିରୁ ଓହ୍ଲାଉ ଓହ୍ଲାଉ ହଠାତ୍ ଭୂମିକା ଚମକିପଡ଼ି ଦି' ପାହୁଣ୍ଡ

ପଛେଇ ଯାଇ ଠିଆ ହୋଇଗଲା– "ଭାଇ... ଭାଇମ... ଆମର ବୋଧେ ଭୁଲ ହୋଇଗଲା ଠିକଣାଟା... ଏଇଟା ତ ଟାଟା ମେମୋରିଆଲ... କ୍ୟାନସର୍ ଇନିଷ୍ଟିଚ୍ୟୁଟ୍ । ତା' ପାଟିରେ କଥାଗୁଡ଼ାକ କ୍ରମଶଃ ମିଳେଇ ଯାଉଥିଲା, ଭୟରେ... ।

ପରିସ୍ଥିତିକୁ ସମ୍ଭାଳିବାକୁ ଯାଇ ଭୂମିକୁ କୋଳେଇନେଲେ ମନୋଜ... 'ନା, ଆମେ ଠିକଣା ଜାଗାରେ ହିଁ ପହଁଞ୍ଚିଛେ । "ମାନେ ?? "ହଠାତ୍ ସବୁକିଛି ଗୋଳମାଳ ହୋଇଗଲା ଯେମିତି । ପାପ ଛୁଇଁଲା ମନକୁ ଦିଗନ୍ତଙ୍କର କ'ଣ କ୍ୟାନସର୍..., ହେ ଭଗବାନ, ଆଉ ଭାବିପାରିଲାନି ଭୂମି । ତା' ପାଦତଳର ମାଟି ଯିମିତି ଧସି ପଡୁଥିଲା... ସେ ଗଳି ପଡ଼ିବ... ଅଂଧାର ଦିଶୁଥିଲା ଘରିଆଡ଼... ଲଥ୍ ହୋଇ ବସିପଡ଼ିଲା ରାସ୍ତା ଉପରେ । ବଡ଼ଭାଉଜ ଆଗେଇ ଆସି ଉଠେଇ ଧରି କହିଲେ... "ସମ୍ଭାଳ ଭୂମି ନିଜକୁ... ଚଲ ଆଗକୁ... ଏ ଯାଏ ତ ପରୀକ୍ଷା ହୋଇନି ବ୍ୟସ୍ତ କାହିଁକି, ସମୟ ହେଇ ଯାଉଛି – ଆମକୁ ଯିବାକୁ ପଡ଼ିବ ।"

ପାଣି ବୋତଲ ବଢ଼େଇ ଦେଲେ ଦିଗନ୍ତ । ସାଷ୍ଟାମ ହୋଇ ଆଗକୁ ପାଦ ବଢ଼େଇଲା ଭୂମି ଯେତେ ସବୁ ଅଂଧାରକୁ ଗୋଟେଇ ଗାଟେଇ । ଦିଗନ୍ତଙ୍କୁ ପାଖରେ ପାଇ କାନ୍ଦିବାକୁ ଲାଗିଲା ବିକଳ ହେଇ । ବିବ୍ରତ ବୋଧ କରୁଥିଲେ ଦିଗନ୍ତ । ବଡ଼ଭାଇ ଭରସା ଦେଲେ 'ତମେ ଧୈର୍ଯ୍ୟ ହରେଇବନି ଦିଗନ୍ତ – ଦେଖିବ ସବୁ ଭଲହେବ । ଆମେ ତ ମଣିଷ... ପରିସ୍ଥିତିର ଦାସ... । ଭାଙ୍ଗି ପଡ଼ନି, ଥୟଧର । ଆମେ ଆମ କର୍ତ୍ତବ୍ୟ କରିବା – ତେଣିକି ଈଶ୍ୱରଙ୍କ ଇଚ୍ଛା... ।' ମନୋଜ ସେଇ ମୁହୂର୍ତ୍ତରେ ସତେଯେମିତି କୁରୁକ୍ଷେତ୍ରରେ ଶ୍ରୀକୃଷ୍ଣଙ୍କ ଭୂମିକାରେ ଅବତୀର୍ଣ୍ଣ ହୋଇ ଆଶାର ବାଣୀ ଶୁଣେଇଲେ ବିଷାଦଗ୍ରସ୍ତ 'ଦିଗନ୍ତ ଆଉ ଭୂମିଜା'କୁ !

ହସପିଟାଲର ସ୍ପେଶାଲ୍ କ୍ୟାବିନ୍ । ବେଡ୍ ଉପରେ ଶୋଇଥିଲା ଭୂମିଜା ନିସ୍ତେଜ ହୋଇ । ଟିକିଏ ପୂର୍ବରୁ ଭାଇ ଭାଉଜଙ୍କ ସହିତ ଦିଗନ୍ତ ଆସି କିଛି ସମୟ ବସି ଯାଇଛନ୍ତି । ଗଲାକାଲି ସଂଧ୍ୟାରୁ କିମୋ ଆରମ୍ଭ ହୋଇଛି । କିଛି ସହଜ ଲାଗୁନି । ଭୋମେଟିଂ ଫିଲ କରୁଛି ବୋଲି କି କ'ଣ, ଶୀତତାପ ନିୟନ୍ତ୍ରିତ କୋଠରି ଭିତରେ ବି ଝାଳେଇ ଗଲାଣି । ହଲଚଲ ବି ହୋଇପାରୁନି । ଏଇ ତ ଦଶମିନିଟ୍ ପୂର୍ବରୁ ନର୍ସ ଆସି ଡ୍ରିପ୍‌ଟାକୁ ସଜାଡ଼ି ପୁଣି ଚଳେଇଦେଇ ଗଲା । ଗଲାବେଳେ ଟିକିଏ ଆଶ୍ୱାସନା ବି ଦେଇଗଲା – ବ୍ୟସ୍ତ ହେବାର କିଛି ନାହିଁ ମାଡ଼ାମ୍, ସମ୍ଭାଳି ନିଅନ୍ତୁ ଟିକିଏ... ସବୁ ଠିକ୍ ହୋଇଯିବ... ଏମିତି ହୁଏ । ମନକିଣା ହସ ଟିକେ ବିଞ୍ଚିଦେଇ ଚାଲିଗଲା ସିଷ୍ଟର ।

ଏବେ ସେ ଏକଦମ୍ ଏକୁଟିଆ । ଦଶଦିନ ହେଇଗଲାଣି ସେ ଶୋଇଛି ଏଇ ବେଡ୍‌ରେ । ନିତି ପ୍ରକାର ପ୍ରକାର ଟେଷ୍ଟ । କେତେଥର କେଜାଣି ତା' ଦେହରୁ ରକ୍ତନମୂନା ନେଇଗଲେଣି ପରୀକ୍ଷା ପାଇଁ । ସେ କେବଳ ଅସହାୟଙ୍କ ଭଳି ହାତଟେକି ଦେଇଛି । ସହଯୋଗ କରିବା ଛଡ଼ା ତା'ର ଆଉ କିଛି ଉପାୟ ନାହିଁ । ଦୀର୍ଘଶ୍ୱାସ ନେଲା ଭୂମି... ଏକଥା ଭାବିଲା ବେଳକୁ ଚେତନସ୍ତରରେ ସେ ଛଟପଟ ହେଲା ଏକ ଅକୁହା ଯନ୍ତ୍ରଣାରେ । ଏଭଳି ସ୍ଥିତି ଆସି ପହଞ୍ଚିବ,

ସେ ତ କଳ୍ପନା କରିନଥିଲା । ସେ ସିନା ଦିଗନ୍ତଙ୍କ ପାଇଁ ବ୍ୟସ୍ତ ହେଉଥିଲା, ତାଙ୍କ ସ୍ୱାସ୍ଥ୍ୟକୁ ନେଇ ଚିନ୍ତିତ ଥିଲା । ଭାଇ ବି ସେଇ ଧାରଣା ଦେଇଥିଲେ । ଆଉ ଡକ୍ଟର ଦାସ କିଛି କହିନଥିଲେ ତା'ର ନିଜ ରିପୋର୍ଟ ସଂପର୍କରେ । କେବଳ ଦିଗନ୍ତଙ୍କର ଗୁମ୍‌ସୁମ୍‌ପଣ ମଝିରେ ମଝିରେ ତା' ମନରେ ସଂଶୟ ସୃଷ୍ଟି କରୁଥିଲା । ଅଥଚ ଦିଗନ୍ତ ଚମତ୍କାର ଭାବେ ତା'ର ପ୍ରଶ୍ନକୁ ଆଡ଼େଇ ଯାଉଥିଲେ – ସେ ମଣିଷଟାକୁ ଟିକିଏ ବି ଅବିଶ୍ୱାସ କରିପାରିଲାନି । ବିରାଟ ଗୋଟିଏ ଭ୍ରମ ନେଇ ସେ ଗୋଡ଼ କାଢ଼ିଥିଲା ଘରୁ । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସମସ୍ତେ ତାକୁ ଅଂଧାର ଭିତରେ ହିଁ ରଖିଥିଲେ !

କିନ୍ତୁ କାହିଁକି ? କାହିଁକି ରଖିଲେ ତାକୁ ଅଂଧାର ଭିତରେ ? ସ୍ୱତଃ ପ୍ରଶ୍ନଟିଏ ମୁଣ୍ଡଟେକିଲା ତା' ମନରେ । ସେ କ'ଣ କ୍ୟାନସର ନା'ଟା ଶୁଣି ଭୟରେ ଜଡ଼ସଡ଼ ହେଇଯାଇଥାନ୍ତା ନା କାନ୍ଦି କାନ୍ଦି ଭସେଇ ଦେଇଥାନ୍ତା ସମସ୍ତଙ୍କୁ । ସେ ତ ଏତେ ଦୁର୍ବଳ ନୁହେଁ ମନରେ, ବିଋରରେ । ମଣିଷର ଦେହ ଅଛି ବୋଲି ତ ସେ ଦେହୀ – ଦେହ ଥିଲେ ରୋଗ ଆସେ । ତା'ର ପ୍ରତିକାର କରିବାକୁ ପଡ଼େ । ଜୀବନ ଈଶ୍ୱର ଦେଇଛନ୍ତି – ନେବେ ବି ସେଇ – । ଅଥଚ ସେଇ ଦେହକୁ ନଷ୍ଟ କରିବା କି ଅବହେଳା କରିବା ଅଧିକାର ଅନ୍ତତଃ ମଣିଷର ନାହିଁ । ତା'ର ବି ନାହିଁ । ସେ ମରିବ ବୋଲି ଡରିବ କାହିଁକି ? ସେ ନିଜେ ଇଚ୍ଛା କରି ଆସିନି, ଇଚ୍ଛାକରି ବି ଯିବନି । ବରଂ ସେ କଥା ଦେଇଛି ଦିଗନ୍ତଙ୍କ ବାପାଙ୍କୁ, ଦିଗନ୍ତଙ୍କୁ ବି । ତା'ର ଅନେକ ଦାୟିତ୍ୱ, କର୍ତ୍ତବ୍ୟ ରହିଛି । ଏ ଘର ପାଇଁ, ଦିବ୍ୟ ଓ ଦିଗନ୍ତଙ୍କ ପାଇଁ । ସେମାନଙ୍କୁ ଅଧାବାଟରେ ଛାଡ଼ିଯିବ କିମିତି ? ଏଇ ଦିଗନ୍ତ... ତା' ଅବର୍ତ୍ତମାନକୁ ସହ୍ୟ କରିପାରିବେନି – ତାଙ୍କର ତ ସେଇ ଭୟ... ଜଣେ ଅବୋଧ ଶିଶୁର ଭୟ । ବଡ଼ ଅସହାୟ ମଣିଷଟା ଏଇ ଦିଗନ୍ତ । ଆହା ! ଏକଥା ଭାବିଲା ବେଳକୁ ଭୂମିର ଛାତି ଭିତରେ ରକ୍ତ କ୍ଷରଣ ହେଲା ଯେମିତି । ସେ ଛଟପଟ ହେଉହେଉ ସ୍ୱଗତୋକ୍ତି କଲା... ନା, ନା, ସେ ମରିପାରିବନି । ଦିବ୍ୟ ଦିଗନ୍ତଙ୍କୁ ଛାଡ଼ି ସେ ଏତେ ଶୀଘ୍ର ଅତୀତ ହେବାକୁ ଋହେଁନା । ସେ ବଂଚିବ; ମୃତ୍ୟୁ ସହିତ ଲଢ଼େଇ କରି ବଂଚିବ । ଦିବ୍ୟ ତା'ର ସ୍ୱପ୍ନ, ଦିଗନ୍ତ ତାର ପୃଥିବୀ – ଏ ଦୁହିଁଙ୍କୁ ଛାଡ଼ି, ଏଇ ସଂପର୍କର ଦୁର୍ଲଭ ଡୋର ଛିଣ୍ଡେଇ ସେ କିମିତି ଯିବ ? ସେ ବର୍ତ୍ତମାନ, ଅଛି ବି, ରହିବ ବି । ତେଣୁ ସେ ଲଢ଼ିବ, ହାରିଲା ପର୍ଯ୍ୟନ୍ତ ।

କିନ୍ତୁ ତା'ର ଦୁଃଖ ଏଇ ଯେ, କେହି ତାକୁ ବିଶ୍ୱାସ କରିପାରିଲେନି, ଚିହ୍ନି ପାରିଲେନି । ତାକୁ ଲୁଚେଇ ରଖିଲେ । ଭୂମି ଭାବନାକୁ ରୋକି ଟିକିଏ ନିଃଶ୍ୱାସ ନେଲା ।

ତା' ଗଳା ଶୁଖି ଯାଉଥିଲା – ହାତ ପା'ନ୍ତାରେ କିଛି କୋଉଠି ପାଣି ନ ଥିଲା – ଅବଶ୍ୟ କଲିଂବେଲ୍‌କୁ ଟିପି ସିଷ୍ଟରକୁ ଡାକିପାରନ୍ତା... ହେଲେ ଇଚ୍ଛା ହେଲାନି । ବରଂ ନିଜକୁ ଭାବନା ସାଥିରେ ଯୋଡ଼ି ଆଉ ଟିକେ ପଛକୁ ଆଗକୁ ହୋଇ ଋଲିବାକୁ ଋହଁଲା । ହେଲେ ଏଇ ଟିକକ ଭାବନା ଭିତରେ ବି ସେ କ୍ଳାନ୍ତି ଅନୁଭବ କରୁଥିଲା । ସତେ ଯେମିତି ସେ ନିଦରେ ଶୋଇ ପଡ଼ିବ । ଏଇ ଦୁର୍ବଳତା ଓ କ୍ଳାନ୍ତି ସେଇ ଦିନଠୁ..., ଯୋଉ ଦିନଠୁ ଭାଇ ତାକୁ ଅଙ୍କୋଲଜିଷ୍ଟଙ୍କ

ଆଗରେ ରୋଗୀ ଭାବେ ପେଶ୍ କଲେ । ସେ ତ ଚମକି ପଡ଼ି ଆବାକାବା ହେଇ ଚାହିଁଥିଲା ସମସ୍ତଙ୍କ ମୁହଁକୁ । ଦିଗନ୍ତ ନିଜେ ତା'ର ରିପୋର୍ଟ ସବୁ ଦେଖେଇଥିଲେ ଡାକ୍ତର ରସ୍ତୋଗୀଙ୍କୁ । ହଠାତ୍ ସେ କିଛି ବୁଝି ନ ପାରି ନିର୍ଜୀବ ପାଲଟି ଯାଇଥିଲା । ତା'ହେଲେ, ଦିଗନ୍ତ ନୁହଁନ୍ତି ସେ ରୋଗୀ - ଥ୍ୟାଙ୍କ୍ ଗଡ୍ ମୁହୂର୍ତ୍ତକ ପାଇଁ ହେଉ ପଛେ ଟିକିଏ ନିଶ୍ଚିନ୍ତ ଲାଗିଥିଲା ଓ ଭାବିଲା, ଏଇକଥାକୁ ଭାଇ ହୁଅନ୍ତୁ କି ଦିଗନ୍ତ, ଏମିତିକି ଭାଉଜ କାହିଁକି ଲୁଚେଇଥିଲେ ଯେ ! ସେ କ'ଣ ଭୟରେ ମରିଯାଇଥାନ୍ତା ? ବରଂ ଦିଗନ୍ତଙ୍କ କ୍ଷେତ୍ରରେ ଏକଥା ସମ୍ଭବ । ତାଙ୍କ ପାଖରେ ଦୁନିଆ ଯାକର ଭୟ ଜମାଟ ବାନ୍ଧି ରହିଛି । ସେ କୌଣସି ଯୁକ୍ତିତର୍କ ନ କରି ସେଦିନଠୁ ଡାକ୍ତରମାନଙ୍କୁ ସବୁପ୍ରକାର ଟେଷ୍ଟ୍‌ରେ ସହଯୋଗ କରିଛି । ସାଇଟୋଲଜି ଟେଷ୍ଟ ପରେ ଡାକ୍ତର ରସ୍ତୋଗୀ ଯେତେବେଳେ ଜଣେଇଦେଲେ ଯେ, ତା'ର ଲ୍ୟୁକୋମିଆ ହେଇଛି - ମାରାତ୍ମକ ଧରଣର ବ୍ଲଡ୍ କ୍ୟାନସର ଏବଂ ତୁରନ୍ତ କିମୋ ଆରମ୍ଭ କରିବାକୁ ପଡ଼ିବ - ଭାଇଙ୍କ ମୁହଁରୁ ପାଣି ଶୁଖିଗଲା ଯିମିତି । ଭାଉଜଙ୍କ ଆଖି ଛଳଛଳ ହୋଇଗଲା ଏବଂ ଦିଗନ୍ତ ଥ'ହେଇ ବସି ପଡ଼ିଲେ ହଠାତ୍ । ଆଖି ଅଂଧାର ହୋଇଯାଇଥିବ ନିଶ୍ଚୟ । ଭାଇ ପାଣିଗ୍ଲାସେ ମାଗି ବଢ଼େଇଦେଲେ, ଡାକ୍ତର ରାୟ ସାନ୍ତ୍ୱନାର ଅଭୟବାଣୀ ଶୁଣେଇଥିଲେ ଦିଗନ୍ତଙ୍କୁ । "ବିଶ୍ୱାସ ରଖନ୍ତୁ ଚିକିତ୍ସା ବିଜ୍ଞାନ ଉପରେ ସାର୍ ।"

ସେଦିନ ସେ ସମସ୍ତଙ୍କୁ ଲକ୍ଷ୍ୟ କରୁଥିଲା ଏବଂ ନିଜେ ସାହସ ଗୋଟେଇଥିଲା ସେ ଲଢ଼ିବ ମୃତ୍ୟୁ ସହିତ - ଏତେ ଶୀଘ୍ର ସେ ହାର ମାନିବନି । ତା'ର ଅନେକ ଦାୟିତ୍ୱ ଅଛି । ସେ ବଂଚିବ । ଡାକ୍ତରମାନେ ଗଲା ପରେ ଭାଇ ଭାଉଜଙ୍କୁ ଓଲଟି ଆଶ୍ୱସ୍ତ କରିଥିଲା ଯେ ସେ ନିଜେ ହତାଶ ହେଇନି - ଏଣୁ ଲଢ଼ିପାରିବ । ତମେମାନେ ବ୍ୟସ୍ତ ହୁଅନି ବରଂ ଦିଗନ୍ତଙ୍କୁ ଦେଖ - ସେଇ ମଣିଷଟା ଖୁବ୍ ଦୁର୍ବଳ - ସେ ହିଁ ତା' ବିନା ବଞ୍ଚି ପାରିବେନି - ତେଣୁ ସେ ଏତେ ସହଜରେ ମରିବନି - ବଂଚିବ ।

ତା' କଥା ଶୁଣି ଭାଇ ହସି ପକେଇ ତା' କାନ୍ଧକୁ ଝାଙ୍କି ଦେଇ କହିଥିଲେ - "ନିଶ୍ଚୟ, ତୁ ଯେ' ଆମର ରାଣୀ ଶୁକଦେଇ । ତା'ପରେ ଭାଉଜଙ୍କୁ ଚାହିଁ କହିଥିଲେ... ତମର ମନେ ଅଛି ନା ଦୀପା... ପିଲାଦିନେ ଏଇ ଭୂମି କେମିତି କାଠଘୋଡ଼ା ଉପରେ ବସି ବାଉଁଶକାଠିର ଖଣ୍ଡାକୁ ହାତରେ ଧରି, ତା' ବେବିଡ଼ଲକୁ ଅଣ୍ଟାରେ ଝୁଲେଇ ରାଣୀ ଶୁକଦେଇ ସାଜି କହୁଥିଲା- ସେ କେବେ ହାରିବନି...; ଭାଉଜ କହିଲେ 'ମନେ ଅଛି' । ଏକଥା କହିଲାବେଳେ ଦିଗନ୍ତ କିନ୍ତୁ ସେଠାରେ ନ ଥିଲେ, ବାହାରକୁ ବାହାରି ଯାଇଥିଲେ । ଥିଲେ, ସେ ପଢ଼ିଥାନ୍ତା ଦିଗନ୍ତଙ୍କ ମୁହଁର ପ୍ରତିକ୍ରିୟାକୁ ।

ଭୂମିଜା ଆହୁରି ଭାବିଲା, ଭାଇ ହୁଏତ ଭାବୁଥିବେ, ସେ ଆଉ ଦିଗନ୍ତ, ସ୍ୱାମୀ ଆଉ ସ୍ତ୍ରୀ-ସଂପର୍କରେ ଏକ ଆଉ ଅଭିନ୍ନ - ଉଭୟେ ଉଭୟଙ୍କ ଅଭ୍ୟନ୍ତରରେ 'ଅଖଣ୍ଡ ବିଶ୍ୱାସ' ରୂପେ ପ୍ରତିଷ୍ଠିତ ହେଇ ରହିବା କଥା । ଉଭୟେ ଉଭୟଙ୍କର ସହାୟ, ଭରସା ହେଇ ବାଟ ଚାଲିବା କଥା

– (ଏକଥା ବାହାଘରର ସପ୍ତପଦୀବେଳେ ଭାଇ ଦୁହିଁଙ୍କ ଆଗରେ ମନ୍ତ୍ରର ଅର୍ଥ ବୁଝେଇ କହିଥିଲେ, ତା'ର ମନେ ଅଛି...) ଅଥଚ ଦୁହିଁଙ୍କ ବିଚାର କେତେ ଭିନ୍ନ। ଜଣେ ଜୀବନର ବାସ୍ତବତାକୁ ଚାଲେଞ୍ଜ ଭାବେ ଗ୍ରହଣ କରି ସାମ୍ନା କରିବାକୁ ଚାହୁଁଛି ତ, ଆଉ ଜଣକୁ ଜୀବନର ବାସ୍ତବତା ଭୟ ଦେଖାଉଛି – ଅସ୍ଥିର କରି ପକଉଛି ବୋଲି ପଳାତକ ସାଜୁଛି... ଭାବୁ ଭାବୁ ଭୂମି ଯନ୍ତ୍ରଣାଭିତରେ ବି ହସି ପକେଇଲା– ଭାଇ ନିଶ୍ଚେ ଭାବୁଥିବେ ଏକଥା।

ସେ କିଛି କାହା ମନରେ ଦୁଃଖ ଦେବନି । ଏଇ ଦୀର୍ଘଦିନର ରୁଟିନ୍‌ବନ୍ଧା ଚେକ୍‌ଅପ ଓ ଟ୍ରିଟ୍‌ମେଣ୍ଟ ପାଇଁ ସେ ନିଜକୁ ମାନସିକ ସ୍ତରରେ ପ୍ରସ୍ତୁତ କରି ନେଇଛି । କେବଳ ଡାକ୍ତରମାନେ ତା'ର ଶାରୀରିକ ଦୁର୍ବଳତା ଓ ପାର୍ଶ୍ୱ ପ୍ରତିକ୍ରିୟାକୁ ନେଇ ଚିନ୍ତିତ ଅଛନ୍ତି । ଆଉ ତାର ଚିନ୍ତା କେବଳ ଜଣକ ପାଇଁ – ସିଏ ଦିଗନ୍ତ। ଦିଗନ୍ତଙ୍କୁ ସେ ଭରସା କରିପାରୁନଥିଲା। ଦିନୁଦିନ ସେ ଅସ୍ଥିର ହେଇ ଉଠୁଛନ୍ତି । ତାଙ୍କର ମାନସିକ ଅଥୟପଣ ସ୍ପଷ୍ଟ ବାରି ହେଇ ପଡୁଛି। ବିରକ୍ତି ଭାବ, ଚିଡ଼ଚିଡ଼ାପଣ ବଢୁଛି। ଅଧିକାଂଶ ସମୟ ସେ ଚୁପ୍‌ଚାପ ରହୁଛନ୍ତି ଗୁମ୍‌ହୋଇ। ଛୁଟି ବି ସରିଆସୁଛି... ତାଙ୍କୁ ଘରକୁ ଫେରିବାକୁ ପଡ଼ିବ ବୋଲି ଭାଇ କହୁଥିଲେ। ଆଉ ଛୁଟି ବଢ଼େଇ ପାରିବନି ଅଫିସ୍।

ଭୂମିଜାର ଦ୍ୱିତୀୟ କିମୋ ସରିଲା। ଦିଗନ୍ତ ଘରକୁ ଫେରିବାକୁ ଚାହିଁଲେ । ଚିନ୍ତା ବଢ଼ିଲା ଭୂମିର । ତା'ର ଇଚ୍ଛା ନ ଥିଲା ଦିଗନ୍ତ ଏକା ଯା'ନ୍ତୁ । ଦୀପା କହିଲେ ତା'ହେଲେ ଭାଇ ବି ଯା'ନ୍ତୁ ସାଥିରେ। କିଛିଦିନ ଘରେ ରହିବେ, ବିଦିଶାକୁ ଦିଗନ୍ତ ପାଖରେ ରଖି ପୁଣି ମୁମ୍ବାଇ ଆସିବେ। ମୁଁ ତ ଅଛି ତମ ପାଖରେ...। ମନକୁ ପାଇଲା ପ୍ରସ୍ତାବଟା ଭୂମିର। ସେଇ ସପ୍ତାହ ଶେଷରେ ଦୁହେଁ ଫ୍ଲାଇଟ୍ ଧରିଲେ ଘରକୁ ଫେରିବା ପାଇଁ । ଦିଗନ୍ତଙ୍କ ମନରେ ଟିକିଏ ବି ଖୁସି ନ ଥିଲା। ସେ ଯେମିତି ରିକ୍ତ ହୋଇଯାଇଛନ୍ତି । ସବୁକିଛିକୁ ସେ ଏଇଠି ଛାଡ଼ିଦେଇ ଯାଉଛନ୍ତି। ଫେରିଆସି ଭୂମିକୁ ସେ ଦେଖିପାରିବେ ତ ?·

ବାଟସାରା ମନୋଜ ଅନେକ ବୁଝେଇଥିଲେ ଦିଗନ୍ତଙ୍କୁ "ଆମେ ସବୁଠୁ ଭଲ ଟ୍ରିଟ୍‌ମେଣ୍ଟ ଦେଇଛେ । ନାମକରା ଡାକ୍ତରମାନେ ତା'ର ଦାୟିତ୍ୱ ନେଇଛନ୍ତି – କାହା ପ୍ରଯତ୍ନରେ ଅଭାବ ନାହିଁ – ରହିଲା, ଈଶ୍ୱରଙ୍କ ଇଚ୍ଛା – ଆମେ ଅସହାୟ ମଣିଷ ତ ତାଙ୍କ ଉପରେ ଭରସା ରଖିପାରିବା ନା... ତମେ ପିଲାଙ୍କ ଭଳି କାହିଁକି ଅବୁଝା ହେଉଛ ଦିଗନ୍ତ... ନିଜକୁ ସମ୍ଭାଳ... ପାଗଳାମି ଛାଡ଼... ପ୍ଲିଜ...।

ଆଉ ଦି ସପ୍ତାହ ଗଲା । ନିତି ସଂଜସକାଳେ ଫୋନ୍‌ରେ ଦୀପା ଭୂମିର ଖବର ଜଣାଉଥିଲେ। ସମୟ ଆଗେଇ ଚାଲିଥିଲା। ହେଲେ ତୃତୀୟ କିମୋ ବେଳକୁ ଉଦ୍‌ବେଗଜନକ ପରିସ୍ଥିତି ସୃଷ୍ଟି ହେଲା। ଆଶା ଛାଡ଼ି ବସିଲେ ଡାକ୍ତରମାନେ... ଈଶ୍ୱରଙ୍କ ଇଚ୍ଛା ଆଗରେ ମଣିଷ ତ ଅସହାୟ। ଭୂମିର ଇଚ୍ଛାଶକ୍ତିର ଜୋର ହେଉ, କି ଈଶ୍ୱରଙ୍କର ସ୍ଥିତି ଟିକିଏ ଷ୍ଟେବୁଲ ହେଇଛି। ଘଟଣା ସଂପର୍କରେ ଦୀପା ଜଣେଇ ଦେଇଥିଲେ ମନୋଜଙ୍କୁ। ଭୂମିର ଚେତା ଫେରିଲା ପରେ

ଦିବ୍ୟ ଓ ଦିଗନ୍ତଙ୍କୁ ବାରଂବାର ଖୋଜିଲା ଭୂମି... । ସମ୍ଭବ ହେଲେ ଆସନ୍ତା ଫ୍ଲାଇଟ୍‌ରେ ଦିବ୍ୟ ଓ ଦିଗନ୍ତଙ୍କୁ ନେଇଁ ମୁମ୍ବାଇ ଚାଲି ଆସ... । ଆଉ ଗୋଟିଏ କଥା... ଦିଗନ୍ତଙ୍କୁ ତାଙ୍କ ମନର ଅବସ୍ଥା ଦେଖି ଘଟଣାକୁ ଟିକିଏ ତରଳେଇ କହିବ... ।"

ସେଇୟା ହେଲା, ତା'ପରଦିନ ଦିବ୍ୟ ଓ ଦିଗନ୍ତଙ୍କୁ ନେଇଁ ସମୀର ବିଦିଶା ଓ ମନୋଜ ମୁମ୍ବାଇ ପାଇଁ ଫ୍ଲାଇଟ୍ ଧରିଲେ । ସେତେବେଳକୁ ଭୂମି ଅର୍ଦ୍ଧଚେତନ ଅବସ୍ଥାରେ ଥିଲା । ଦିଗନ୍ତଙ୍କ ଡିପ୍ରେସନ୍ ଆହୁରି ବଢ଼ିଲା । ସେ ମୂକ ପାଲଟିଗଲେ । ଦିବ୍ୟର 'ମାମା' ଡାକରେ ଅନେକ ସମୟ ପରେ ଭୂମି ଟିକିଏ ଆଖିଖୋଲି ଚାହିଁଲା । ମୁହୂର୍ତ୍ତେ, ତା' ପରେ ବନ୍ଦ କରିଦେଲା ଯେ ଆଉ ଖୋଲି ନଥିଲା । ଡାକ୍ତରମାନେ କହିଲେ, ପେସେଣ୍ଟ୍ କୋମାକୁ ଚାଲିଗଲା ।"

ଦିଗନ୍ତଙ୍କ କାନରେ ବାଜିଥିଲା କଥା ପଦକ । ସେ ଉଠିପଡ଼ି ଚାଲିଗଲେ ହଠାତ୍ ବାହାରକୁ ସମସ୍ତଙ୍କ ଅଗୋଚରରେ । ଭୂମିକୁ ନେଇ ସମସ୍ତେ ବ୍ୟସ୍ତ ଥିଲେ । ଡାକ୍ତରଙ୍କର ଶେଷ ପ୍ରୟାସ ଆରମ୍ଭ ହୋଇଯାଇଥିଲା । ଆଇ.ସି.ୟୁ. ଭିତରେ ଭେଣ୍ଟିଲେଟରରେ ଦିନେ ରହିଲା ପରେ ଦ୍ୱିତୀୟ ଦିନର ସୂର୍ଯ୍ୟୋଦୟ ପୂର୍ବରୁ ଚଳନ୍ତି ବର୍ତ୍ତମାନଟା 'ଅତୀତ'ରେ ପରିଣତ ହୋଇଗଲା । 'ସ୍ୱପ୍ନ'ଭାଙ୍ଗିଗଲା, ସଜଡ଼ା ସାଇତା 'ପୃଥିବୀ'ଟା ମିଛ ହେଇଗଲା । ମାୟା କାଟି ପ୍ରାଣପକ୍ଷୀ ଉଡ଼ିଗଲା ଶୂନ୍ୟ ଆଡ଼କୁ । ଏଇ ଆଘାତ ଉପସ୍ଥିତ ଅନ୍ତରଂଗ ମଣିଷ ପାଇଁ ଦାରୁଣ ଥିଲା ଏକାନ୍ତ ଭାବେ, ମୋହାଚ୍ଛନ୍ନ କରିଦେଲା ସମସ୍ତଙ୍କୁ । ସମୟ ସ୍ଥିର ହେଇଗଲା ସତେକି ! ମୋହାବସ୍ଥା କଟିଲା ପରେ ସମସ୍ତେ ଖୋଜିଲେ ଦିଗନ୍ତଙ୍କୁ । କାହାନ୍ତି ଦିଗନ୍ତ ? ଦିଗନ୍ତ ?? ପରସ୍ପର ପରସ୍ପରକୁ ଚାହୁଁଥିଲେ । ହସ୍‌ପିଟାଲର ପେମେଣ୍ଟ, ମେଡ଼ିକାଲ କ୍ଲିଅରାନସ୍, ବିଶେଷ କରି ଡେଡ୍ ବଡ଼ି ହସ୍ତାନ୍ତର ପାଇଁ ଦିଗନ୍ତଙ୍କ ଉପସ୍ଥିତି ତ ଏକାନ୍ତ ଭାବେ ଜରୁରୀ । ଅଥଚ ସେ କାହାନ୍ତି ? ହେ ଭଗବାନ ! ମୁହୂର୍ତ୍ତକରେ ମନ ଅନେକ କଥା ଭାବିଗଲା - ପାପ ଛୁଇଁଲା ମନକୁ । ଭୂମିର କ୍ରାଇସିସ୍‌କୁ ନେଇ ସମସ୍ତେ ଏତେ ବ୍ୟସ୍ତଥିଲେ ଯେ, ଦିଗନ୍ତଙ୍କ କଥା ମୋଟେ କାହା ମନକୁ ଆସିନି । ଚିନ୍ତା ଘାରିଲା ମନୋଜଙ୍କ ମୁଣ୍ଡକୁ । କ'ଣ ସେ କରିବେ । କୋଉଠି ଖୋଜିବେ... ସମୀର କହିଲେ, ଉପାୟ ବି କିଛି ଦିଶୁନି । ନିହାତି ଭୂମିକୁ ହସ୍‌ପିଟାଲରୁ ମୁକୁଳେଇବାକୁ ହେବ । ବେଶି ସମୟ ଏଠି ରଖିବାକୁ ଦେବେନି କର୍ତ୍ତୃପକ୍ଷ । ଦୀପା କହିଲେ, "ପୋଲିସ୍‌ର ସାହାଯ୍ୟ ନିଆଯାଇ ପାରେ... ।"

"ଠିକ୍ କଥା । ଦୁହିଁଙ୍କ ମନକୁ ପାଇଲା, ଅଜଣା ଅଚିହ୍ନା ସହରରେ ପୋଲିସ୍ ହିଁ ଭରସା । ତୁରନ୍ତ ଥାନାରେ ଡାଏରୀ ଦେବେ ବୋଲି ସମୀରକୁ ନେଇ ମନୋଜବାବୁ ହସ୍‌ପିଟାଲ ବାହାରକୁ ଆସି, ନିକଟବର୍ତ୍ତୀ ଥାନା ଖୋଜି କିଛି ବାଟ ଆଗେଇଗଲେ । ସାମ୍ନାରେ ଲୋକ ଗହଳିଥିଲା । କିଛି ଲୋକ ନିର୍ମାଣାଧୀନ ଗୋଟିଏ କୋଠା ଆଡ଼କୁ ଯିବା ଆସିବା କରୁଥିଲେ । ହଠାତ୍ ସମୀର ମନକୁ କ'ଣ ଆସିଲା କେଜାଣି, ମନୁଭାଇଙ୍କୁ କହିଲେ, "କିଛି ଗୋଟାଏ ଘଟଣା ଘଟିଛି ସେଇଠି କୋଉଠି ନିଶ୍ଚୟ, ଥରେ ଦେଖି ଆସିଲେ ହୁଅନ୍ତା କହୁ କହୁ ସେ ମୋଡ଼ଆଡ଼କୁ ବୁଲି ଆଗକୁ

ଚାଲିଲେ ସମସ୍ତଙ୍କ ସହିତ । ପଛେପଛେ ମନୋଜବାବୁ । ଲୋକେ କୁହାକୁହି ହେଉଥିଲେ- "ସୁଇସାଇଡ୍ କିଆ ଜରୁର୍"... ଛାତି ଭିତରଟା ହଠାତ୍ ଦାଉଁ କଲା - ଅଣନିଃଶ୍ୱାସୀ ଲାଗିଲା । ଗୋଡ଼ ଅବଶ ହେଇ ଯାଉଥିଲା ଅଜଣା ଆଶଙ୍କାରେ... ହେ ପ୍ରଭୁ !

ଲୋକ ଗହଳି ଆଡ଼େଇ ମୃତକ ନିକଟରେ ପହଞ୍ଚିଲା ବେଳକୁ ସମୀର ତ ଝାଳେଇ ଯାଇଥିଲେ । ଲୋକଟି ମୁହଁମାଡ଼ି ପଡ଼ିଥିଲା । କିଛି ଲୋକ ଘେରିହୋଇ ଥିଲେ ମୃତକକୁ ଚିହ୍ନଟ କରିବା ପାଇଁ - ଛେଚି ହୋଇଯାଇଥିବା ମୁଣ୍ଡ ଆଉ କ୍ଷତାକ୍ତ ମୁହଁ ରକ୍ତରେ ଜୁଡୁବୁଡୁ । ନିଃଶ୍ୱାସ ରୁଦ୍ଧ ଅବସ୍ଥାରେ ସମୀର ସେଇ ଲୋକଙ୍କୁ ଆଡ଼େଇ ଚମକି ପଡ଼ିଲେ । ଚିହ୍ନିବା ପାଇଁ ବାକି ନ ଥିଲା । ପାଟିରୁ କଥା ସ୍ଫୁରିଲାନି । ଅଂଧାର ଦିଶିଲା ସବୁ । ପଛରୁ ମନୁଭାଇଙ୍କ ହାତଧରି ଟାଣି ଆଣିଲେ ସାମ୍ନାକୁ...ଏବଂ କାନ୍ଦିବାକୁ ଲାଗିଲେ ପିଲାଙ୍କ ଭଳି । ଗଲାକାଲି ରାତିର ଶେଷ ପ୍ରହରରେ ଛରିତାଲା ବିଲ୍ଡ଼ିଂ ଉପରୁ ଡେଇଁ ନିଜକୁ ଶେଷ କରି ଦେଇଥିଲେ ଦିଗନ୍ତ । ଯନ୍ତ୍ରଣା କାତର ଦୀର୍ଘଶ୍ୱାସ ଭିତରେ ଅସ୍ଫୁଟ କଣ୍ଠରେ ସ୍ୱଗତୋକ୍ତି କଲେ ମନୋଜବାବୁ... ଏ ତୁମେ କ'ଣ କଲ ଦିଗନ୍ତ... ତୁମ ପାଖରୁ ଏକଥା ତ ଆଶା କରି ନ ଥିଲୁ ଆମେ । ଏତେ ଶୀଘ୍ର ନିଜ ଉପରୁ ବିଶ୍ୱାସ ତୁଟେଇ ଦେଲ ! ମୁଁ ଜାଣିଥିଲି, ଭୂମି ଭିତରେ ଥିବା ଜଣେ ଯୋଦ୍ଧାର ମନୋବୃତ୍ତି ତମ ପାଖରେ ନ ଥିଲା, ତଥାପି..., ପୁଣି ଭାବିଲେ, ... ଏଇ ନାରୀ ପୁରୁଷର ସଂପର୍କ ସତରେ ବଡ଼ ବିଚିତ୍ର; ତା'ଠାରୁ ଆହୁରି ବିଚିତ୍ର ଏଇ ସଂପର୍କର ପରିଭାଷା, ବୁଝି ମଧ୍ୟ ବୁଝି ହୁଏନା । ଜଣକ ଭାବନାକୁ ବୁଝି ନ ପାରିବା ଏବଂ ନିଜ ଭାବନାକୁ ବୁଝେଇ ନ ପାରିବାର ଦାରୁଣ ଅସହାୟତା ଭିତରେ ରହିଯାଉଥିବା ଶୂନ୍ୟତାଟା ଯେ ସବୁଠୁ ବେଶି ସାଂଘାତିକ... ।



# ସମୟର ଛବି

ମୁକ୍ତାପୁରର ଦିନୁରଣାଛକ । ବେଶ୍ ନାଁ ଡାକ ତା'ର । ତେବେ ଦିନୁରଣା ଜଣେ ମହାପୁରୁଷ କି ପରମାର୍ଥୀ ନ ଥିଲା । ପରିଚୟ ବୋଇଲେ, ସିଧାସାଦା ଖଟିଖିଆ ମଣିଷଟିଏ । ମୁକ୍ତାପୁରର ଜନ୍ମ ଇତିହାସ ବଖାଣୁଥିବା, ଜାଣିବା ଶୁଣିବା ପୁରୁଖା ଲୋକେ କୁହନ୍ତି, ଦିନୁରଣା ହିଁ ପହିଲେ ଏଇ ଛକ ଉପରେ ଚ' ଦୋକାନ ଦେଇ ଆଧୁନିକତାକୁ ଡାକି ଆଣିଥିଲା ।

ସେତେବେଳେ ମୁକ୍ତାପୁରର ମୁହଁ ଏତେ ଉଜ୍ଜ୍ୱଳ ଦିଶୁ ନ ଥିଲା । ଗାଉଁଲି ଗାଉଁଲି ଲାଗୁଥିଲା ତେଲ ହଳଦୀ ମାଖିହେଇ । ଚ'ର ବ୍ୟବହାର ବି ଲୋକେ ଜାଣିନଥିଲେ । ଚୁଡ଼ା, ଛତୁଆ ନହେଲେ ଲୁଣପଖାଳରେ ରାତି ପାହୁଥିଲା ମୁକ୍ତାପୁରର । ଇଏ କେବକାର କଥା, ମୁକ୍ତାପୁର ଜନ୍ମବେଳର ।

ହେଲେ, ଏବେ ଆମ ସ୍ୱାଧୀନ ଭାରତକୁ ସତଷଠୀ ଛୁଇଁବ । ଦେଶ ଅନେକ ଆଗେଇଲାଣି । ମୁକ୍ତାପୁର ବି ଆଉ ନିପଟ ମଫସଲ ହେଇ ନାହିଁ । ଶିକ୍ଷିତ, ଭଦ୍ରଲୋକଙ୍କ ସଂଖ୍ୟା ବଢ଼ିଛି । ଆନୁପାତିକ ଭାବେ ନଡ଼ାଛପର ଘରଘର ଭାଙ୍ଗି ଟିଣ, ଆଜବେସ୍‌ଟସ ଓ କୋଠାଘରମାନ ହେଇଛି । ସେଇ ତୁଳନାରେ ଦୋକାନ ବଜାର ବି ବଢ଼ିଛି । ସହର ଆଡ଼କୁ ମୁହାଁଇଥିବା କଉନାଲି ସଡ଼କଟା, ପ୍ରଧାନମନ୍ତ୍ରୀଙ୍କ ଗ୍ରାମସଡ଼କ ଯୋଜନାରେ ପିଚୁ କଂକ୍ରିଟ୍ ହୋଇଯିବା ଫଳରେ ସହର ସହିତ ସଂପର୍କଟା ଆହୁରି ଘନିଷ୍ଠ ହେଇଯାଇଛି । ଆତଯାତ ବଢ଼ିଛି । ଗାଡ଼ିମୋଟର ବସ୍‌ର କୋଳାହଳ ଯୋଗୁଁ ସେଦିନର ନିଛାଟିଆ ତୁନିତାନିଆ ମୁକ୍ତାପୁର ଚଳଚଂଚଳ ହେଇଉଠିଛି । ବିଜୁଳିବତିର ଆଲୁଅ ରାତିକୁ ଦିନରେ ପରିଣତ କରିଛି । ଆଗରୁ ପ୍ରାଥମିକ ସ୍କୁଲଟିଏ ଥିଲା ଏବେ ପୋଲିସ୍‌ଫାଣ୍ଡି, ପଞ୍ଚାୟତ ଅଫିସ ଏବଂ ପଶୁ ଡାକ୍ତରଖାନା ସହିତ ପ୍ରାଇମେରି ହେଲଥ୍ ସେଣ୍ଟରଟିଏ ବି ହେଲାଣି ।

ପ୍ରଥମେ ନିଜ ପ୍ରଚେଷ୍ଟାରେ ମୁକ୍ତାପୁରର ମାନ୍ୟଗଣ୍ୟ ଲୋକେ ହାଇସ୍କୁଲଟିଏ କରିଥିଲେ । ତା'ପରେ ଉଚ୍ଚଶିକ୍ଷାର ଆବଶ୍ୟକତାକୁ ଆଖିଆଗରେ ରଖି ଗାଁମୁଣ୍ଡରେ ପ୍ରାଇଭେଟ୍ କଲେଜଟିଏ ଆରମ୍ଭ କଲେ । ଝିଅ ପିଲାଏ ଦି' ଅକ୍ଷର ଅଧିକ ପଢ଼ିବାକୁ ଚାହିଁଲେ ସହରକୁ ଯିବାକୁ ହେଉଥିଲା- ଯାହା ସମ୍ଭବ ହେଉନଥିଲା, ଖାସ୍ ସେଇଥିପାଇଁ । ସେଇ କଲେଜ, ଏଇ ଦଶବର୍ଷ ହେଲା ସରକାରୀ ଅନୁଦାନ ପାଇ ଅଣ୍ଟା ସିଧାକରି ଠିଆହେଇଛି । ସେଇଦିନୁ ମୁକ୍ତାପୁରର ମହତ୍ୱ ଆହୁରି ବଢ଼ିଯାଇଛି । ଅନ୍ତତଃ ଯୁବଗୋଷ୍ଠୀ ଛାତି ଫୁଲେଇ ଦଶଜଣଙ୍କ ଆଗରେ ଠିଆହେଇ ପାରୁଛନ୍ତି । ବିଭିନ୍ନ ପ୍ରକାର ପ୍ରତିଯୋଗିତାରେ ଅଂଶଗ୍ରହଣ କରି ସାହସ ଟିକିଏ ବଢ଼ିଲାଣି । ଆଗରୁ ଖୁବ୍ କମ୍ ଝିଅ ପଢୁଥିଲେ ଏବେ ପ୍ରାୟ ସବୁ ଘରୁ ଝିଅପିଲା କଲେଜ ମାଡ଼ିଲେଣି । ଅତଏବ ମୁକ୍ତାପୁର ଆଉ ଅନ୍ଧାର ହେଇ ନାହିଁ । ଅନ୍ୟପ୍ରକାରେ କହିଲେ ରେଡ଼ିଓ, ଟେଲିଭିଜନ ବାଟଦେଇ ଆଧୁନିକତାର ହାୱା ମୁକ୍ତାପୁରକୁ ମୋଟାମୋଟି ସଂଭ୍ରାନ୍ତ ରୂପଟିଏ ଦେଇଛି । ପିଲାଙ୍କୁ ଆଉ 'ଗ୍ରାମବାସୀ'ର ଟିପ୍ପଣୀ ଶୁଣିବାକୁ ପଡୁନି ସହରିଆଙ୍କ ଠାରୁ ।

ଆମଦେଶ ଯେ, ସତସତ ବିକାଶଆଡ଼କୁ ମୁହାଁଇଛି - ମୁକ୍ତାପୁର ତା'ର ଛୋଟକାଟର ଏକ ନମୂନା । ସ୍ୱାଭାବିକ କଥା । ଦେଶବିଦେଶର ବୁଦ୍ଧିଜୀବୀଏ ଯେତେବେଳେ ଜଗତୀକରଣ, ଗ୍ଲୋବାଲ ଭିଲେଜ ଭଳି ବଡ଼ମାପର କଥା ସବୁ ଚିନ୍ତା କଲେଣି, ସେଠି ଆମ ମୁକ୍ତାପୁରର ଭାଗ୍ୟ ନ ବଦଳନ୍ତା ବି କିମିତି !

ଏବଂ... ତଥାକଥିତ ଏଇ ଆଧୁନିକ ମୁକ୍ତାପୁରର ପ୍ରଥମ ଉପଦ୍‌ଘାତ ଥିଲା, ଆମ ଦିନୁରଣାର ଚା' ଦୋକାନ । ଦିନୁରଣା ତ ଆଉ ନାହିଁ, ତାର ଚା' ଦୋକାନ ବି ଆଉ ନାହିଁ । ତା' ଜାଗାରେ ଆହୁରି କେତେ ନୂଆ ହୋଟେଲ, ରେଷ୍ଟୁରାଣ୍ଟ, କାଫେ-ସୁନ୍ଦର ନାଁ ନେଇଁ ଠିଆ ହେଲେଣି - ହେଲେ ଲୋକେ ଛକଟିକୁ 'ଦିନୁରଣା ଛକ' ନାମରେ ହିଁ ଚିହ୍ନିତ କରିଛନ୍ତି । କାରଣ ଆଧୁନିକ ମୁକ୍ତାପୁରର ପ୍ରଥମ ସ୍ମାରକୀ 'ଦିନୁରଣା ଛକ' ବ୍ୟତୀତ ଆଉ କିଛି ହୋଇନପାରେ ।

ଛକମଝିରେ ଘଞ୍ଚ ବଉଳଗଛଟିଏ । ଗଛଟି ବି କୁଆଡ଼େ ଦିନୁ ରଣା ହିଁ ଲଗେଇଥିଲା, ଗରାଖଙ୍କୁ ଛାଇ ଦେବ ବୋଲି । ଗଛଟିକୁ କେତେ ବୟସ ହେବ କେଜାଣି, ଫୁଲ କିନ୍ତୁ ଲଦାଲଦି । ବାସ୍ନା ଅଜାଡ଼ି ହେଇପଡ଼େ ଚାରିଆଡ଼େ । ଗଛ ଚାରିକଡ଼େ ସିମେଣ୍ଟ ଚଉତରା । ଆଗରୁ ଇଟାମାଟିର ହିଁ ଥିଲା । ବିଗତ ପଞ୍ଚାୟତ ନିର୍ବାଚନବେଳେ, ଜିତିବା ଖୁସିରେ ଯୁଜେଷ୍ଟି ସୁନ୍ଦରାୟ ଚାନ୍ଦିନୀଟିକୁ ସିମେଣ୍ଟ କରିଦେଇଛନ୍ତି । ଗଛକୁ ଲାଗି ଟୁଙ୍ଗି ମନ୍ଦିରଟିଏ । ଅଢ଼େଇଫୁଟ ଉଚ୍ଚର ହେବ । ତାରଜାଲିର ଗ୍ରୀଲ୍ ଭିତରେ ତ୍ରିନାଥ ଠାକୁର ଚନ୍ଦନସିନ୍ଦୂର ପିନ୍ଧି ବିଜେ କରିଛନ୍ତି । ସେଇବାଟେ ଗଲାବେଳେ ସଭିଏଁ ମୁଣ୍ଡ ନୂଆଁଇ ଯା'ନ୍ତି ଦାନଦକ୍ଷିଣା ବି ପଡ଼େ କିଛି କିଛି । ସେଇଥିରେ ଠାକୁରଙ୍କ ନିତ୍ୟ ପୂଜା ହୁଏ । ସଂଜବେଳେ ଗିନି-ଖଂଜଣି ବାଜେ, ଭଜନ କୀର୍ତ୍ତନ ହୁଏ । ଏସବୁର ଦାୟିତ୍ୱ ମୁକ୍ତାପୁର ବଜାରର ବଡ଼ ବ୍ୟବସାୟୀ ସୁନ୍ଦର ମହାନ୍ତିଙ୍କର ।

ଚଉତରା କେବେ ଖାଲି ପଡ଼େନି । ଦିନରୁ ରାତି ପର୍ଯ୍ୟନ୍ତ ଗହଳି ଲାଗିଥାଏ । କିଏ କିଏ ଥକାଣ ଭାଙ୍ଗିବାକୁ ଘଡ଼ିଏ ପହରେ ବଉଳଗଛ ଛାଇରେ ବସିଯାନ୍ତି ତ କେବେକେମିତି କୋଉ ପରଦେଶୀ, ବଉଳଗଛର ପବନ ଖାଉ ଖାଉ ରାତିରେ ଶୋଇପଡ଼ନ୍ତି ବି ଖରାଦିନେ । ଗାଁ ଭିତରର ଯେତେସବୁ ଘଟଣା ଦୁର୍ଘଟଣା, ନ୍ୟାୟ-ନିଶାପ, ମଧ୍ୟସ୍ଥି-ଭଲଲୋକୀ, ପୂଜା-ପର୍ବ, ବାହାଘର ଠିକଣା ଠୁ ଆରମ୍ଭକରି, ଗାଁ ରାଜନୀତି, ଅର୍ଥନୀତି, ସମାଜ ବ୍ୟବସ୍ଥା, ଭାଗବତ ଚିନ୍ତା, ଗଲାଅଇଲା, ଜନ୍ମମୃତ୍ୟୁ, ପରଚର୍ଚ୍ଚା ପର୍ଯ୍ୟନ୍ତ - ସବୁକଥା ଏଇ ଚଉତରା ଉପରେ ହିଁ ଆଲୋଚନା ହୁଏ । ଏ ପର୍ଯ୍ୟନ୍ତ ମୁକ୍ତାପୁରରେ ଲାଇବ୍ରେରି କିମ୍ୱା ସଭାଘରଟିଏ ହୋଇପାରିନି ବୋଲି ଅନେକଙ୍କର ମନ ଦୁଃଖ । ଆସନ୍ତା ନିର୍ବାଚନକୁ 'ସଭାଘର' ବରାଦ କରିବେ ବୋଲି ସ୍ଥିର ହୋଇଛି । ତେଣୁ ଖବରକାଗଜ ଦି'ଖଣ୍ଡ ହକର ଚଉତରା ଉପରେ ହିଁ ପକେଇଦେଇ ଯାଇଥାଏ । ସେଇଥିରୁ ଜାଣିହୁଏ ଦେଶର ଖବର, ଚର୍ଚ୍ଚା ବି ଚାଲେ - ଯିବାଆସିବା ଲୋକେ ଜମିଯାନ୍ତି ଶୁଣିବାକୁ ।

ଆଉ ଏଇ ଚଉତରା ଉପରେ କିଏ ଥାଉ କି ନ ଥାଉ ଗୋପାଳ ସାହାଣୀ ତ ନିଶ୍ଚୟ ବସିଥିବେ ପଦ୍ମାସନରେ । କପାଳରେ ଚିତା ତିଳକ, କାନ୍ଧରେ ନାଲି ଗାମୁଛା, ଭଜନମାଳାଟା ମୁଣି ଭିତରେ ପଶି ବେକରେ ଝୁଲୁଥିବ । ହାତ ଅଟକି ଯାଇଥିବ ମାଳା ଉପରେ । ଆଖି କାନ ସହିତ ଅନ୍ୟ ଇନ୍ଦ୍ରିୟମାନେ ବି ଉଦ୍‌ଗ୍ରୀବ ହେଇ ଆଉ ଘରିଜଣଙ୍କ ଭଲମନ୍ଦ ଖବର ଶୁଣିବାକୁ ପ୍ରସ୍ତୁତ ଥିବେ । ସାମନାରେ ପଡ଼ିଥିବ ତାସ୍ ପାଲି । ଚା' ଗ୍ଲାସଟିଏ ବି ବେଳେବେଳେ ଥାଇପାରେ । ଗଲାଅଇଲାଙ୍କ ସହିତ ଡାକିହାକି କଥା କହୁଥିବେ । ବୈଷ୍ଣବୀୟ ବୈଷ୍ଣବୀୟ ଲାଗୁଥିବା ଗୋପାଳ ସାହାଣୀଙ୍କର ଇଏ ନିତିଦିନର ପରିଚିତ ମୁଦ୍ରା । ସକାଳୁ ରାତିର ପ୍ରଥମ ପ୍ରହର ପର୍ଯ୍ୟନ୍ତ ଚଉତରାରେ ତାଙ୍କର ଉପସ୍ଥିତି ନିର୍ଦ୍ଧାରିତ ପ୍ରାୟ, କେବଳ ବର୍ଷାଦିନକୁ ଛାଡ଼ି । ଖାଇସାରି ଦି'ପହରେ ଘଡ଼ିଏ ବିଶ୍ରାମ କରନ୍ତି କି ନାହିଁ, ପୁଣି ଚଉତରା ଉପରେ ହାଜର । ବୟସ ହେଲାଣି ତିନିପୁଅଙ୍କ କାନ୍ଧରେ ବ୍ୟବସାୟକୁ ବାଣ୍ଟିଦେଇ ସେ ନିଶ୍ଚିନ୍ତ ବୋଲି କହୁଥିଲେ ମଧ୍ୟ ପୂରାପୂରି ସନ୍ନ୍ୟାସ ନେଇ ନାହାନ୍ତି । ରାତିରେ ଶୋଇବା ପୂର୍ବରୁ ପୁଅଙ୍କ ପାଖରୁ ଦିନର ହାନିଲାଭ ହିସାବ ବୁଝିନିଅନ୍ତି - ଲୋକେ କୁହନ୍ତି ଏଇଟା ତାଙ୍କର ବ୍ୟବସାୟିକ ବୁଦ୍ଧିର ପରିଚୟ । ଘରିଆଡ଼କୁ ନଜର । ଅନ୍ୟମାନେ ବି ଆସି ତାଙ୍କ ନିକଟରୁ ପରାମର୍ଶ ନିଅନ୍ତି । ବାକିତକ ସମୟ ସାଂଗମାନଙ୍କ ମେଳରେ ତାସ୍‌ଖେଳରେ କଟେ ।

ସାଂଗସାଥୀ କହିଲେ ଗାଁର ବଡ଼ଲକ୍ଷୀ ହରିବଂଧୁ ପ୍ରଧାନ ଓ ଗାଁ ମାମଲତ ସୁନାକର ମହାନ୍ତି । ସୁନାକରଙ୍କର କଣ୍ଟ୍ରୋଲ ଦୋକାନ । ଭଲ ଦି'ପଇସା ରୋଜଗାର ହୁଏ । ପୁଅକୁ ବସେଇଛନ୍ତି ଦୋକାନରେ ଆଉ ଦୁହେଁ ହେଲେ ଶଶିଭୂଷଣ ରଥ - ହାଇସ୍କୁଲ ଶିକ୍ଷକରୁ ହେଡ୍‌ମାଷ୍ଟର ହେଇ ଅବସର ନେଇଛନ୍ତି - ପାଞ୍ଚବର୍ଷ ହେଲା ଏବଂ ଅନ୍ୟଜଣକ ହେଲେ ମୁକ୍ତାପୁର ପଶୁ ଡାକ୍ତରଖାନାର ଡାକ୍ତର ମାଗୁଣି ପରିଡ଼ା - ଆଉ ଛ'ମାସ ପରେ ଅବସର ନେବେ । ଛକ

ଉପରେ ତାଙ୍କର ଔଷଧ ଦୋକାନଟିଏ ଅଛି । ପୁଅକୁ ଥୋଡ଼େ ଟଙ୍କା ଖର୍ଚ୍ଚକରି ଇଂଜିନିୟରିଂ ପଢ଼େଇଲେ ସତ, ହେଲେ ପାଠ କାମରେ ଲାଗିଲାନି । ଔଷଧ ଦୋକାନରେ ବସିଛି । ମନରେ ଖୁସି ନାହିଁ । ଉତୁରି ଆସୁଥିବା ସ୍ୱପ୍ନ ମଉଳି ଯାଉଛି ହତାଶା ଭିତରେ । ଶଶି ରଥଙ୍କ ପରିସ୍ଥିତି ବି ସେଇୟା । ପୁଅ ରାଜେନ୍‌କୁ କଟକ ସହରରେ ଗୋଟାଏ ଗାରମେଣ୍ଟ୍ ଦୋକାନ ଦେଇ ବସେଇଛନ୍ତି । ବେକାର ହେଇ ବସିବା ଅପେକ୍ଷା କାଶିବା ଭଲ ବୋଲି । ନହେଲେ ନିତି ସେ ପ୍ରଶ୍ନ କରୁଛି ବ୍ୟବସାୟ କରିବି ବୋଲି କ'ଣ ଇଂଜିନିୟରିଂ ପାଠ ପଢ଼ିଥିଲି ? କ'ଣ ଦେବାକୁ ଅଛି ଉତ୍ତର ବି, ସେ କ'ଣ ବୁଝୁନାହାନ୍ତି । ରାଜେନ୍‌ଟା ଭଲ ଛାତ୍ର ଥିଲା । ଅନେକ ଆଶା କରିଥିଲେ ସେ । ପ୍ରଭିଡ଼େଣ୍ଟ ଫଣ୍ଡ୍‌ରୁ ଟଙ୍କା କାଢ଼ି ଖର୍ଚ୍ଚ କରିଥିଲେ ତା' ପଢ଼ାରେ । ସୁନନ୍ଦା ବାହାଘର ସେଥିପାଇଁ ଅଟକି ଯାଇଥିଲା ଅନେକଦିନ ପର୍ଯ୍ୟନ୍ତ । ନିକଟରେ ଗୋଟାଏ ଏନ୍.ଜି.ଓ. ସଂସ୍ଥା ଭିତରେ ଭର୍ତ୍ତି କରିବାକୁ ଚେଷ୍ଟା କରିଥିଲେ ଯେ, ସମ୍ଭବ ହେଲାନି । ଜଣେ ତଫସିଲଭୁକ୍ତ ପିଲା ପାଇଁ ଉପରୁ ଚାପ ପଡ଼ିଲା; ସୁପାରିସ୍ ହେଲା । ସଂସ୍ଥା ଅଧିକାରୀ ହାତ ଟେକିଦେଲେ, ସେ ନିରୁପାୟ । ଆଜିକାଲି ତ ଏଇୟା ଚାଲିଛି । ଅର୍ଥ ସହିତ ନାମୀଦାମୀ ଲୋକଙ୍କ ସୁପାରିସ୍ । ସେଥିରେ ପୁଣି ତହୁଁ ତହୁଁ ବଳି ପ୍ରତାପଶାଳୀ ବ୍ୟକ୍ତି ଅଛନ୍ତି ଟଙ୍କା ଖର୍ଚ୍ଚ କରିବାକୁ । ରାଜେନ୍ ତ ମାଷ୍ଟ୍ରବାପୁଡ଼ାର ପୁଅ । ତା' ସାଙ୍ଗକୁ 'ସଂରକ୍ଷଣ' ବ୍ୟବସ୍ଥା । ସାଧାରଣବର୍ଗର ହାତ ପାଦ ବାନ୍ଧି ହେଇଯାଉଛି । କଥା କହିବାର ଯୁ' ନାହିଁ ।

ସେଇ ଶଶିମାଷ୍ଟ୍ରେ ନିତି ସକାଳୁ କପେ ଚା' ଖାଇଦେଇ ଖବରକାଗଜ ପଢ଼ିବା ନିଶାରେ ଚାଲିଆସନ୍ତି ଚଉତରାକୁ । ବାଟରେ ପଡ଼େ ମାଗୁଣି ଡାକ୍ତରଙ୍କ ଘର । ଡାକି ଆଣନ୍ତି ତାଙ୍କୁ । ବାଟ ଚାଲୁଚାଲୁ ଦୁହେଁ ସୁଖଦୁଃଖ ବାଣ୍ଟନ୍ତି । ମନ ବି ହାଲୁକା ହୁଏ । ପରିସ୍ଥିତିକୁ ସହ୍ୟକରି ମଣିଷ ତ ବଂଚିବାକୁ ଶିଖେ – ଇୟେ ବି ଗୋଟିଏ ଉପାୟ । ଆଜିକାଲି ସହୃଦୟ ମଣିଷଟିଏ ଖୋଜିଲେ କୋଉଠି ମିଳେ ? ଚଉତରାରେ ବଂଧୁମାନେ ଅପେକ୍ଷା କରି ବସିଥାନ୍ତି । ଖବରକାଗଜ ପଢ଼ା ହୁଏ, ଆଲୋଚନା ହୁଏ ମଧ୍ୟ । ଆଜି ପୁଣି ରବିବାର...

ନିତିଦିନ ଭଳି ମାଗୁଣି ଡାକ୍ତର ଅପେକ୍ଷା କରିଥିଲେ ଶଶିମାଷ୍ଟ୍ରେଙ୍କୁ ତାଙ୍କ ଦାଣ୍ଡଦୁଆରେ । ଖରାପଡ଼ିବା ଆଗରୁ ପ୍ରାୟ ସେ ଆସିଯାଇଥାନ୍ତି । ଡେରି ହେଲାଣି ଆଜି । ମନଟା ବି ଭଲ ଲାଗୁନଥିଲା । ମନର ଭାରିପଣକୁ ଶଶିମାଷ୍ଟ୍ରଙ୍କ ପାଖରେ ଅଜାଡ଼ି ନଦେଲା ପର୍ଯ୍ୟନ୍ତ ତାଙ୍କୁ ଏମିତି ଅସଜ ଲାଗୁଥିବ । ସେଇତ ଜଣେ ମଣିଷ ଯାହାପାଖରେ ଦରଦୀ ମନଟିଏ ଅଛି ଅନ୍ୟକୁ ବୁଝିବା ପାଇଁ । ଭାଇ ଭଳି... ଅଭିଭାବକ ଭଳି ଆବଶ୍ୟକ ସ୍ଥଳେ ପିଠି ଆଉଁଶିବେ, ନହେଲେ ଦି'ପଦ ଶୋଧିଦେଇ ପାରିବେ ମଧ୍ୟ । ସେଇଥିପାଇଁ ତାଙ୍କୁ ଖୋଜା... ଅଫିସ୍‌ରେ ଘଟିଥିବା ଗଲାକାଲିର ଘଟଣାଟା ତାଙ୍କୁ ବେଶ୍ ବିଚଳିତ କରିପକେଇଛି । ଛାର ପିଅନଟାଏ ରାମ ଦାସ, କେଡ଼େ ଦିମାକରେ କଥା ନ କହିଲା । ପୁଅ ଇଂଜିନିୟର ହେଲା, କୋଟାରେ ପଢ଼ିଥିଲା । ଚାକିରି ବି ପାଇଲା ସେଇ 'କୋଟା'ରେ; ଏବେ ବଡ଼ସାନ ଜ୍ଞାନ ରହୁନି । ଯେତେବେଳେ ମଉକା ପାଉଛି

ଟିପ୍ପଣୀ କରୁଛି- "ପୁଅକୁ ଏତେ ଟଙ୍କା ଖର୍ଚ୍ଚକରି ପଢ଼େଇ ଶେଷରେ ତ ସାର୍ ଦୋକାନରେ ବସେଇଲେ, ଭାବିଲେ ଦୁଃଖ ଲାଗୁଛି । ବଡ଼ବଡ଼ିଆ କି ମନ୍ତ୍ରୀଙ୍କୁ ଥରେଅଧେ କହିଲେନି ବି ।"

ଶୁଖିଲା ହସଟିଏ ବ୍ୟତୀତ ତାଙ୍କ ପାଖରେ କିଛି ଉତ୍ତର ନ ଥାଏ । ଉତ୍ତର ଥିଲେ ବି ଦେଇପାରନ୍ତିନି । ଛାତି ଚିରି ହୋଇଯାଏ । ବାହାରକୁ ସିନା ରକ୍ତ ଦିଶେନି, ହେଲେ ରାମଦାସମାନଙ୍କ କଥାର-ଲୁଣଛିଟିକା ବାଜିଲେ ଜଳେ ପୋଡ଼େ । ଯନ୍ତ୍ରଣା ହୁଏ । ଚାକିରି ଜୀବନରେ ଏଭଳି ଅନେକ କିସମର ଅଦଉତିକୁ ସେ ସାମ୍ନା କରିଆସିଛନ୍ତି ଚୁପ୍‌ଚାପ୍ । ଶବ୍ଦଟିଏ ବି ପାଟିରୁ ବାହାରେନି । କାରଣ ଆମ ସ୍ୱାଧୀନ ଦେଶର ଆଇନ୍‌କାନୁନ କେତେବେଳେ କୋଉ ରୂପ ନେଇ କୋଉ କାଠଗଡ଼ାରେ ଠିଆ କରେଇଦେବ । ସତମିଛି ପ୍ରମାଣ କରିବାକୁ କେହି ନ ଥିବେ ପାଖରେ । ପିମ୍ପୁଡ଼ିଟାକର କଥା ଇସୁହୋଇ ଉଭା ହୋଇଯିବ ହାତୀଭଳି । ସେଥିପାଇଁ ସବୁବେଳେ ସେ ସଚେତନ ଥା'ନ୍ତି । ତାଙ୍କ କାରବାର ପ୍ରାୟ ଏଇ ତଳିଆ, ଅଶିକ୍ଷିତ ମଣିଷଙ୍କ ସହିତ । ନା ସେମାନେ କିଛି ବୁଝିବେ, ନା ସେ କିଛି ବୁଝେଇ ପାରିବେ । ଅଥଚ କାଲି କାହିଁକି ଯେ ତାଙ୍କର ଧୈର୍ଯ୍ୟ ବନ୍ଧ ଭାଙ୍ଗିଲା..., ଅନ୍ୟମନସ୍କ ଭାବେ ଭାବୁ ଭାବୁ ତାଙ୍କ ନଜର ପଡ଼ିଲା ସାଇମୁଣ୍ଡକୁ; ଶଶିମାଷ୍ଟ୍ରେ ଆସୁଛନ୍ତି... ଓହ୍ଲେଇଗଲେ ପରିଡ଼ାଏ । ପାଖକୁ ଆସିଲେ ଶଶି ରଥେ ।

"ଆପଣଙ୍କର ଆଜି ଏତେ ବିଳମ୍ବ ହେବା ଦେଖି ମୁଁ ଅପେକ୍ଷା କରିଥିଲି ସାର୍, ପ୍ରଣାମ କରୁକରୁ କହିଲେ । ଟିକିଏ ଡେରି ହୋଇଗଲା, ସମୁଦି ଆସିଥିଲେ କାଲି, ତାଙ୍କୁ ବସ୍‌ରେ ବସେଇଦେଇ ତ ଆସୁଛି । ହଠାତ୍ ଶଶି ରଥଙ୍କ ଆଖି ମାଗୁଣି ପରିଡ଼ାଙ୍କ ମୁହଁ ଉପରେ ସ୍ଥିର ହେଲା - ମନେହେଲା, ବିରସ, ବିରସ ଦିଶୁଛି । ସବୁବେଳେ ଖୁସିବାସିଆ ମଣିଷଟା, ଯେତେ କଷ୍ଟ ଆସିଲେ ବି ବ୍ୟସ୍ତ ହୁଅନ୍ତିନି । ପଚାରିଲେ ଦେହ ଭଲ ନାହିଁକି ମାଗୁଣିବାବୁ ? ଆଜି ତ ରବିବାର ଅଫିସ୍ ପାଇଁ ତରବର ନାହିଁ କିଛି ।

"ଦେହ ଭଲ ଅଛି ସାର୍ କିନ୍ତୁ ମନ ଟିକିଏ ବ୍ୟସ୍ତ ଲାଗୁଛି । ସେଇକଥା କହିବି ବୋଲି ତ ଅପେକ୍ଷା କରିଥିଲି ।"

"କ'ଣ ହେଇଛି କହିଲେ, ଏତେ ବ୍ୟସ୍ତ କାହିଁକି ! ପୁଣି ଆପଣଙ୍କ ଭଳି ଲୋକ !"

"ବେଳେବେଳେ ଏମିତି ପରିସ୍ଥିତି ସୃଷ୍ଟି ହୁଏ ଯେ, ମଣିଷର ଧୈର୍ଯ୍ୟର ପାହାଡ଼ ଭାଙ୍ଗି ଚୂରମାର ହୋଇଯାଏ ସାର୍ । ମୁଁ ତ ଛାର ଜଣେ । ଏଇ ଗତକାଲିର ଘଟଣା, ଅଫିସ୍‌ରେ ପିଅନ ରାମଦାସ ସହିତ ଗୁଡ଼ାଏ ବଚସା ହୋଇଗଲା ଅଯଥାରେ... ଢୋକ ଗିଳିଲେ ପରିଡ଼ାଏ । ସଂକ୍ଷିପ୍ତରେ ଘଟଣାକୁ କହିସାରି । କେତେ ଧୈର୍ଯ୍ୟ ଧରିବ ମଣିଷ କହିଲେ ସାର୍ । ସତରେ ବି ସେମାନେ ସରକାରଙ୍କ ସୁନାପୁଅ । ତାଙ୍କ ପାଇଁ ଚାକିରି ଥୁଆ । ଏମିତି କିଛି ନିଷିଦ୍ଧ ବାକ୍ୟ କହିନି ବି । ତଥାପି ଷ୍ଟକ୍‌ମ୍ୟାନ ମୁକୁନ୍ଦ ବାଉରୀ, ସୁଇପର ହରି ଗୋଛେଇତ, ଆଉ ଜଣେ ତହସିଲ ଅଫିସର ଲୋକ ଆସିଥିଲା ବାବୁଙ୍କ କୁକୁର ନେଇ" - ମିଶିଗଲେ ସମସ୍ତେ ଏକାଠି । କଥାରୁ କଥା ଉଠି, ପହଞ୍ଚିଲା କୋର୍ଟକଚେରି ଆଇନ୍ ପର୍ଯ୍ୟନ୍ତ । ଭଲ ଲାଗିଲାନି । କାହାକୁ

କିମିତି ବୁଝେଇବି- ସବୁ ତ ମୂର୍ଖ, ଅଶିକ୍ଷିତ । ଯାହା ବୁଝିଥିବେ..., ବଡ଼ ସ୍ୱର୍ଶକାତର ପରିସ୍ଥିତି । କଥାଳହସରେ ଦୁହେଁ ପହଞ୍ଚି ଯାଇଥିଲେ ଛକରେ । ଚଉତରା ଉପରେ ତାସ୍‌ପାଲି ସଜାଡୁଥିଲେ ହରିବଂଧୁ ପ୍ରଧାନେ । କଥାଟା କାନରେ ପଡ଼ିଲା ସାହାଣୀଙ୍କର; କହିଲେ, ଭାଗବତ କହିଛି ପରା – ହଠାତ୍ ମନେ ପଡ଼ିଲାନି । ହରିବଂଧୁ କଥା ଯୋଡ଼ିଲେ– "ଅଜ୍ଞକ ଲୋକ ଅଧିକାର" ଯୋଗ୍ୟ ହାତରେ ଅଧିକାର ରହିଲେ ସୁଫଳ ମିଳେ । ସରକାର ସିନା ସବୁ ସୁବିଧା ସୁଯୋଗ ଅଜାଡ଼ି ଦେଲେ, ତାକୁ ଠିକ୍ ବାଗରେ ବିନିଯୋଗ କରିବା ପାଇଁ ଜ୍ଞାନ ଦରକାର । ସେଇଟା ତ ନିଜର, ତାକୁ ଆଉ କିଏ ଦେବ ?

"ଯାହା କହିଲ ହରିବଂଧୁ, ଜନ୍ମ ସଂସ୍କାର ନଥିଲେ ଜ୍ଞାନ ଆସିବ କୁଆଡୁ ? ପୁରୁଷ ପୁରୁଷ ଧରି ଜ୍ଞାନ ମାଜି ହେଇ ଆସେ । ଇଂଜିନିୟର ବିଦ୍ୟା ହେଉକି, ଡାକ୍ତରୀ ବିଦ୍ୟା, କ'ଣ ସୋଜା କଥା, ମଣିଷ ଦିହରେ କଇଁଚି ଛୁରି ଚଳେଇବଟି । ପାନପିକ ପକେଇ ମୁହଁପୋଛି ଗାମୁଛାରେ କହିଲେ ସାହାଣୀଏ । ଇଏ ଚମତ୍କାରୀ ନୁହେଁ - "ଏକଦମ୍ ସତ, ଶଶି ରଥେ ସମର୍ଥନ କରି କହିଲେ । ପାଠପଢ଼ା ଓ ବ୍ୟାବହାରିକ ଜ୍ଞାନ ଉଭୟ ଥିବା ଦରକାର । ହେଲେ ଆଜିକାଲି ସଂରକ୍ଷଣ ବ୍ୟବସ୍ଥାରେ, ପିଲାଏ ପ୍ରତିଯୋଗିତାକୁ ସାମ୍ନା ନ କରି ସିଧା ଆସୁଛନ୍ତି । ଅନ୍ତତଃ ବିଜ୍ଞାନ କ୍ଷେତ୍ରରେ ଏଇ ଉପରଠାଉରିଆ ବ୍ୟବସ୍ଥାଟା ଉଚିତ ହେଉନି । ଏଇ ସଂରକ୍ଷଣ ବ୍ୟବସ୍ଥା କିଛି ପିଲାଙ୍କର ଶିଖିବାର ମନୋବୃତ୍ତିକୁ କୋହଳ କରିଦେଉଛି । ସହଜରେ ଯାହା ହାସଲ ହେଇ ପାରୁଛି, ତା'ପାଇଁ କଷ୍ଟକରି ଜଣେ କାହିଁକି ଶିଖିବ ?" ହରିବଂଧୁବାବୁ ତାସ୍ ସଜାଡୁ ସଜାଡୁ ଶଶି ସାରଙ୍କ କଥା ଶୁଣୁଥାନ୍ତି । କାନରେ ପଶି ପଶୁନଥାଏ ସବୁକଥା । ସେ ମାଟି କାଦୁଅର ମଣିଷ । ଗଛଲତାଙ୍କ କଥା ସେ ବୁଝନ୍ତି, ଗଛଲତାଏ ତାଙ୍କ କଥା ବୁଝନ୍ତି । ସେଥିରେ ସେ ମାହିର । ଏସବୁ ବଡ଼ବଡ଼ କଥା ତାଙ୍କ ମଗଜରେ ପଶେନି । ମାଗୁଣି ପରିଡ଼ାଏ ଖବରକାଗଜକୁ ମନଧ୍ୟାନ ଦେଇ ପଢୁଥାନ୍ତି । ରଥେ ତାଙ୍କୁ ଦେଖି ପଚାରିଲେ, 'ଆଜି କିଛି ନୂଆ ଖବର ଅଛି କି ମାଗୁଣିବାବୁ ?'

"ଖବର ଆଉ କ'ଣ ସାର୍ । ସେଇ 'ସଂରକ୍ଷଣ', 'କୋଟା', 'ରିଜର୍ଭେସନ'କୁ ନେଇଁ ତ ହଲ୍ଲା । ଚାକିରି, ପ୍ରମୋଶନ, ଆଡ଼ମିସନ୍ ସବୁଠି ଏଇ ସଂରକ୍ଷଣ । ପୁଣି ଏବେ ନାଁ ଲେଖା ଉତୁ ସ୍କୁଲ୍‌କଲେଜ୍‌ମାନଙ୍କରେ । ଏଇ ବ୍ୟବସ୍ଥାକୁ ନେଇଁ ସବୁଠି ଅଶାନ୍ତି । ଭଲ ନମ୍ବର ରଖି ମଧ ପିଲା ସିଟ୍ ପାଉନି - କୋର୍ଟ, କଚେରିର ଦ୍ୱାରସ୍ଥ ହେଉଛି । ଧାରଣା, ଘେରାଉ, ଆନ୍ଦୋଳନକୁ ଓହ୍ଲାଉଛନ୍ତି ପିଲାଏ । ଦୁଃଖ ଲାଗୁଛି ଏସବୁ ଶୁଣିଲା ବେଳକୁ ।

"ଏବେ ତ ଆମେ ସେଇକଥା ଆଲୋଚନା କରୁଥିଲେ । ପ୍ରତିଯୋଗିତାରେ ଆସିଲେ ଅସୁବିଧା ହୁଅନ୍ତାନି । ମେରିଟ୍‌କୁ ମାନ୍ୟତା ମିଳନ୍ତା । ଛାତ୍ର ସଂଖ୍ୟା ବି ବଢ଼ିଛି । ଝିଅପିଲା ବି ପଢ଼ିବାକୁ ବାହାରିଲେଣି । ନିଜନିଜ ଗାଁ କଲେଜରେ ପଢ଼ିବା ପାଇଁ ସୁବିଧା ଖୋଜୁଛନ୍ତି ସମସ୍ତେ । ସମ୍ଭବ ହେଉନି ଫଳରେ ଅଶାନ୍ତି । ବିଶେଷ କରି ଝିଅଙ୍କୁ ବାହାରକୁ ପଠେଇ ପଢ଼ାଇବା ସମ୍ଭବ

ନୁହେଁ ସେମାନଙ୍କୁ । ସିଟ୍ ଖଣ୍ଡେ ନିଜ ଗାଁରେ ମିଳିଗଲେ ବାହାହେଲାଯାଏ ପଢୁଥାନ୍ତୁ, ନା କ'ଣ କହୁଛନ୍ତି ସାର୍ ?"

"ଏମିତି କାହିଁକି କହୁଛନ୍ତି । ଗାନ୍ଧିଜୀ କହୁଥିଲେ ନାରୀଟିଏ ଶିକ୍ଷିତ ହେଲେ ସମାଜ ଶିକ୍ଷିତ ହେବ । ସମାଜରେ ନାରୀର ଭୂମିକା ଗୁରୁତ୍ୱପୂର୍ଣ୍ଣ । ତେଣୁ ନାରୀଶିକ୍ଷାକୁ ଅଗ୍ରାଧିକାର ଦେବାପାଇଁ ଯୁକ୍ତି କରୁଥିଲେ ବାପୁ । ସେ ଚାହୁଁଥିଲେ ପଛୁଆବର୍ଗ ନାରୀମାନେ ବି ଏ ସୁଯୋଗ ପାନ୍ତୁ ଓ ଆଗକୁ ଆସନ୍ତୁ । କେବଳ ଜାତିପ୍ରଥା ଉଠିଗଲେ ହେବନି । ସମସ୍ତଙ୍କ ସହିତ ସମାନ ହେବାକୁ ହେବ । ସେଥିପାଇଁ କିଛିବର୍ଷ ସେମାନଙ୍କୁ ସୁଯୋଗ ଦିଆଯାଉ । ଅବସ୍ଥା ସୁଧୁରିଗଲେ ହୁଏତ ନିୟମ ବ୍ୟବସ୍ଥା ସବୁ ଉଠିଯିବ । ତେଣିକି ସେମାନେ ପ୍ରତିଯୋଗିତା ବାଟ ଦେଇ ଆସିବେ ଦେଖାଯିବ ପଛେ ।"

"ହେଲେ ଏ ପ୍ରକାର ସ୍ଥିତି ତ ଏଯାଏ ବି ଆସିଲାନି । ସ୍ୱାଧୀନତାକୁ ସତଷଠୀ ବର୍ଷ ଛୁଇଁବ । ସମାଜ ବ୍ୟବସ୍ଥା ହେଉ କି ଶାସନ ବ୍ୟବସ୍ଥା, କୋଉଥିରେ ବି ସେ ଭଳି କିଛି ଖାସ୍ ପରିବର୍ତ୍ତନ ଆସିଛି ବୋଲି ମନେ ହେଉନି । ତେବେ ବି ହେଇଛି କିଛି ପରିବର୍ତ୍ତନ, ନ ହେଇଛି ତା' ନୁହେଁ, ଯିମିତି ଜାତିପ୍ରଥା କୋହଳ ହେଇଛି କିନ୍ତୁ 'ସଂରକ୍ଷଣ' ବ୍ୟବସ୍ଥା ପୂର୍ବଭଳି ଲାଗୁ ହୋଇ ରହିଛି କଡ଼ାକଡ଼ି ଭାବେ । ପଛୁଆ ବର୍ଗଙ୍କ ପାଇଁ ସବୁ ସୁବିଧା ସୁଯୋଗ ଦିଆଯାଉଛି । ବିପୁଳ ଅର୍ଥ ବ୍ୟୟ ହେଉଛି, ତଥାପି କୁହାଯାଉଛି ସେମାନଙ୍କ ଅବସ୍ଥା ସୁଧୁରିନି । 'କାହିଁକି ? ସାର୍, ଏକଥା ବି ମୁଁ ବୁଝିପାରୁନି ଯେ, ଯଦି ଜାତିପ୍ରଥା ଉଠିଗଲା, ପୁଣି 'ସଂରକ୍ଷଣ' ବ୍ୟବସ୍ଥା କାହା ପାଇଁ ??'

ଠିକ୍ ଏତିକି ବେଳକୁ ଦୂରରୁ ସାଇକଲ୍ ଘଣ୍ଟି ଶୁଭିଲା । ଅଟକିଗଲା ଆଲୋଚନା । ମାଗୁଣି ପରିଡ଼ା ଛକ ଆଡ଼କୁ ଚାହିଁଲେ, 'ଏଇ ତ ଆମ ଦିବାକର ବିନ୍ଧାଣିଏ ଆସିଲେଣି' ଏଥର ବେଶ୍ ଜମିବ ଆଲୋଚନା । ସାଇକେଲରୁ ଓହ୍ଲାଇ ହସହସ ମୁହଁରେ ଦିବାକର ଶଶିସାରଙ୍କୁ ପ୍ରଣାମ କରି ଚଉତରାକୁ ଆଉଜେଇ ରଖିଲେ ସାଇକଲକୁ । ସୁଦାମପୁର ବ୍ଲକ୍ ଅଫିସର ବଡ଼ବାବୁ ଦିବାକର ବିନ୍ଧାଣିଏ । ଶଶିରଥଙ୍କ ପ୍ରିୟ ଛାତ୍ର; ରଥେ ଭାରି ପ୍ରଶଂସା କରନ୍ତି । ପଚାରିଲେ, "ଆଜି ରବିବାର ଅଫିସ ଛୁଟି ବୋଲି ଆମଆଡ଼େ ମୁହଁ ଦିଶିଲା ନୁହେଁ ?" 'ଘରକୁ ଫେରୁ ଫେରୁ ସଂଧ୍ୟା । ସମୟ ପାଏନି କୁଆଡ଼େ । ଆପଣ କିମିତି ଅଛନ୍ତି କହୁକହୁ ବସି ପଡ଼ିଲେ ମାଗୁଣିବାବୁଙ୍କ ପାଖରେ । ଖବରକାଗଜକୁ ଚାହିଁ କହିଲେ, କିଛି ଗୋଟାଏ ଆଲୋଚନା ଚାଲିଥିଲା ବୋଧେ । ମୁଁ ଆସିଲାରୁ ଅଟକିଗଲା...

"ଆଲୋଚନା ଆଉ କ'ଣ ହେ... ସବୁଠି ତ ସେଇ 'ସଂରକ୍ଷଣ' ପ୍ରସଙ୍ଗ । ଯୋଜନା ବାଟେ ଯୋଜନା ଚାଲିଛି । ଲକ୍ଷ୍ୟ ପୂରଣରେ ପ୍ରଶ୍ନ ନାହିଁ । ଯିଏ ଯୋଉଠି ଥିଲୁ ସେଇଠି ଠିଆ ହେଇଛୁ ଏବେବି । ପରିସ୍ଥିତି ତ ସୁଧୁରିବା ଦିଶୁନି । ସେଥିରେ ଗୋଟିଏ ପ୍ରକାର ନୁହେଁ, କେତେ ପ୍ରକାରର 'ସଂରକ୍ଷଣ'... କିଛି ବୁଝି ହେଉନି, ସେଇ କଥା ପଚାରୁଥିଲି..."

"ସେ କଥା କାହିଁକି କହୁଛନ୍ତି; ଥରେ ଯୋଜନାଟିଏ ଆରମ୍ଭ ହେଲେ, ସିଏ ଆଉ ବନ୍ଦ ହୁଏନି । ସେ ମରୁଡ଼ି ହେଉ କି ବନ୍ୟା, ଅଂଶୁଘାତ ହେଉ କି ମଶା ଅଭିଯାନ, ବୃକ୍ଷ ରୋପଣ ହେଉ ଅଥବା କୁଟୀର ଯୋଜନା । ମଧ୍ୟାହ୍ନ ଖାଦ୍ୟ ଯୋଜନା ହେଉ କି ବି.ପି.ଏଲ୍. ଯୋଜନା ଚାଲିଥାଏ ତା' ବାଟରେ । ଅବସ୍ଥା କେବେ ସୁଧୁରେ ନାହିଁ । ଲକ୍ଷ୍ୟ କେବେ ହାସଲ ହୁଏନି । ସରକାର 'ଟାର୍ଗେଟ'କୁ ନେଇଁ ପ୍ରଶ୍ନ କରୁଥାନ୍ତି । ବରବାଦ୍, ବାଟମାରଣା, ହରିଲୁଟି ବି ହୁଏ । କଳାବଜାରୀଙ୍କ ହାତ ଚିକ୍କଣ ହୁଏ - ଅଭିଯୋଗ ଆସେ - କମିଟି ଗଢ଼ା ହୁଏ - କମିସନ୍ ବସେ । ନିର୍ବାଚନ ହୁଏ ନେତାଏ ଭୋଟ ପା'ନ୍ତି । ସାଧାରଣ ଜନତାର ଆଶା ତେଜେ - କାଳେ ଆମ ଦୁଃଖ ଲିଭିବ - କିଛି ହୁଏନା ବରଂ ପୁରୁଣା ସମସ୍ୟା ସାଂଗକୁ ନୂଆ ସମସ୍ୟା ବି ଜନ୍ମ ନିଏ । ଇଏ ଆମ ଶାସନକଳର ସ୍ୱାଭାବିକ ପ୍ରକ୍ରିୟା - ବୁଝିଲେ ଆଜ୍ଞା ।" ଦିବାକର ଏକା ନିଃଶ୍ୱାସରେ, ଶାସନକଳର ଚେହେରାଟା ଥୋଇଦେଇ ରୁମାଲ୍‌ରେ ମୁହଁ ପୋଛିଲେ । ସବୁ ତାଙ୍କ ଜିଭ ଅଗରେ ଥୁଆ । ନିତି ତ ଡିଲ୍ କରନ୍ତି ଏସବୁ ।

"ଚଉତରାର ଶ୍ରୋତାମାନେ ଆବାକାବା ହେଇ ଶୁଣୁଥିଲେ ତାଙ୍କ କଥା, ଭାଷଣ । ତଥାପି ସାହାଣୀଏ ବୁଝି ନ ପାରି ପ୍ରଶ୍ନକଲେ, ଏମତି କାହିଁକି ହୁଏ ପୁଅ ? ଏତେ ପଇସା ଖର୍ଚ୍ଚ ହେଇ ଯୋଜନା ହେଉଛି ଲୋକ କଲ୍ୟାଣ ପାଇଁ ଅଥଚ ଲକ୍ଷ୍ୟ ହାସଲରେ ଅସୁବିଧା କୋଉଠି ? ଖଇଚ କୋଉଠି ତ ହେଉଥିବ ।"

"ଅସୁବିଧା କୋଉଠି ଖୋଜିବାକୁ ଗଲେ, ଆମକୁ ସିଧାରାସ୍ତା ଛାଡ଼ି, ଗୁଡ଼ାଏ ଗଳିକନ୍ଦି, ବଙ୍କାରାସ୍ତାରେ ପଶିବାକୁ ପଡ଼ିବ । ସେଇସବୁ ଖସଡ଼ା ଅନ୍ଧାରିଆ ରାସ୍ତାରେ ଯିବା ଭାରି କଷ୍ଟ ମଉସା । ମୋର ଛୋଟ ମୁଣ୍ଡ... ଛୋଟ ଚକିରିଆ ମୁଁ - ସବୁକଥା ତ ଜାଣିନି, ବୁଝେଇ ପାରିବିନି ସହଜରେ । କଥାର ମୋଡ଼ ବଦଳେଇବାକୁ ଚେଷ୍ଟା କଲେ ଦିବାକର ବିନ୍ଧାଣୀ ।"

"କିଛି ବୁଝିହେଲାନି ବାପ, ନିଜ ଅଜ୍ଞତାକୁ ସିଧାସଳଖ ଥୋଇ ସୁନାକର ମହାନ୍ତିଏ ପ୍ରଶ୍ନକଲେ । କଥାଗୁଡ଼ା ଜଟିଳ ଲାଗୁଛି ଆମକୁ ।"

"ଜଟିଳ ଲାଗିବ ସୁନାକର... ତେବେ ଏତିକି ଜାଣ ଯୋଉଦିନଠୁ ଦେଶ ଗଢ଼ିବାର ନିଶା, ମଣିଷ ଗଢ଼ିବାର ନିଶା ଛାଡ଼ି ଆମେ ସ୍ୱାର୍ଥ ଖୋଜିଲୁ, କ୍ଷମତା ସିଂହାସନର ସ୍ୱପ୍ନ ଆମକୁ ଘାରିଲା, ଭୋଟ ରାଜନୀତିର ଖେଳପଡ଼ିଆକୁ ଓହ୍ଲାଇଲୁ, ସେଇଦିନଠୁ ଏଇସବୁ ଅସୁବିଧା ଆରମ୍ଭ ହେଲା, ସେଇକଥା କହୁଛି ଦିବାକର ।"

"ଦିବାକର ମାଠିଆରୁ ପାଣି ଗ୍ଲାସେ ପିଇ କହିଲେ, ତେବେ ଆମ ଦେଶର ବିକାଶଧାରାରେ ପଛୁଆବର୍ଗର ମଣିଷଙ୍କୁ ଆଗକୁ ଆଣିବା ପାଇଁ, ଅଥବା ଗରୀବ, ଅଶିକ୍ଷିତ, ଆଦିବାସୀଙ୍କୁ ସାମିଲ କରିବା ପାଇଁ ତ ସରକାର ବହୁ ଯୋଜନା, ପ୍ରକଳ୍ପ, ପାଣ୍ଠିର ବ୍ୟବସ୍ଥା କରିଛନ୍ତି । ତା' ସହିତ କିଛି ଜାତୀୟ ସମସ୍ୟା ମଧ୍ୟ ରହିଛି ତାଙ୍କ ଆଗରେ, ଯାର ମାନ୍ୟତା, ଗୁରୁତ୍ୱ ଏବଂ ସ୍ଥାୟୀତ୍ୱ ବେଶି, ସେସବୁ ସମସ୍ୟାମାନଙ୍କ ଭିତରୁ 'ସଂରକ୍ଷଣ' ବ୍ୟବସ୍ଥା ହେଲା

ଗୋଟିଏ । ଆରମ୍ଭ ହେଲାବେଳେ ଏହାର ସ୍ଥିତି ଯାହା ଥିଲା କ୍ରମଶଃ ଏହା ଜଟିଳ ହେବାକୁ ଆରମ୍ଭ କଲାଣି ।"

"ହେବାକଥା ଦିବାକର, ଏତେବଡ଼ ଦେଶ, ପୁଣି ଜନବହୁଳ, ବହୁଗୋଷ୍ଠି, ଜାତି, ଦଳ, ଭାଷାଭାଷୀ ବି ଅନେକ । ତା' ଭିତରେ ଶାଖା, ପ୍ରଶାଖା, ଉପଶାଖା ହେଇ ବହୁ ବିଭାଜନର ସମଷ୍ଟି । ପ୍ରତ୍ୟେକ ନିଜ ସ୍ୱାର୍ଥ ଚାହିଁବେ । ତେଣୁ ସମସ୍ୟା ଉପୁଜିବ । ଗୋଟାଏ ସ୍ୱତନ୍ତ୍ର ବ୍ୟବସ୍ଥାକୁ କାର୍ଯ୍ୟକାରୀ କରେଇବା ଏତେ ସହଜ ନୁହେଁ ।"

"ମାଗୁଣି ପରିଡ଼ାଏ ଶଶି ସାର୍‌ଙ୍କ କଥାକୁ ସମର୍ଥନ କରି କହିଲେ 'ମୁଁ ବି ମାନୁଛି, ତେବେ ଏକଥା କହିଲେ ଠିକ୍ ହେବ ଯେ, ଆମେ କେବଳ ଜାତିପ୍ରଥା ଉଠିଗଲା ବୋଲି କହିଚାଲିଛୁ । କିନ୍ତୁ ସତରେ ତା'ର ବିଲୋପ ହୋଇନି । କେବଳ ସମାଜ ତାକୁ କିଛିଟା ସରଳୀକରଣ କରିଦେଇଛି । ନା, କ'ଣ କହୁଛନ୍ତି ସାର୍ ? ନହେଲେ ଏଇ ସଂରକ୍ଷଣ ବ୍ୟବସ୍ଥା ଏତେ କଡ଼ାକଡ଼ି ଭାବେ ଲାଗୁ ହେଉଥାନ୍ତା କାହିଁକି ? ଏଇ 'ସଂରକ୍ଷଣ ବ୍ୟବସ୍ଥା' ହିଁ ତ ମନେପକେଇ ଦେଉଛି ପ୍ରତ୍ୟେକ ମୁହୂର୍ତ୍ତରେ ଯେ ଆମଦେଶରୁ ଜାତିପ୍ରଥା ଉଠିନି, ଶ୍ରେଣୀ ବିଭେଦ ରହିଛି । ଯିଏ ଶୁଣିବ ଏକଥା ସେ କହିବ ।"

"ନିହାତି ଭୁଲ ତର୍ଜମା ଆପଣ କରିନାହାନ୍ତି । ସବୁ ମଣିଷ ଆଜିବି ସମାନ ହେଇ ନାହାନ୍ତି । ଗାନ୍ଧିଜୀଙ୍କ ସେଇ ସ୍ୱପ୍ନ, ସ୍ୱପ୍ନ ହେଇ ରହିଛି ଅଧାପନ୍ତାରିଆ ବାଟରେ । ଆମ ସାମାଜିକ ଚେତନାକୁ ଆହୁରି ସୁଧାରିବାକୁ ପଡ଼ିବ । ନଚେତ୍ ଏହା ସମାଜର ଏକ ଦୂରାରୋଗ୍ୟ ବ୍ୟାଧି ହୋଇ ରହିଯିବ - ଅନ୍ୟ ଦିଗଟି ହେଲା ଆମ ନିର୍ବାଚନ । ସେଥିରେ ବି ସ୍ୱଚ୍ଛତା ଦରକାର ହେଲେ ସେଥିରେ ଆମ ସ୍ୱାର୍ଥ ରହିଯାଇଛି । କଥାରେ ମୁଣ୍ଡି ମାରିଲେ ଶଶି ମାଷ୍ଟ୍ରେ ।"

ମନଧ୍ୟାନ ଦେଇ ସମସ୍ତେ ଶୁଣୁଥିଲେ ମାଷ୍ଟ୍ରଙ୍କ କଥା । ମୁକ୍ତାପୁର ଲୋକଙ୍କ ଆଖିରେ ଶଶି ରଥଙ୍କ ସ୍ଥାନ ସ୍ୱତନ୍ତ୍ର । କେତେ ଜୀବନକୁ ସଜାଡ଼ିଛନ୍ତି ସେ । କେତେ ଜ୍ଞାନ ବାଣ୍ଟିଛନ୍ତି, ମଣିଷ ଗଢ଼ିଛନ୍ତି । ତାଙ୍କ କଥାରେ ଏପାଖସେପାଖ ନାହିଁ କି ଉପରଠାଉରିଆ ନାହିଁ । ଆଲୋଚନାର ଉଷ୍ମତା ଭିତରେ ହଠାତ୍ ସାହାଣୀଙ୍କ ଦୃଷ୍ଟି ବୁଲି ଗଛ ଆଡ଼କୁ ପହଁରିଗଲା । ହସ ଚହଟି ଉଠିଲା ମୁହଁରେ । ଆଖି ଉପରୁ ଖସି ଆସୁଥିବା ଚଷମାକୁ ନାକ ଉପରକୁ ଟେକିଦେଇ ଗଦ୍‌ଗଦେଇ ଉଠିଲେ ... ଆରେ ଅପୂର୍ବ ! ଶର୍ମା ଆପଣେ, ଏତେବେଳେ ଇଆଡୁ କୁଆଡ଼େ ? କୋଉଠି କର୍ମକର୍ମାଣୀ ଥିଲା ନା କ'ଣ । ଆସ, ଆସ, ବସିଯାଅ ଘଡ଼ିଏ । ତାଳପତ୍ର ଆସନଟିଏ ବଢ଼େଇଦେଲେ ବସିବା ପାଇଁ । ବସିଯାଅ, ତମେ ହେଲ ଶାସ୍ତ୍ରଜ୍ଞ, ତ୍ରିକାଳଦର୍ଶୀ । ହାତରେ ପୋଥିପାଞ୍ଜି, ନଖ ଦର୍ପଣରେ ସବୁକଥା ଥୁଆ । ତମେ ନ ଥିଲେ ସଭା ସୁନ୍ଦର ଦିଶେନି । ସମସ୍ତେ ଅଛନ୍ତି ଆଲୋଚନା ପଡ଼ିଛି, ଗମ୍ଭୀର ପ୍ରସଙ୍ଗ । ଭଲହେଲା ଆସିଲ । ମାର୍କଣ୍ଡ ରଥଶର୍ମା । ଗୋଲମଟୋଲ ମଣିଷଟି । କପାଳରେ ତିଳକ, ସରୁଧଡ଼ିଆ ସୂତାମଠା, ସରିସରି ହେଇ ଛାତିରୁ ପେଟଯାଏ ଚନ୍ଦନବୋଳା । ପାଟିରୁ ପାନସିଠା କାଢ଼ି ଫୋପାଡୁ ଫୋପାଡୁ କହିଲେ, ଆଜି

ଦାସମହାପାତ୍ରଙ୍କ ଘରେ ଶ୍ରାଦ୍ଧକର୍ମ ଥିଲା ଯେ, ପିଣ୍ଡ ରନ୍ଧା ହୋଇନି - ଶର୍ମାଏ କାନ୍ଧରୁ ସଞ୍ଚାସାମଗ୍ରୀର ଗଣ୍ଠିଳି ଓ ଛତାକୁ ଚଉତରା ଉପରେ ଥୋଇ ଗାମୁଛାରେ ଦେହମୁହଁ ପୋଛି ହେଲେ । ହରିବଂଧୁ ପାଦଛୁଇଁ ପ୍ରଣାମ କଲେ, ଅଭୟମୁଦ୍ରାରେ କଲ୍ୟାଣ କରୁକରୁ ପଦ୍ମାସନ ପକେଇ ବସିଲେ ଶର୍ମାଏ ସାଷ୍ଟାମ ହେଇ । କହିଲେ, ବିଧୁ ବଡ଼ଜେନାଙ୍କ ଘରଆଡୁ ଆସୁଛି ପରା ଦ୍ୱାଦଶୀ ସଞ୍ଚାନେଇ । ସାନପୁଅଟା ଅନେକଦିନରୁ ବହି ଦି'ଖଣ୍ଡ ଆଣିବାକୁ କହିଲାଣି, କିଣିତ ପାରିବିନି । ଜେନାଙ୍କ ଝିଅ ତେଣୁ ତା' ପୁରୁଣା ବହି ଖୋଜିଦେବ କହିଥିଲା, ତାକୁ ମାଗି ଆଣିଲି । ଦେବା ବୋଉ କହିଥିଲା, ସଉଦା ଆଣିବା ପାଇଁ ଗୁଣାସାହୁ ଦୋକାନରୁ... ହାକୁଟି ମାରିଲେ ଶର୍ମାଏ... ।

ବଉଳଗଛ ମୂଳ ପାଣିମାଠିଆରୁ ଗିଲାସେ ପାଣି ଆଣି ବଢ଼େଇଦେଲେ ହରିବଂଧୁ, ଭାରି ଖରା ହେଉଛି ଏବେ... ପିଇଦେଇ ଟିକିଏ ସାଷ୍ଟାମ ହୁଅନ୍ତୁ ଆଗେ । ଢକଢ଼କ କରି ପାଣି ଗିଲାସକ ପିଇଦେଇ କହିଲେ, ଭାବିଲି, ବେଳତ ଅଛି ଟିକିଏ ବୁଲିଆସେ ଛକଆଡୁ ।

ଶଶିରଥେ ଲକ୍ଷ୍ୟକଲେ ମଣିଷଟାର ମୁହଁରେ ସରସତା ନାହିଁ । ଯେମିତି ବୋଝେ ଚିନ୍ତାକୁ ବୋହି ଧରିଛନ୍ତି । ଅସ୍ୱାଭାବିକ ଲାଗିଲା ନିତି ସଂଜସକାଳେ ଖୋଲାମନରେ ସଭିଙ୍କୁ ଆଶୀର୍ବଚନ ଶୁଣାଉଥିବା ମଣିଷଟା ଆଜି ଏତେ ଗମ୍ଭୀର କାହିଁକି !

ହରିବଂଧୁ ପଚାରିଲେ, ସଉଦା ତ ଦିଶୁନି କାହିଁ, ପୁଣି ଯିବେ ଆଣିବା ପାଇଁ ?

– "ଆଉ ଆଣିଲି କୋଉଠି, କିଏ ଦେବ ? ଆଜିକାଲି ଯୋଉ ସମୟ, ବଂଚି ହେବନି ପିଲାଛୁଆଙ୍କୁ ନେଇଁ ଏଇ ସଂସାରରେ । କଥାଗୁଡ଼ାକ ଅସ୍ପଷ୍ଟ ଏବଂ ହତାଶିଆ ଶୁଭିଲା ଶେଷ ଆଡ଼କୁ । ଶଶିମାଷ୍ଟ୍ରେ କଥାଛଡ଼େଇ କହିଲେ, କାହିଁକି ଶର୍ମାଏ, କ'ଣ ହେଲାକି, କିଛି ଅଘଟଣ ଘଟିଲା କି ?

– ମୋ ପାଇଁ ଆଉ ଘଟଣା କାହିଁ ଆଜ୍ଞା, ନିଦରୁ ଉଠିବାଠୁ ନିଦ ଯିବା ଯାଏ, କେବଳ ଚାରିଟା ପ୍ରାଣୀଙ୍କୁ ବଂଚେଇ ରଖିବାର ପ୍ରୟାସ କରୁକରୁ ଦିନ ଯାଉଛି । ସେଥିରେ ହଜାରେ ମାନ ଅପମାନ, ନିନ୍ଦା, ମନସ୍ତାପ, ମୁହଁ ଛିଞ୍ଚଡ଼ା, ହେୟପଣ । ଦୀର୍ଘଶ୍ୱାସ ନେଇ କପାଳରୁ ଝାଳ ପୋଛିଲେ ଶର୍ମାଏ ।

– "କିଏ କ'ଣ କହିଲାକି ? ସାହାଣୀଏ ଜପାମାଳିକୁ ମୁଣ୍ଡରେ ଲଗାଇ ପ୍ରଶ୍ନକଲେ ବ୍ୟସ୍ତହେଇ ।"

– "ଏଇ ଆମ ଗୁଣ ସାହୁ... ମୁହେଁ ମୁହେଁ ମନା କରିଦେଲା, ସଉଦା ଦେବନି, ଆଗ ଟଙ୍କା ଥୁଅ, ତା'ପରେ ନେବ ଜିନିଷ । ଆଗରୁ ଏମିତି କେବେ କହିନଥିଲା ମୁଁ କ'ଣ ଅଚିହ୍ନା ଗରାଖ – ବର୍ଷବର୍ଷ ଧରି ତୋ' ଦୋକାନରୁ ସଉଦା ନେଇ ଆସିଚି । ମୁଁ ଅଭାବୀ ମଣିଷ ସତ, ଟଙ୍କା ଦେବାରେ ଦି'ଚାରିଦିନ ଡେରିହୁଏ । ଯା' ବୋଲି ମୁଁ ତ ବାକି ରଖେନା, କି, ସେ ମୋତେ ଦୟା କରେନା" – ଶର୍ମାଏ ଉତ୍ତେଜିତ ହେଇ ପଡୁଥିଲେ, ଝାଳେଇ ଯାଉଥିଲେ ଗଛ ଛାଇରେ ବସି ।

– "କିଛି ଭଲକଥା କଲାନି ଗୁଣ, ଉଚ୍ଚବର୍ଣ୍ଣରେ ଶ୍ରେଷ୍ଠ ଯର୍ଜୁବେଦୀ ବ୍ରାହ୍ମଣ, ତୋ ଦୁଆରେ ଠିଆହେଲେ ସଉଦା ପାଇଁ, ସିଏ କ'ଣ କମ୍ କଥା । ତା'ଛଡ଼ା ଆମ ସଂପର୍କ ତ ଦିନେ ଅଧେର ନୁହେଁ – କାଳକ ଗଲାଣି ଏମିତି । ଏକା ଆକାଶ ତଳେ ରହିଛେ ସମସ୍ତେ – ଯିବା ବି ଏକା ମଶାଣିକୁ – ଗାଁ ଭାଇ । କି ଅବିବେକୀ ପଣିଆ – କାହିଁକି ଏ ଗର୍ବ, କୋଉ କଥାକୁ... ଛିଃ ଛିଃ ଛିଃ, ସମସ୍ତେ ଏକାସ୍ୱରରେ ଝିଂଘାସିଲେ ।

– ନିଜପକ୍ଷ ସମର୍ଥନ ମିଳିବା ଦେଖି ଶର୍ମା ଟିକିଏ ସାହସ ପାଇ କହିଲେ, ଗର୍ବ ହେବନି, ସହଜ ରୋଜଗାର ବ୍ୟବସାୟ ବଢୁଛି ଏଣେ । ମାସକୁ ମାସ ହାତକୁ ପୁଳା ପୁଳା ଟଙ୍କା ଆସିଲେ ଆଉ ଚନ୍ଦ୍ରସୂର୍ଯ୍ୟ ଦିଶେ କି ? ପୁଅ ଦିହେଁ ଚାକିରିରେ ପଶିଲେ । ଗୋଡ଼ତଳେ ଲାଗୁନି । ନରେନ୍ଦ୍ର ଭଳି କଥା କହୁଛି...

– ଯାହା କହିଲ ପୁରୋହିତେ, ସରକାରୀ ଅନୁକଂପା । 'କୋଟା'ରେ ପାଇଛନ୍ତି ଚାକିରି, ସେମିତି ବଡ଼ ଚାକିରି ନୁହେଁ । ବେଶି ପାଠ ମଧ୍ୟ ନାହିଁ – ଜଣେ ଇସ୍କୁଲ ପିଅନ, ଆଉ ଜଣେ ତହସିଲ ଅଫିସରେ ଅଛି ବୋଧେ । ଯା'ହେଲେ ବି ଚାକିରି ତ, ମାସ ଶେଷରେ ଦରମା ଥୁଆ । ଚିନ୍ତାଦକ ନାହିଁ ନିଶ୍ଚିନ୍ତ ।

–ସବୁସେଇ 'ସଂରକ୍ଷଣ'ର କରାମତି । ଉଚ୍ଚଜାତି, ଉଚ୍ଚବଂଶ ଜ୍ଞାନବୁଦ୍ଧି ଥିଲେ କ'ଣ ହେବ, ପେଟ ପୋଷିବାକୁ ସମର୍ଥ ନହେଲେ, ଶର୍ମାଏ କହିଲେ । କ'ଣ କହିବି ଆଜ୍ଞା, ଲାଜ ଲାଗୁଛି କହିବାକୁ, ଏଇ ଆମ 'ଦେବା', ଦିନେ ମୋ ସହିତ ଯୁକ୍ତିକରି କାନ୍ଧରୁ ପଇତାକାଢ଼ି ଫୋପାଡ଼ିଦେଲା । କହିଲା, ଧିକ ତମର ଉଚ୍ଚପଣର ଗରିମା – ତୁମର ଶ୍ରେଷ୍ଠ ବ୍ରାହ୍ମଣତ୍ୱ ମୋତେ ଆଜି ଅଦରକାରୀ, ଅଯୋଗ୍ୟ ଘୋଷିତ କଲା । ଏଣିକି ମୋତେ ବୋଝ ଭଳି ଲାଗୁଛି ରଥଶର୍ମା ସାଙ୍ଗିଆଟା । ବରଂ କିରସ୍ତାନ ହେଇଗଲେ କିଛି ସାହାଯ୍ୟ ମିଳିବ ସେମାନଙ୍କଠୁ । ନହେଲେ ନାଏକ, ଗୋଛେଇତ କି ମହାନନ୍ଦିଆ ହୋଇଯିବ ପଛେ... ତର୍କ ଶାସ୍ତ୍ର, ସଂସ୍କାର କି ଆଦର୍ଶବାଣୀର କିଛି ମୂଲ୍ୟ ନାହିଁ, ମୋ ପେଟ ପୂରିବନି ଏଥିରେ ।

କ'ଣ ବୁଝେଇବି ବାଇଶିବର୍ଷର ପୁଅକୁ । କି ଧୈର୍ଯ୍ୟ ଦେବି ? ପାହାଡ଼ ଭାଙ୍ଗିବା ବୟସରେ ଯଦି ପିଲାଏ ବେକାର ବସିବେ, ମୁଣ୍ଡ ଠିକ୍ ରହିବ କି ? ଦିନୁଦିନ ପରିସ୍ଥିତି ସାଂଘାତିକ ହେଉଛି । ନିଜ ବାପପଣକୁ ଧିକ୍କାର କରିବାକୁ ଯାଇ ମାର୍କଣ୍ଡ ଶର୍ମାଙ୍କ ମୁହଁ ଶ୍ରାବଣ ଆକାଶ ଭଳି ଓଜନୀୟା ଦିଶିଲା । ଶର୍ମାଙ୍କ ମାନସିକ ଯନ୍ତ୍ରଣାରେ ସମଭାଗୀ ହୋଇ ମାଗୁଣି ପରିଡ଼ା କହିଲେ– ମୁଁ ବି ତ ସେଇମିତି ଜଣେ ହତଭାଗ୍ୟ ବାପ । ଆପଣଙ୍କ ଯନ୍ତ୍ରଣାକୁ ବୁଝିପାରୁଛି । ଜୀବନର ମୂଲ୍ୟବୋଧ ପ୍ରତି ଆସ୍ଥା ନାହିଁ ସେମାନଙ୍କର ଆଉ ।

ଶଶି ରଥଙ୍କ ମନ ଓଦା ହୋଇଗଲା ମାର୍କଣ୍ଡ ଶର୍ମାଙ୍କ ଖେଦୋକ୍ତିରେ । ମଣିଷଟାକୁ ଖୁବ୍ ବାଧିଛି । ଆଜିର ବହୁବିଧ ସମସ୍ୟା ଭିତରୁ ଏଇ 'ସଂରକ୍ଷଣ' ସମସ୍ୟା – ଗରୀବ-ତଳିଆ ଉଚ୍ଚବର୍ଗର (ମେଧାବୀ ହେଉ କି ସାଧାରଣ) ଯୁବପିଢ଼ିର ଆତ୍ମବିଶ୍ୱାସକୁ ଦୋହଲେଇ ଦେଇଛି ।

ତା'ଛଡ଼ା ଗରୀବ ହେଲେ ମଧ୍ୟ ମାର୍କଣ୍ଡ ଶର୍ମା ଜଣେ ସଂସ୍କୃତିସଂପନ୍ନ ଶିକ୍ଷିତ ମଣିଷ । ଆଉ ଚାରିଜଣ ବ୍ରାହ୍ମଣଙ୍କ ଭଳି କର୍ମକାଣ୍ଡ ଚାରିପୃଷ୍ଠା ଘୋଷିମାଜି କାମଚଳାଇ ରୋଜଗାର କରିବାର ମତଲବ ନାହିଁ । ଖୁବ୍ ସ୍ୱାଭିମାନୀ । ପାଖ ନୀଳକଣ୍ଠପୁର ଶାସନରେ ପୈତୃକ ଘର । ବାପା ମୁକୁନ୍ଦ ଶର୍ମା ଜଣେ ସଂସ୍କୃତ ପଣ୍ଡିତ । କୌଳିକ କର୍ମ ସହିତ ଶିକ୍ଷାଦାନ ବି କରୁଥିଲେ ବେଦ ବିଦ୍ୟାଳୟ ଏବଂ ସଂସ୍କୃତ ଶିକ୍ଷାୟତନରେ ।

ନିଜେ ମାର୍କଣ୍ଡ ଶର୍ମା ମଧ୍ୟ ପ୍ରଥମେ ମୁକ୍ତାପୁର ଆସିଲାବେଳକୁ ଚତୁର୍ଥ ପଞ୍ଚମ ଶ୍ରେଣୀର ପିଲାଙ୍କୁ ଟ୍ୟୁସନ୍ କରୁଥିଲେ । ବାପାଙ୍କ ଦେହାନ୍ତ ପରେ କୌଳିକ ଯଜମାନୀର ଦାୟିତ୍ୱ କାନ୍ଧକୁ ନେବାକୁ ପଡ଼ିଲା । ଝିଅ ସୁନନ୍ଦାର ବାହାଘର ତୁଲେଇବାକୁ ଆସି ଶର୍ମାଏ ତାଙ୍କ ସହିତ ଦୁଃଖସୁଖ ବାଣ୍ଟିଥିଲେ । କହିଥିଲେ– "ବୁଝିଲେ ସାର ଗାଁ ଛାଡ଼ି ମୁଁ ଯଦି ଶ୍ରୀକ୍ଷେତ୍ର ଚାଲିଯା'ନ୍ତି, ସଂସାର ଚଳେଇବା ମୋ ପାଇଁ ଖୁବ୍ ସହଜ ହେଇଯା'ନ୍ତା, ତୀର୍ଥସ୍ଥଳ, ସବୁବେଳେ ବ୍ରାହ୍ମଣର ଆବଶ୍ୟକତା । ନିତି, ପର୍ବପର୍ବାଣି, ଯାଗଯଜ୍ଞ, ଶ୍ରାଦ୍ଧନିମିତ୍ତ । ଘରେ ଘରେ ଦିଅଁ, ମାଳମାଳ ଦୋକାନ । ଆଉ ଟିକେ ତଳକୁ ଖସିଲେ ରିକ୍ସା, ମୋଟର, ପାଞ୍ଚଦଶୁଟାରେ ଫୁଲ ଚନ୍ଦନ ମାରି ପାଣି ସିଞ୍ଚିଲେ ଚାଲୁ ଚାଲୁ ହାତକୁ ପଇସା ଆସିବ । ହେଲେ ମନ ଡାକିଲାନି ଜନ୍ମମାଟି, ଅବଧାନୀ ପରଂପରା, ପରୁଷପୁରୁଷର ଯଜମାନୀ, ମାନମର୍ଯ୍ୟାଦା – ସବୁକୁ ଛାଡ଼ି ପେଟପାଟଣା ପଇସାଲୋଭରେ ଦେଶାନ୍ତରୀ ହେବି କାହିଁକି ? ମୋ' ଗାଁ ମାଟି କ'ଣ ମୋତେ ଭାତ ଡାଲି ଯୋଗେଇ ପାରିବନି ? ମୋ ଭାଇବଂଧୁ, ଆତ୍ମୀୟ କ'ଣ ମୋ ସୁଖଦୁଃଖ ଭାଗ କରିବେନି ? ମୁଁ ଗଲେ ଆଉ କିଏ ତ ପୁଣି ଆସିବ କାମ ସମ୍ଭାଳିବାକୁ । କାମ ବି ଅଟକିବନି, ଚାଲିଥିବ ମଣିଷ ସଭ୍ୟତା ସାଥିରେ । ତାହେଲେ ମୁଁ ଗାଁ ମାଟି ଛାଡ଼ି ଯିବି କାହିଁକି ? ମୁଁ କରିବି ମୋ ଗାଁ, ବାପଦାଦୀ ଭାଇ କୁଟୁମ୍ବଙ୍କ ସେବା, ଏଇଯା ଭାବି ହିଁ ରହିଗଲି । ଆପଣମାନଙ୍କ ସ୍ନେହଶ୍ରଦ୍ଧାରେ ବାନ୍ଧିହେଇ, ମୋ' ସଂସାର ଚାଲିଛି ଗୋଟାଏ ପ୍ରକାରେ ଏ ପର୍ଯ୍ୟନ୍ତ ।

ଦିନେ ଦିନେ ଶର୍ମାଏ ବର୍ତ୍ତମାନର ବାଡ଼ ଡେ଼ଇଁ ଭବିଷ୍ୟତ ଆଡ଼କୁ ହାତ ବଢ଼ାନ୍ତି– ସ୍ୱପ୍ନ ଦେଖନ୍ତି ଏକ ସୁସ୍ଥ, ସୁରକ୍ଷିତ ଭବିଷ୍ୟତର । ପୁଅ ଦେବାଟା ଭଲ ପଢୁଚି । ଭାବିଛି ତାକୁ ଆଉ କୌଳିକ କର୍ମରେ ପୂରେଇବିନି । ଯଦି ବି.ଏ.ଟା ପାସ୍ କରିଯାଏ, ତା'ହେଲେ ଆପଣମାନଙ୍କ ଭରସାରେ ତାକୁ କୋଉ ସ୍କୁଲରେ ଟିଚରଟିଏ କରେଇବାକୁ ମୋର ଇଚ୍ଛା । ନିଜେ ତ ହୋଇପାରିଲିନି । ଦେଖାଯାଉ, ଈଶ୍ୱରଙ୍କ ଯାହା ବରାଦ ।

ସେଇ ମୁହୂର୍ତ୍ତରେ ଏଇ ପାଞ୍ଚଫୁଟିଆ ମଣିଷଟାର ବିଚାର ଓ ଦୃଷ୍ଟିକୋଣ ତାଙ୍କ ଆଖିରେ ବେଶ୍ ଉଚ୍ଚଦରର ମନେ ହେଇଥିଲା । ଲୋକଟା ସ୍ୱାର୍ଥୀ ନୁହେଁ, ବରଂ ତା'ଭିତରେ ଜଣେ ଦେଶପ୍ରେମୀ ବଂଚିରହିଛି । ନ ହେଲା ଏବେ ବଡ଼ମାପର । ଆପଣା ଗାଁ ମାଟି ଆଉ ତା' ମଣିଷମାନଙ୍କ କଥା ତ ଭାବିଛି । ଗାନ୍ଧି କହୁଥିଲେ, ଆଗ ନିଜକୁ, ନିଜ ଘରକୁ ସଜାଡ଼, ଦେଖିବ ଆପେଆପେ ସବୁ ସଜାଡ଼ି ହୋଇଯିବ । ସେଦିନର, ସେଇସବୁ ଦିବ୍ୟଭାବନା ଭିତରେ, ଆଜିର

ଏଇ ଦୁଃସ୍ଥିତି, ଭୟଙ୍କର ଜୀବନଯନ୍ତ୍ରଣାର ଚିହ୍ନବର୍ଣ୍ଣ ସୁଦ୍ଧା ନଥିଲା । ହତାଶା, ଭ୍ରଷ୍ଟାଚାର, ଦୁର୍ନୀତି ଭଳି ବ୍ୟାଧି ସାମାଜିକ ଜୀବନକୁ କବଳିତ କରିନଥିଲା କି ସାମାଜିକ ନ୍ୟାୟରୁ ବଂଚିତ ହେଉନଥିଲା... କିଏ ଜାଣିଥିଲା, ଦେବେନ୍ଦ୍ର, ରାଜେନ୍ଦ୍ରମାନଙ୍କର ସ୍ୱପ୍ନ ଏମିତି ଭାଙ୍ଗିଯିବ ! ଚଉତରାରେ ଚାଲିଥିବା ଆଲୋଚନା ଆଡ଼କୁ ଧ୍ୟାନ ନଥିଲା ତାଙ୍କର । ସେ ଭାବୁଥିଲେ ନିଜ ଢଙ୍ଗରେ, ତଉଲୁଥିଲେ ସେଦିନ ସହିତ ଆଜିକୁ... । ତାଙ୍କର ଭାବାନ୍ତର ଦିବାକରର ଦୃଷ୍ଟି ଆକର୍ଷଣ କଲା । "ସାର୍ ବୋଧେ କିଛି ଗୋଟାଏ ଗଭୀର ଚିନ୍ତାରେ ବୁଡ଼ି ଯାଇଛନ୍ତି !"

ଧ୍ୟାନ ଭାଙ୍ଗିଲା ଶଶି ରଥଙ୍କର । ସେ ନିମଗ୍ନତା ଭିତରେ ଥାଇ ସେ ଉତ୍ତର ଫେରେଇଲେ ଦିବାକରଙ୍କୁ । "ଭାବୁଥିଲି, ଆମେ ସମସ୍ତେ ଆଜି ସମୟର-ନିଆଁରେ ଜଳୁଥିବା ସଗରସୁତ; ଆଉ ଏଇ ମାର୍କଣ୍ଡ ଶର୍ମା ହେଉଛନ୍ତି, ଏଇ ଯନ୍ତ୍ରଣା ଜର୍ଜରିତ ଅସ୍ପୃତ ଜୀବନର ପ୍ରତିନିଧି ମାତ୍ର । ଜାଣ ଦିବାକର, ତମର ବିଶ୍ୱାସ ଅଛି କି ନାହିଁ ଜାଣେନା ମୋର କିନ୍ତୁ ସମୟ ଉପରେ ଅଖଣ୍ଡ ବିଶ୍ୱାସ ସେ ହିଁ ଦିନେ ଖୋଜି ଆଣିବ ସମାଧାନର-ଭଗୀରଥ ଆଉ ଗଙ୍ଗାଙ୍କୁ । ଆମ ଧୈର୍ଯ୍ୟର ଇଏ ଅଗ୍ନି ପରୀକ୍ଷା !"

– ଠିକ୍ କହିଛନ୍ତି ଆପଣ । ସମସ୍ତେ ଆମେ ଏକା ନାଆର ଯାତ୍ରୀ । ମାର୍କଣ୍ଡ ଶର୍ମାଙ୍କୁ ଉଦ୍ଦେଶ୍ୟକରି କହିଲେ ସୁନାକର ମହାନ୍ତି, ଆପଣ ଥୟ ଧରନ୍ତୁ । ଗୁଣ ତ ବ୍ୟବସାୟୀ, ଛୋଟ ବୁଦ୍ଧି, କୋଉ ମଣିଷରେ ଲେଖା ।

– ହରିବଂଧୁ କଥା ବଦଳେଇବାକୁ ଯାଇ ପଚାରିଲେ, ଆଜି ବୋଧେ ମହାପାତ୍ରଙ୍କ ଘରେ ପତ୍ର ପଡ଼ିବ ? ଏଇ ଯୋଉ ଖରା... କିଛି ଫଳାହାର କରି ବାହାରିଥିଲେ ତ ପୁରୋହିତ ଆପଣେ ?

– ହଁ, ଚୁଡ଼ା ଦି'ମୁଠା ପାଣିରେ ପକେଇ ଦେଇଥିଲା ଦେବା ବୋଉ । ସିଏ ବି ମହାପାତ୍ରଙ୍କ ଘରକୁ ଯାଇଛି କ'ଣ ସାହାଯ୍ୟ ଟିକେ କରିବ ବୋଲି । ମୁହୂର୍ତ୍ତେ ଦମ୍ ନେଇ ଶର୍ମାଏ ପୁଣି କହିଲେ, ଦେବା ବୋଉଟା ବି ଅବୁଝା । ପରିସ୍ଥିତି କଥା କିଛି ବୁଝୁନି । ମୋତେ ହିଁ ଦୋଷ ଦେଉଛି । କ'ଣ ନା, ସଂସାର ଚଳେଇବାରେ ମୁଁ ଅସମର୍ଥ । କ'ଣ କରିପାରିବି କହିଲେ, ମୋ ଶକ୍ତି, ମୋ ପହୁଞ୍ଚ ବି କେତେ । ଶିଳଶିଳପୁଆ ତ ଆକାଶରେ ଉଡୁଛନ୍ତି । ପିଲାଙ୍କୁ ସିନା ଦିଅକ୍ଷର ପାଠ ପଢ଼େଇଦେଲି । ଚାକିରି କୋଉଠୁ ଆଣିଦେବି ? ସେ ବି କ'ଣ ଜାଣିବ । ଭଲ ଚଳପକ୍ଷ ଘରର ଝିଅ ସେ । ଆମଘରକୁ ଆସି ଏବକୁ ଅଭାବ କ'ଣ ବୁଝୁଛି । ତା' ପାଇଁ ମୁଁ କିଛି କରିନି । ପଚାରିନିବି କେବେ ତୋର କ'ଣ ଦରକାର । ଅଭାବି ଘରର ଚେହେରା ତ ସବୁଠି ସମାନ... ଜାଣୁଛନ୍ତି । ହେଲେ 'ସଂରକ୍ଷଣ' ମୋ ଅଣ୍ଟା ଭାଙ୍ଗିଦେଲା । ଛୋଟ ଜାତି ସରକାରୀ ମୁହଁ ପାଇ ଉଦ୍ଧତ ହେଲେଣି ।

– "ସେକଥା କୁହନ୍ତୁ ନାହିଁ ପୁରୋହିତେ । ସତରେ ଏମାନଙ୍କର ମୁହଁ ବଢ଼ିଯାଇଛି । ଆଦିବାସୀଏ ବରଂ ନମ୍ର ସ୍ୱଭାବର – ଗୁରୁଜନଙ୍କ ପାଇଁ ମାନ୍ୟତା ଅଛି । ଆମେମାନେ ନିତି

ଅଫିସରେ ଏଭଳି ଔଦ୍ଧତ୍ୟକୁ ସାମ୍ନା କରୁଛୁ । କହୁଛି ଶୁଣନ୍ତୁ ଘଟଣାଟିଏ, ଅନେକ ଦିନତଳର । ଆମ ଅଫିସ ପିଅନ ଶୁକଦେବ ନାଏକ । ଆମେ ତାକୁ ଶୁକା ବୋଲି ହିଁ ଡାକୁ - ତା'ର କିଛି ଆପତ୍ତି ନ ଥିଲା ଆଗରୁ । ଏଇ କିଛି ମାସ ତଳେ, ଦିନେ ସେ ଅଭିଯୋଗ କଲା- "ମୋର ଆଜ୍ଞା ଗୋଟିଏ ନାଁ ଅଛି ଆପଣମାନଙ୍କ ଭଳି । ଶୁକଦେବ ବୋଲି ଡାକିପାରିବେନି ? ଆମେ ସମସ୍ତେ ଚାକିରି କରୁଛୁ, କିଏ କାହାର ଚାକର ନୁହେଁ ସେ କାଳ ଆଉ ନାହିଁ ବୁଝିଲେ ?"

ସେଦିନ ମୋ' ନିଜ ଭିତରେ ମୁଁ ଚମକି ପଡ଼ିଥିଲି । ନିଜ ପ୍ରତିକ୍ରିୟାକୁ ପ୍ରକାଶ କରିବା ପୂର୍ବରୁ, ମୋ ସହଯୋଗୀ ବଂଧୁ ରମେଶ ମୋତେ ରୋକିଦେଲା ହାତକୁଧରି । ମୋ' କାନ ପାଖରେ ଚୁପ୍‌କରି କହିଲା - ଜାଣିଛନ୍ତି ନା, ଆମ ଶୁକ ଝିଅ ସୁକାନ୍ତି ରାମପୁର ସରପଞ୍ଚଙ୍କ ସାନବୋହୂ । ଆସନ୍ତା ପଞ୍ଚାୟତ ନିର୍ବାଚନରେ 'ସଂରକ୍ଷିତ' ଆସନରୁ ସୁକାନ୍ତି ଲଢ଼ିବ ବୋଲି ଠିକ୍ ହେଇଛି । ଶୁକା, ଶୁକଦେବ ହେଇଯାଇଛି ଏବେ । ମୁଁ ବୁଝି ଯାଇଥିଲି ରମେଶ କ'ଣ କହିବାକୁ ଚାହୁଁଛି - କହିଲେ ଦିବାକର ବିନ୍ଧାଣୀ ।

- ବଡ଼ ଔଦ୍ଧତ୍ୟ ସତରେ । କିଏ ମନାକରୁଛି ହେ ତମକୁ ବଡ଼ହେବାକୁ । ହୁଅ । ସେମିତି ମନଟାକୁ ବି ବଡ଼ କର । ବିଚାରକୁ ଶୁଦ୍ଧ କର । ଏଡ଼େ ଗର୍ବ ଗରିମା କାହିଁକି ? ରାତାରାତି ଆକାଶକୁ ଉଠିଗଲେ କି ! କହିଲେ ଗୋପାଳ ସାହାଣୀଏ ଜପାମାଳିକୁ ମୁଣ୍ଡରେ ଛୁଆଁଇ । ସେ ପୁରୁଣା କାଳିଆ ଲୋକ - ପୁରୁଣା ବିଚାର ମଧ୍ୟ ।

- ଏଇ 'ସଂରକ୍ଷଣ' ପରା ମଣିଷ ମଣିଷ ଭିତରେ ତମେ-ଆମେର ଭେଦ ମଂଜି ପୋତୁଛି । ଏଣେ ଶାସନଭାର ସମ୍ଭାଳିବାକୁ ଯିଏ ସିଂହାସନରେ ବସିଛି, ସିଏ ହୁରି ଛାଡୁଛି ଯେ- ସମସ୍ତେ ଆମ ପାଇଁ ସମାନ । ଅଥଚ ବୟସ, ଯୋଗ୍ୟତା, ଦକ୍ଷତା, ମେଧାର କିଛି ମାନେ ରହୁନି । ଏଥିରେ ସାମାଜିକ ବିକାଶ କୁହ, କି ଦେଶର ପ୍ରଗତି କୁହ - କ'ଣ ହେବ ? ଯେଉଁଠି ସବୁ ମଣିଷ ସମାନ, ସେଠି ଧର୍ମ, ଜାତି, ଭାଷାର ବିଭେଦ ରହିବ କୁଆଡୁ ? କିନ୍ତୁ ରହିଛି । ପରୋକ୍ଷରେ ଜାତିଆଣ ଭାବକୁ ବଂଚେଇ ରଖୁଛି ଏଇ ବ୍ୟବସ୍ଥାଟା । ଆମେ ସିନା ଗର୍ବ କରୁଛୁ, ବିଶାଳ ଗଣତନ୍ତ୍ର ଦେଶର ସନ୍ତାନ ବୋଲି - ବୁଝିଲେ ସାର୍, ମୁଁ କିନ୍ତୁ ଟିକିଏ ଭିନ୍ନବାଟରେ ଚିନ୍ତା କରୁଛି, ଭାବୁଛି ଏଠି ଆମ ଗଣତନ୍ତ୍ରର ଅପମୃତ୍ୟୁ ଘଟିଛି । ମଣିଷ ଏଠି ଖୋଲାଖୋଲି ଭାବେ କିଛି କହିପାରୁନି, ଅଧିକାରକୁ ସାବ୍ୟସ୍ତ କରିବାର ସୁଯୋଗ ପାଉନି ଯେତେବେଳେ, ଏଠି ଆମେ କୋଉ ଗଣତନ୍ତ୍ରର କଥା କହିବା ?

ଶଶି ରଥେ ଦିବାକର କଥାକୁ ଶୁଣି ମନେମନେ ଭାବିଲେ, ସତରେ ଇଏ କୋଉ ଭାରତବର୍ଷ । ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତ ତ ନୁହେଁ ନିଶ୍ଚୟ । ଯୋଉ ଶାସନ ବ୍ୟବସ୍ଥା ଦେଶବାସୀଙ୍କ ମନରେ ଉଦାର ମାନବତାବାଦକୁ ଜାଗ୍ରତ କରିବାରେ ଅସମର୍ଥ, ସେଠି ଦେଶର ପ୍ରଗତି କେବଳ ନୁହେଁ ଅଖଣ୍ଡତା ମଧ୍ୟ ବିପଦାପନ୍ନ । ଆବଶ୍ୟକ ହେଲେ ବାହ୍ୟ ଶତ୍ରୁ ସହିତ ଲଢ଼ିବା ପାଇଁ ଏକାଠି ଅଣ୍ଟା ଭିଡ଼ିବାକୁ ଆମର ଦମ୍ଭ ନାହିଁ । ଯୋଉଠି ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ

କରିପାରୁନି, ସେ ଦେଶରେ ଗଣତାନ୍ତ୍ରିକ ସ୍ୱାଧୀନତା ଅଛି ବୋଲି କିଏ କହିବ । ତେଣୁ ହିଁ ସବୁଠି ଅସନ୍ତୋଷର ନିଆଁ ଜଳୁଛି । ପ୍ରତ୍ୟେକେ ନିଜର, ନିଜ ଦଳର ସ୍ୱାର୍ଥ ଦେଖୁଛନ୍ତି ।

ସମାଜରେ ସମାନତା ଆଣିବା 'ସଂରକ୍ଷଣ' ବ୍ୟବସ୍ଥାର ମୂଳ ଉଦ୍ଦେଶ୍ୟ ଥିଲା । କିନ୍ତୁ ଏଯାଏ, ଦେଶର କୋଉ ଶ୍ରେଣୀ କେତେ ବଂଚିତ, କୋଉ ଜାତି କେତେ ପଛୁଆ, ସେମାନଙ୍କୁ କିଭଳି କୋଉ ଉପାୟରେ ଅନ୍ୟମାନଙ୍କ ସହ ସମକକ୍ଷ କରାଯାଇପାରିବ- ସେଇ କ୍ଷେତ୍ରରେ ସେଭଳି କିଛି ବ୍ୟବସ୍ଥା ଆମ ଦେଶରେ ସୃଷ୍ଟି ହେଇନି । କେବଳ ନିର୍ବାଚନ ଆସିଗଲେ, ଭୋଟ୍‌ବ୍ୟାଙ୍କ୍ ରାଜନୀତି ଏଇ ପ୍ରସଙ୍ଗକୁ ଆଣି ବାଟ ମଝିରେ ଠିଆକରି ହୋହଲ୍ଲା କରୁଛି - ଗରୀବଙ୍କ ପାଇଁ ହୃଦୟ ଫଟେଇ କାନ୍ଦୁଛି କୁମ୍ଭୀର କାନ୍ଦଣା । ସତ କହିଲେ ଆମ ନେତୃବୃନ୍ଦଙ୍କର କୌଣସି ଆନ୍ତରିକତା ନାହିଁ ତଳସ୍ତରର ମଣିଷଙ୍କ ଅଭାବ ଅସୁବିଧା କଥା ଭାବିବାକୁ, ଏକଥା ଦୁଃଖର ସହିତ କହିବାକୁ ପଡୁଛି ।

ଶଶି ରଥେ ଦୀର୍ଘଶ୍ୱାସ ଛାଡ଼ି କହିଲେ, ବୁଝିଲ ଦିବାକର ଆଜି ଆମ କାହାପାଖରେ ଆଉ 'ଦେଶ ଭାବନା' ବୋଲି କିଛି ନାହିଁ । ତୁମେ ସେଦିନ ଜାପାନୀମାନଙ୍କ କଥା କହୁଥିଲ ନା, ସେମାନେ କେତେ ଦେଶପ୍ରେମୀ; ସେଇଦେଶର ସବୁ ନାଗରିକ ନିଜନିଜ କର୍ତ୍ତବ୍ୟ କରିସାରି, ଆଉ ଅଧିକା ଘଣ୍ଟାଏ ଲେଖାଏ ପରିଶ୍ରମ ନିଜ ଦେଶର ପ୍ରଗତି ପାଇଁ ଦାନ କରନ୍ତି ଏବଂ ଏକଥା ସେମାନେ ଗର୍ବର ସହିତ କହିବାକୁ ଗୌରବ ମନେ କରନ୍ତି । ଆମ ଦେଶରେ ସେଭଳି ଉଦାହରଣଟିଏ ଖୋଜି ଦେଖେଇ ଦେଇପାରିବ ? ନାହିଁ । ନହେଲେ ବିଶ୍ୱଯୁଦ୍ଧରେ ଭୁଶୁଡ଼ି ପଡ଼ିଥିବା ଦେଶଟା, କେଡ଼େ ଶୀଘ୍ର ଅଣ୍ଟାସିଧା କରି ଠିଆ ହୋଇ ଅନ୍ୟ ମହାଦେଶମାନଙ୍କ ସହିତ ସମକକ୍ଷ ହୋଇଯାଇ ପାରିଲା ? ସେମାନଙ୍କ ପାଇଁ କୌଣସି ସମସ୍ୟା, ସମସ୍ୟା ନୁହେଁ ଅଥଚ ଆମପାଇଁ ସବୁ ସମସ୍ୟା ହିଁ ସମସ୍ୟା । ତେବେ ଆଶା ଅଛି ଏବେବି ମୋର ଏ ଦେଶରେ କିଛି ଗୋଟାଏ ପରିବର୍ତ୍ତନ ଆସିବ । ଜନତା ବେଶିକାଳ ଆଉ ସହ୍ୟ କରିପାରିବେନି ଏ ବ୍ୟବସ୍ଥାକୁ ।

ଅନେକ ସମୟ ପରେ ମାର୍କଣ୍ଡ ଶର୍ମାଙ୍କ ମୁହଁ ଖୋଲିଲା । "ଆଜ୍ଞା... ଏସବୁ ତ ବଡ଼ବଡ଼ କଥା, ଆମଭଳି ସାଧାରଣ ମଣିଷ ମୁଣ୍ଡକୁ ପଶେନି । ନିତି ଆଣିଲୁ ନିତି ଖାଇଲୁ । ତେବେ ବଂଚିବା ପାଇଁ ସର୍ବନିମ୍ନ ଆବଶ୍ୟକତା, ଗଣ୍ଡେ ଖାଇ ଖଣ୍ଡେ ପିନ୍ଧିବୁ - ପିଲାଏ ଦି'ଅକ୍ଷର ପଢ଼ିବେ, ଯୋଗ୍ୟତାନୁସାରେ କାମ କରିବେ ଅଥବା ଚାକିରି ଖଣ୍ଡେ କରିବେ । ଆଉ ଅଧିକା ତ କିଛି ଲୋଡ଼ୁନୁ । ଅଥଚ ଏତିକି ବି ଆମ ଭାଗ୍ୟରେ ଜୁଟୁନି କେବଳ ଉଚ୍ଚଜାତିରେ ଜନ୍ମ ହେଇଚୁ ବୋଲି । ହତାଶା ଆଉ ଅସଫଳତାକୁ ବାରଂବାର ସାମ୍ନା କରି ଯଦି ପିଲାଏ ଅବାଟକୁ ଗଲେ, ଆତ୍ମହତ୍ୟା କଲେ, ତା'ପାଇଁ କିଏ ଦାୟୀ ହେବ । ଦେଶ ନା ସରକାର ?

"ସାର୍, ପୁରୋହିତେ କିଛି ଭୁଲ କଥା କହୁନାହାନ୍ତି । ଏ ସମସ୍ୟା କିଛି ଲୋକଙ୍କ କ୍ଷେତ୍ରରେ ନୁହେଁ, ଦେଶର ଗୋଟାଏ ବଡ଼ଅଂଶ ଏଥିରେ କ୍ଷତିଗ୍ରସ୍ତ ହେଉଛନ୍ତି । ଉଚ୍ଚଜାତିର ଗରୀବରୁ ଗରୀବ ଅଛନ୍ତି, ମେଧାବୀ ମଧ୍ୟ ଅଛନ୍ତି ସେଥିରେ କିନ୍ତୁ ସୁଯୋଗ ନାହିଁ କିଛି - ଅଶିକ୍ଷା

ଯୋଗୁଁ ଜାଣିବା ସମ୍ଭବ ହେଉନି ସରକାରଙ୍କ ନୀତିନିୟମ ସଂପର୍କରେ, ଆଉ ଗୋଟିଏ ବିପଦ ହେଲା, ଜାଣିବା ପାଇଁ ଯଦି ସେମାନେ ଅନ୍ୟ କାହାର ଆଶ୍ରୟ କି ସାହାଯ୍ୟ ନେବେ ବୋଲି ଭାବୁଛନ୍ତି ତ ପଡ଼ିଯାଉଛନ୍ତି ଦଲାଲ, ଷଡ଼ଯନ୍ତ୍ରକାରୀଙ୍କ କବଳରେ । ଶୋଷି ହୋଇଯାଉଛନ୍ତି ଆଜ୍ଞା - ତା' ସହିତ ବହୁବିଧ ବିପଦମାନ ମାଡ଼ିଆସୁଛି ସେମାନଙ୍କ ଉପରେ । ଅକଥନୀୟ ଅତ୍ୟାଚାର ଭୋଗୁଛନ୍ତି । ମଣିଷର ନୈତିକ ଅଧଃପତନ ଘଟିଛି । ଗୋଟାଏ ବିପଦ, ସହସ୍ର ବିପଦକୁ, ଗୋଟିଏ ସମସ୍ୟା, ହଜାରେ ସମସ୍ୟାକୁ ଡାକିଆଣୁଛି କହିଲେ ଦିବାକର ବିନ୍ଧାଣୀ । ଯାର ଯେ କିଛି ସ୍ଥାୟୀ ସମାଧାନ ସମ୍ଭବ ହେବ, ମୁଁ ଭାବିପାରୁନି ।

ଏତେବଡ଼ ଦେଶ ଆମର, କୋଟିକୋଟି ଲୋକ କେମିତି କ'ଣ ସମ୍ଭବ ହେବ । କିଏ ବାଛିବ ଧନୀ କିଏ, ଗରୀବ କିଏ, ଜ୍ଞାନୀ କିଏ, କିଏ କୋଉ ଜାତିର ? ଏଥିରେ ଯୋଉ ଆମଦେଶର ଜନସଂଖ୍ୟା ସମୁଦ୍ର ଭଳି ମାଡ଼ିଚାଲିଛି... କାହାର କ୍ଷମତା ଅଛି ଗହମ ଗୋଟି ଗଣିତା କରିବ । ସହଜରେ ଯାହା ମିଳିଯାଉଛି, ସେଇତକୁ ସମସ୍ତଙ୍କର ଆଖି । କାମ ଚଳିଗଲେ ହେଲା । ଏସବୁ ତୁମ ପଢ଼ାପୋଥିର କଥା ବାପା, କାମରେ ଦେଖେଇବା କଷ୍ଟ । ଈଶ୍ୱର ହିଁ ଚଳେଇଛନ୍ତି ଏ ଦେଶକୁ, ସେ ହିଁ ଚଳେଇବେ, ଯାହାକୁ ଇଚ୍ଛା ମାରିବେ, ଯାହାକୁ ଚାହିଁବେ ତାରିବେ । ବୁଝିଲ ଦିବାକର, ଆମେ ଖାଲି ଚକ୍ଷୁ କୁଟୁଛେ ମନ ବୁଝୁନି ବୋଲି, କହିଲେ ଗୋପାଳ ସାହାଣୀଏ । ପକେଟ୍‌ରୁ ଘଣ୍ଟା କାଢ଼ି ଦେଖିଲେ, ଏଗାରଟା ବାଜୁଥିଲା ।

ହଠାତ୍ ଏତିକିବେଳେ ଛକଆଡୁ ହୋହଲ୍ଲା ଶୁଭିଲା- କିଛି ଗୋଟାଏ ଗହଳି ନିଶ୍ଚୟ । ଆଜି କ'ଣ କିଛି ଗୋଟେ ବିଶେଷ ଦିନ କି ? ପଚାରିଲେ ଶଶି ମାଷ୍ଟ୍ରେ । ଏବଂ ଜଣଜଣ ହେଇ ଓହ୍ଲେଇଲେ ଚଉତରା ଉପରୁ ତଳକୁ । ସଭିଙ୍କ ମନରେ କୌତୂହଳ । ମାଗୁଣିବାବୁ ଟିକଏ ଆଗକୁ ମାଡ଼ିଯାଇ ଆସୁଥିବା ପଥଚାରୀଙ୍କୁ ପଚାରିଲେ- କ'ଣ ହୋଇଛି କି ଭାଇ ?

- "ପିଲାଏ ମାତିଛନ୍ତି ଆଜ୍ଞା - କୁହାକୁହି ହେଉଥିଲେ ତ କିଛି ଗୋଟାଏ ଅଘଟଣ ଘଟିଛି, କିଏ ମରିଯାଇଛି ନା କ'ଣ... ଆସୁଛନ୍ତି ତ ଇୟାଡ଼େ ।" କହି ଚାଲିଗଲା ଲୋକଟା ତରବରିଆ ହେଇ । 'ମରିଯିବା' କଥା ଶୁଣି ସମସ୍ତଙ୍କ ଛାତି ଧଡ଼ପଡ଼ ହେଲା । କିଏ ମଲା, କୋଉଠି, କାହିଁକି କି, କିମିତିର ଅସୁମାରି ପ୍ରଶ୍ନ । ତର ସହୁନଥିଲା କାହାର । ମୁହୂର୍ତ୍ତକ ଯୁଗ ମନେହେଲା କି ! ଦିବାକର ଆଉ ସମ୍ଭାଳି ନ ପାରି କହିଲେ ଯାଉଛି ଘେରାଏ ବୁଲି ବୁଝିଆସିବି ଘଟଣା କ'ଣ । ସାଇକଲ କାଢ଼ିବାକୁ ବସିଛନ୍ତି, ହରିବଂଧୁ ପ୍ରଧାନେ ଅଟକେଇଲେ, 'ଦିଶିଲାଣି, ପିଲାଏ ଆସୁଛନ୍ତି । ରହିଯାଅ ଟିକେ । ବୁଝିନେବା ଏଇଠୁ ।' ସମସ୍ତଙ୍କ ଭିତରେ ତୀବ୍ର ଉତ୍ତେଜନା- ଗରମ ଆଲୋଚନା ହଠାତ୍ ଥଣ୍ଡା ପଡ଼ିଯାଇଥିଲା । ମନଥିଲା ସେଇ 'ଅଘଟଣ' ଠି ।

ହୋହଲ୍ଲାର ପଟୁଆର ଆଗେଇ ଆସି ଛକ ଉପରେ ଅଟକିଲା, ଦାବୀ ପୂରଣର ସ୍ଲୋଗାନ ଭିତରେ । ହାତରେ ଧରିଥିଲେ 'ସଂରକ୍ଷଣ ହଟୁ' 'ସଂରକ୍ଷଣର ଉଚ୍ଛେଦ' - ସଂପର୍କୀତ

ପ୍ଲାକାର୍ଡ଼ମାନ । ପ୍ରଖ୍ୟାପନ ପତ୍ର । ଛାତ୍ରନେତା ତିନିଚାରି ଜଣ ଆଗରେ ଥିଲେ । ଛାତ୍ରନେତା ସୁଧୀର ରାୟସିଂ ଶୋଭାଯାତ୍ରା ପରିଚାଳନା କରୁଥିଲା । ପିଲାଏ ତା' ଗଳାରେ ଗେଣ୍ଡୁଫୁଲର ହାରଟିଏ ପକେଇ ଦେଇଥିଲେ - ନେତୃତ୍ୱର ସ୍ୱୀକୃତି ସ୍ୱରୂପ । ତା'ହାତରେ ଥିଲା ମାଇକ । ଆନ୍ଦୋଳନକାରୀ ଛାତ୍ରଛାତ୍ରୀ ଠିଆହେଇ କିଛି ସମୟ ସ୍ଲୋଗାନ ଦେଲେ । ଘଟଣା ସଫା ହେଇଯାଇଥିଲା ଧୀରେଧୀରେ । ହେଲେ 'କିଏ ମରିଯାଇଛି'ର ଉତ୍ତର ମିଳିଥିଲା, ଜାଣିବାପାଇଁ ବିନ୍ଧାଣୀଏ ପିଲାଙ୍କ ଗହଳି ଭିତରେ ପଶିଗଲେ ।

ଘଟଣାଟା ଏଇଭଳି ଥିଲା- କଲେଜରେ ନାମଲେଖା ପର୍ବ ଚାଲିଥିଲା । ସ୍ଥାନୀୟ ଛାତ୍ରଛାତ୍ରୀ ଆଶା ବାନ୍ଧି ବସିଥିଲେ, ସେମାନଙ୍କୁ ନିଶ୍ଚୟ ଅଗ୍ରାଧିକାର ଦିଆଯିବ । ସେମାନେ ପଢ଼ିବେ । କିନ୍ତୁ ସରକାରୀ ନିୟମରେ 'ସଂରକ୍ଷଣ' ବ୍ୟବସ୍ଥା ଯୋଗୁଁ ଅନେକ ପିଲା ନାମ ଲେଖାରୁ ବଂଚିତ ହେଲେ । ପିଲାଙ୍କ ଭିତରେ ଅସନ୍ତୋଷ ତୀବ୍ର ରୂପ ନେଲା । ପିଲାଏ ଧାରଣାରେ ମଧ୍ୟ ବସିଥିଲେ । କର୍ତ୍ତୃପକ୍ଷ ଶୁଣିଲେ ନାହିଁ । ହଠାତ୍ ଆଜି ସକାଳୁ ଅଘଟଣଟିଏ ଘଟିଗଲା । ଜଣେ ଛାତ୍ର ହତାଶା ହେଇ ବିଷଖାଇ ଆତ୍ମହତ୍ୟା କରିବସିଲା । ଛଟପଟ ହେଉଥିବା ଅବସ୍ଥାରେ ତାର ବଂଧୁମାନେ ତାକୁ ଆଣି ଡାକ୍ତରଖାନାରେ ଭର୍ତ୍ତି କରିଥିଲେ- ଅବସ୍ଥା ସଂକଟାପନ୍ନ ହେବାରୁ ସହରର ବଡ଼ଡାକ୍ତରଖାନାକୁ ନେଇଯାଇଛନ୍ତି ।

"କାହାପୁଅ, ଆମ ମୁକ୍ତାପୁରର ?" ବ୍ୟସ୍ତ ହୋଇ ପଚାରିଲେ ଶଶି ରଥେ ଦିବାକରଙ୍କୁ ।

"ସେ କଥା ତ ପଚାରି ପାରିଲିନି ସାର୍... ଯିବି ଆଉଥରେ ?"

ଏତିକିବେଳକୁ ସୁଧୀର ମାଇକ୍ ହାତରେ ଛାତ୍ରଛାତ୍ରୀମାନଙ୍କୁ ସମ୍ବୋଧନ କରିବାକୁ ଆଗକୁ ଆସିଲା । ମୁହୂର୍ତ୍ତକ ଲାଗି ଅଶାନ୍ତ ପଟୁଆର ନିରବିଗଲା । ଯିବା ଆସିବା କରୁଥିବା ମଣିଷ, ଦେଖଣାହାରୀ ଏବଂ ଛକ ଉପରର ଦୋକାନୀଏ ଆସି ଏକାଠି ଜମିଗଲେ ଚଉତରା ପାଖରେ । ପରିବେଶ କିଛିଟା ଉଷ୍ମ ହୋଇ ଉଠୁଥିଲା । ସମସ୍ତିଙ୍କର କାନ ଥିଲା, ପିଲାଏ କଣ କହୁଛନ୍ତି ଶୁଣିବାକୁ ।

ମାଗୁଣି ପରିଡ଼ା ଶଶି ସାର୍‌ଙ୍କ ପାଖକୁ ଲାଗଆସି ଚାପାସ୍ୱରରେ କାନପାଖରେ କହିଲେ– ଝିଅପିଲାଙ୍କ ପଟେ ଆଗଧାଡ଼ିରେ ଠିଆହେଇଥିବା ଝିଅଙ୍କୁ ଚିହ୍ନିପାରିଲେ ନା ସାର୍... ଆମ ଜେ.ଇ. ଶତ୍ରୁଘ୍ନ ବ୍ରହ୍ମାଙ୍କ ଝିଅ ସୁରଭି ବି.ଏ. ପଢୁଛି । ତା'ପାଖରେ ଶାଢ଼ି ପିନ୍ଧିଥିବା ଝିଅଟି ହେଲା ଆମ ନାରଣ ଧରସାମନ୍ତଙ୍କ ଝିଅ ଗୀତାଞ୍ଜଳି । ସୁଧୀରକୁ ତ ଜାଣିଛନ୍ତି ବି.ଡ଼ି.ଓ. ଗୋପସୁନ୍ଦର ଦାଶଙ୍କ ବଡ଼ପୁଅ - କଲେଜ ପ୍ରେସିଡ଼େଣ୍ଟ ଅଛି । ସୁନାକର ମହାନ୍ତିଙ୍କୁ ବି ଚିହ୍ନେଇ ଦେଲେ, ଆପଣଙ୍କର - ଭଣଜା ରଘୁନାଥ ଠିଆ ହେଇଛି ପ୍ଲାକାର୍ଡ଼ ଧରି, ଦେଖିପାରୁଛନ୍ତି ନା... ?

ଗୋପାଳ ସାହାଣୀଙ୍କୁ ଚକିତ ଲାଗୁଥିଲା । ଏକାସାଂଗରେ ଏତେ ପୁଅଝିଅଙ୍କୁ ଆଗରୁ ସେ କେବେ ଦେଖିନଥିଲେ । ତାଙ୍କ ଧାରଣା ଭିତରେ ବି ନଥିଲା ଯେ, ମୁକ୍ତାପୁର ଭିତରେ ଏତେ ଝିଅ ଅଛନ୍ତି ପାଠପଢ଼ିବା ପାଇଁ ! ପୁଣି ଏଇ ଝିଅଗୁଡ଼ାକ ଘର ଭିତରେ ଏତେ ଶାନ୍ତଶିଷ୍ଟ

ଯେ, ମୁଣ୍ଡ ଟେକି ସାମନାରେ ଠିଆ ହୋଇପାରିବେନି । ପାଟିରୁ ପଦେ କଥା ବାହାରିବନି । ଆଉ ଏଠି ଦେଖ... କେଡ଼େ ଦମ୍ଭ କେତେ ସାହସ । ହାତ ହଲେଇ ପୁଅଙ୍କ ସହିତ ଆଗରେ ଚାଲିଛନ୍ତି । ମୋତେ ତ ଆଚମ୍ବିତ ଲାଗୁଛି ହେ ସୁନାକର ।

ଶଶିମାଷ୍ଟ୍ରଙ୍କ କାନରେ ପଡ଼ିଲା ସାହାଣୀଙ୍କ କଥା । ପଛକୁ ବୁଲିପଡ଼ି ହସି ହସି କହିଲେ– "ଆଚମ୍ବିତ ହେବାର କିଛି ନାହିଁ ସାହାଣୀଏ । ଇଏ ପାଠ ଦି'ଅକ୍ଷରର କରାମତି । ପିଲାଏ ଆମର ଆଉ ଅଂଧାରରେ ନାହାନ୍ତି । ସୁଖର କଥା ଯେ, ନିଜ ଦାବୀ, ନିଜ ଅଧିକାରକୁ ପାଟିଖୋଲି ସାବ୍ୟସ୍ତ କରିପାରିଲେଣି । ନିଜ ସମସ୍ୟା ସହିତ, ଦେଶର ସମସ୍ୟା ସଂପର୍କରେ ସଚେତନ ହେଲେଣି । ଶୁଭ ଘଡ଼ି ଆସିଲାଣି । ଏଣିକି ଆମ ଝିଅମାନେ ନିଜକୁ ରକ୍ଷା କରିପାରିବେ - ଅବଳା, ଦୁର୍ବଳା ଶବ୍ଦଟା କ୍ରମଶଃ ଲିଭିଆସିବ ... କହିଲାବେଳେ ଶଶିମାଷ୍ଟ୍ରେ ଟିକିଏ ଉଲ୍ଲସିତ ହୋଇ ଉଠୁଥିଲେ ନିଶ୍ଚୟ । ଆଉ କ'ଣ ହୁଏତ କହିଥାନ୍ତେ, ଛାତ୍ରନେତାଙ୍କ ଗମ୍ଭୀର ସ୍ୱର ସମସ୍ତଙ୍କୁ ସଚେତନ କରାଇ ଦେଲା ।

ମାନନୀୟ ଗୁରୁଜନ ମଣ୍ଡଳୀ ଓ ପ୍ରିୟ ଭାଇଭଉଣୀ...! ଆନ୍ଦୋଳନର ଗୁରୁତ୍ୱ ଏବଂ ତାର ଆବଶ୍ୟକତା ସଂପର୍କରେ ସମ୍ୟକ୍ ଆଲୋକପାତ କରିସାରି, ସୁଧୀର ସେମାନଙ୍କର ଦାବୀ ସଂପର୍କରେ ସୂଚନା ଦେବାକୁ ଆରମ୍ଭ କଲା ।

"ଆମେ ମୁକ୍ତାପୁର ଏବଂ ଆଖପାଖ ଅଞ୍ଚଳର ଛାତ୍ରଛାତ୍ରୀ ଏଇ କଲେଜରେ ହିଁ ପଢ଼ିବା ପାଇଁ ଚାହୁଁ । ପାଠ ପଢ଼ିବା ମଧ୍ୟ ଆମର ମୌଳିକ ଅଧିକାର । ଅଥଚ 'ସଂରକ୍ଷଣ' ବ୍ୟବସ୍ଥା ଯୋଗୁଁ ବହୁ ଛାତ୍ରଛାତ୍ରୀ ଉଚ୍ଚଶିକ୍ଷାରୁ ବଂଚିତ ହେଉଛନ୍ତି । ସବୁ ପିଲାଙ୍କ କ୍ଷେତ୍ରରେ ସବୁପ୍ରକାର ଯୋଗ୍ୟତା, ସାମର୍ଥ୍ୟ କି ସୁବିଧା ନାହିଁ ଯେ, ବାହାରକୁ ଯାଇ ପଢ଼ିପାରିବେ । ଯୁଆଡ଼େ ଗଲେ ବି ତ ଏହି 'ସଂରକ୍ଷଣ' ଜନିତ ପ୍ରତିବନ୍ଧକ । ଯୋଉମାନଙ୍କ ପାଇଁ ସଂରକ୍ଷଣ ବ୍ୟବସ୍ଥା ସେମାନଙ୍କର ସେଭଳି ଯୋଗ୍ୟତା ନ ଥାଇ ବି ପଢ଼ିପାରୁଛନ୍ତି ପୁଣି ସେମାନଙ୍କ ପାଇଁ ଉଦ୍ଦିଷ୍ଟ ସ୍ଥାନ ସବୁସମୟରେ ପୂରଣ ହୋଇନପାରି ଖାଲି ପଡୁଛି । ସେଇ ସ୍ଥାନଗୁଡ଼ିକ ଆମ କଲେଜ ପିଲାଙ୍କୁ ଦିଆଯାଇ ପାରିଥାନ୍ତା; ଯଦି କର୍ତ୍ତୃପକ୍ଷ ଚାହିଁଥାନ୍ତେ । ଅଥଚ ସେଇ ସ୍ଥାନ ପାଇଁ ମୋଟାଅଙ୍କର ଡୋନେସନ୍ ନେଇ ବାହାର ପିଲାଙ୍କୁ ପଢ଼ିବାପାଇଁ ସୁଯୋଗ ଦିଆଯାଉଛି । ସେମାନଙ୍କ ଭିତରେ ନାମୀଦାମୀ ଲୋକଙ୍କ ପିଲାଏ ବି ଅଛନ୍ତି ପଛୁଆ ଗାଁର ଅନେକ ବଡ଼ବଡ଼ ଚାକିରିଆଙ୍କ ପିଲାଏ ବି ଅଛନ୍ତି । ଯୋଉମାନଙ୍କର ପ୍ରଥମ ପିଢ଼ି ଏଇ ସୁଯୋଗ ହାସଲ କରି ସମର୍ଥ ହେଇ ସାରିଛନ୍ତି । ଆର୍ଥିକ କ୍ଷେତ୍ରରେ ବି ସାମାଜିକ କ୍ଷେତ୍ରରେ ବି । ଏଣିକି ସେମାନେ ବୁଝନ୍ତୁ ତାଙ୍କ ପରପିଢ଼ି କଥା ।

ଆମର ପ୍ରଶ୍ନ, ସେଇମାନେ କ'ଣ ପୁରୁଷ ପୁରୁଷ ଧରି ଏଇ ସୁଯୋଗ, ପଛୁଆ, ଦଳିତ ବୋଲି ହାସଲ କରି ଚାଲିଥିବେ ? ଆଉ ଆମେ ଉଚ୍ଚଜାତିରେ ଜନ୍ମହେଇଛୁ ବୋଲି, ଗରୀବ ହେଲେ ବି କୌଣସି ସୁବିଧା ପାଇପାରିବୁନି କି ପଢ଼ିପାରବୁନି ? ଗରୀବ ସାଧାରଣବର୍ଗ ଭିତରେ କ'ଣ ମେଧାବୀ ନାହାନ୍ତି ? ତା' ଛଡ଼ା ଏଇ ପିଲାମାନେ କିଛିଦିନ ପରେ ଟି.ସି. ନେଇ ନିଜନିଜ

ସହରକୁ ଚାଲିଯିବେ ଏବଂ ଏଇ ସବୁ ସ୍ଥାନ ପୁଣି ଖାଲି ପଡ଼ିବ । ଅଥଚ ଆମେ ପଢ଼ିପାରୁନୁ ଇଚ୍ଛା ଥିଲେ ବି । ଶେଷରେ ମାନସିକ ଋପଗ୍ରସ୍ତ ହେଇ କିଏ ଅବାଟରେ ଯାଉଛି ତ କିଏ ବିଷଖାଇ ଆତ୍ମହତ୍ୟା କରିବାର ବାଟ ଖୋଜୁଛି । ଆଜି ସକାଳେ ବଂଧୁ ବିନୋଦ ପଣ୍ଡା ବିଷ ଖାଇ ସଂକଟାପନ୍ନ ଅବସ୍ଥାରେ ହସ୍‌ପିଟାଲରେ ମୃତ୍ୟୁ ସହ ଲଢୁଛନ୍ତି । କିଏ ଦାୟୀ ଏସବୁ ପାଇଁ ??

ମୁହୂର୍ତ୍ତକ ଲାଗି ସମବେତ ଛାତ୍ରଛାତ୍ରୀଙ୍କ ଭିତରେ ହଇଚଇ ଖେଳିଗଲା– ଦାବୀ ହେଲା, 'ସଂରକ୍ଷଣ ହଟୁ', 'ଉଚ୍ଛେଦ ହେଉ ସଂରକ୍ଷଣ ବ୍ୟବସ୍ଥା' । ସମସ୍ୱରରେ ସ୍ଲୋଗାନ୍ ଦେଲେ ପିଲାମାନେ । ଗୁଂଜରଣ ଖେଳିଗଲା ଉପସ୍ଥିତ ଜନତା ଓ ଅଭିଭାବକଙ୍କ ଭିତରେ । ପରସ୍ପର କୁହାକୁହି ହେଲେ, ପିଲାଙ୍କ ଦାବୀରେ କିଛି ଭୁଲ ନାହିଁ । ସମାଜରେ ପ୍ରତିଟି କ୍ଷେତ୍ରରେ ଏଇ 'ସଂରକ୍ଷଣ' ଯୋଗୁଁ ବିକାଶଧାରା ବ୍ୟାହତ ହେଉଛି ଏଥିରେ ଦ୍ୱିମତ ନାହିଁ । ବିଶେଷକରି ପଦୋନ୍ନତିରେ 'ସଂରକ୍ଷଣ', ଗ୍ରହଣୀୟ ନୁହେଁ ।

ସୁଧୀରର ଭାଷଣ ସରୁ ନସରୁଣୁ ଘନଘନ କରତାଳିରେ ଦୀନୁରଣା ଛକ ଉଠିଲା ପଡ଼ିଲା । ବଉଳ ଗଛମୂଳେ ଚୁପ୍‌ଚାପ୍ ଠିଆ ହୋଇ ପିଲାଙ୍କ କଥା ଶୁଣୁଥିବା ମୁକ୍ତାପୁରର ପୁରୋହିତେ, ଦିଶାରୀ ଭଳି ହଠାତ୍ କଣ୍ଠ ଫଟେଇ ଚିତ୍କାର କରିବା ଆରମ୍ଭ କରିଦେଲେ - 'ହଟୁ ଏଇ ସଂରକ୍ଷଣ ବ୍ୟବସ୍ଥା' ଯୋଉ ବ୍ୟବସ୍ଥା ମଣିଷକୁ ଆଶାର ଆଲୁଅ ଦେଖାଇ ପାରୁନି, ଜାତି ଜାତି, ମଣିଷ ମଣିଷ ଭିତରେ ବିଭେଦ ସୃଷ୍ଟି କରୁଛି, ସେଇ ବ୍ୟବସ୍ଥାକୁ ହଟେଇଦେବା ଉଚିତ । ନହେଲେ ଦିନଆସିବ ଧ୍ୱଂସ ହେଇଯିବ ଏଇମଣିଷ ସଭ୍ୟତା, ବିପନ୍ନ ହେଇଯିବ ସ୍ୱାଧୀନତା... ହାଣମାର କାଟ ହୋଇଯିବେ ସମସ୍ତେ... ବେଳଥାଉଁଣୁ ଯାର ବ୍ୟବସ୍ଥା କରିବା ଉଚିତ... ନିଜକୁ ନିଜେ, ପ୍ରଳାପ କଲାଭଳି କହି ଚାଲିଥିଲେ ମାର୍କଣ୍ଡ ଶର୍ମା । ତାଙ୍କ କଥା କିଏ ଶୁଣୁଛି କି ନ ଶୁଣୁଛି ସେଥିପ୍ରତି ଧ୍ୟାନ ନ ଥିଲା । କାଳିସୀ ନାଚିଲା ପରି, ଏକାଳୟରେ ହାତ ଟେକି ଛାତ୍ରଙ୍କ ସହିତ ଛାତ୍ରହେଇ ବାଉନବର୍ଷର ଏଇ ପାଞ୍ଚଫୁଟିଆ ମଣିଷଟି ଚିତ୍କାର କରିଚାଲିଥିଲା ।

ଚକିତ ହେଲେ ଜନତା ଓ ଛାତ୍ର ସମାଜ । ତଟସ୍ଥ ହେଇ ରହିଁଲେ ଶଶିମାଷ୍ଟ୍ରେ, ମାଗୁଣି ପରିଡ଼ା, ଦିବାକର ବିନ୍ଧାଣୀ ଓ ଗୋପାଳ୍ ସାହାଣୀଏ । ସମସ୍ତଙ୍କ ଭିତରେ କିଏ ଯେମିତି ଚେତନାର ଚିଆଁ ଲଗେଇଦେଲା । ଡେକି ଉଠିଲେ ସମବେତ ଜନତା ଓ ଛାତ୍ରସମାଜ - ଡେକି ଉଠିଲା ସମସ୍ତଙ୍କ କଣ୍ଠସ୍ୱର ମାର୍କଣ୍ଡ ଶର୍ମାଙ୍କ ସହିତ କିମିଆଁ କଲାଭଳି । ସହସ୍ରହସ୍ତ ଉପରକୁ ଉଠିଲା ସମର୍ଥନ ଜଣେଇ ।

ଅଭୂତପୂର୍ବ ରୂପ ନେଉଥିଲା ଦୀନୁରଣା ଛକ । ତାରି ଭିତରେ ଶଶିମାଷ୍ଟ୍ରଙ୍କ ଚିର ଆଶାବାଦୀ ଶିକ୍ଷକୀୟ ସତ୍ତା ଉଲ୍ଲସି ଉଠୁଥିଲା । ଏଇ ଟିକକ ଆଗରୁ ଆଲୋଚନା ଭିତରେ ଯୋଉ ହତାଶାର କୁହୁଡ଼ି ମାଡ଼ି ଆସୁଥିଲା, ଆଶାର ସୂର୍ଯ୍ୟାଲୋକ ତାକୁ ହଟେଇ ଦେବାକୁ ଯେମିତି ସମର୍ଥ ହେଉଥିଲା । ପାଖରେ ଠିଆ ହେଇଥିବା ମାଗୁଣି ପରିଡ଼ାଙ୍କୁ ଲକ୍ଷ୍ୟକରି ଶଶି ମାଷ୍ଟ୍ରେ କହିଲେ– ମୁଁ ଏଇୟା ଋହୁଁଥିଲି ମାଗୁଣି ବାବୁ, ସବୁ ମଣିଷ ଏକାଠି ହେଲେ ନିଶ୍ଚୟ ଅସମ୍ଭବକୁ ସମ୍ଭବ କରିପାରିବେ । ଉଲ୍ଲସିତ କଣ୍ଠସ୍ୱର ଉତୁରି ପଡୁଥିଲା ତାଙ୍କ ଭିତରୁ ।

"ମୋର ତ ସଂଦେହ ହୁଏ ସାର... ଏଇ ବିପ୍ଳବର ଓ ଲକ୍ଷ୍ୟ ଦୃଢ଼ ଏବଂ ଦୀର୍ଘସ୍ଥାୟୀ ହେବ ତ ? ସମୁଦ୍ରର ଢେଉ ଭଳି ମୁଣ୍ଡ ଟେକି ଯଦି ଭାଙ୍ଗିଯିବ... ଏମିତି ତ ଅନେକ ପ୍ରତିବାଦ, ପ୍ରତିରୋଧ ଭାଙ୍ଗିଯାଇଛି ଆଗରୁ ।"

କାହିଁକି ତୁମର ଏଇ ସଂଦେହ ମାଗୁଣିବାବୁ ?

ମାଗୁଣିବାବୁ ଉତ୍ତର ଦେବା ପୂର୍ବରୁ ପାଖରେ ଠିଆହେଇ ଆଲୋଚନା ଶୁଣୁଥିବା ଜଣେ ଭଦ୍ରଲୋକ ଆଗେଇ ଆସିଲେ ଉତ୍ତରଦେବାକୁ; 'କ୍ଷମା କରିବେ ଆଜ୍ଞା, ଆଲୋଚନା ଭିତରକୁ ପଶିଆସିଲି ବୋଲି । ମୁଁ ସୁବୋଧ ଦଣ୍ଡପାଟ, ଇତିହାସ ଟିଚର, ଏଇ କିଛିଦିନ ହେଲା ବଦଳି ହେଇ ଆସିଛି ଏଠାସ୍କୁଲ୍‌କୁ । ଆପଣଙ୍କ କଥା ଅନେକଙ୍କଠୁ ଶୁଣିଛି, ଆଜି ପରିଚୟର ସୁଯୋଗ ମିଳିଲା- ପ୍ରଣାମ କଲେ ଶଶି ରଥଙ୍କୁ ସୁବୋଧବାବୁ ନିଜ ପରିଚୟ ଦେଇ । ନୂଆ ବଂଧୁ ପାଇ ସମସ୍ତଙ୍କ ମନ ଖୁସି ହେଇଗଲା । ପରିଚୟର ଆଦାନପ୍ରଦାନ ସାରି ସୁବୋଧବାବୁ ଫେରି ଆସିଲେ ଆଲୋଚନା ପାଖକୁ... କହିଲେ, "ମୁଁ କ'ଣ କହୁଥିଲି କି ଆଜ୍ଞା ଆମେ ଭାରତବାସୀ ଚିରକାଳ ରାଜଭକ୍ତ । ସିଏ ରାଜତନ୍ତ୍ର ହେଉ କି ଗଣତନ୍ତ୍ର । ଶାସକ ଏବଂ ଶାସନ ବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ଆମେ ଗର୍ହିତ ବୋଲି ଭାବୁ । ଆମ ସହନସୀମା ବି ଅସୀମ । ନିହାତି ଅଚଳ ଅବସ୍ଥା ସୃଷ୍ଟି ନହେଲେ ଆମ ବୋଧଶକ୍ତି ଜାଗ୍ରତ ହୁଏନା କି ପାଟି ଖୋଲେନା । ଏପରି ସ୍ଥଳେ ଭାରତବର୍ଷର ଇତିହାସ ପଢ଼ିଥିବା ଯେ କେହି ଚିନ୍ତାଶୀଳ ବ୍ୟକ୍ତି ମନରେ ଏଭଳି ସଂଶୟ ସୃଷ୍ଟିହେବା ସ୍ୱାଭାବିକ । ଆମେ ସବୁକଥାକୁ ଚଳେଇ ହିଁ ନେଉ । ଆକ୍ରମଣଶୀଳ ମନୋବୃତ୍ତି ଆମର ନାହିଁ ତ... ପୁଣି - "ନିହାତି ଭୁଲ ପଢ଼ିନାହାନ୍ତି ଭାରତବାସୀଙ୍କ ମନସ୍ତତ୍ତ୍ୱକୁ । ତେବେ ସମୟ ବଦଳିଛି । ଦୃଷ୍ଟି ବଦଳିଛି । ପୂର୍ବ ଆକାଶରେ ସିନ୍ଦୂରା ଫାଟିଲାଣି । ମଣିଷ ଚେତିଲାଣି । ଅନ୍ୟାୟର, ଅସମତାର ପ୍ରତିବାଦ କରିବା ଶିଖିଲାଣି ମଣିଷ - କେତେ ସହ୍ୟ କରିବ ? ଷାଠିଏ ବର୍ଷଧରି ତ ସହି ଆସିଛି । ଆଉ ହତାଶ ହେବାର କାରଣ ନାହିଁ । ଆଶାଅଛି ଆଗକୁ କିଛି ଗୋଟାଏ ଘଟିବ । ଇତିହାସ ନୂଆ ଲେଖାହେବ - ବିଶ୍ୱାସ ରଖନ୍ତୁ, କହିଲେ ଶଶି ରଥେ ଦ୍ୱିଗୁଣ ଉତ୍ସାହରେ ।"

କଥାମଝିରେ ଦିବାକର ବିନ୍ଧାଣି ପଶିଆସି କଥା ଯୋଡ଼ିଲେ, 'କିଛି ଗୋଟାଏ' ଘଟିବ ବୋଲି କୁହନ୍ତୁନି ସାର୍, ବରଂ ନୂଆ, ଭିନ୍ନ ଏକ ମହାଭାରତ ଯୁଦ୍ଧ ହେବ । ଏଥିପାଇଁ ଜନ୍ମଟିଏ କି ଯୁଗଟିଏ ଅପେକ୍ଷା କରିବାକୁ ପଡ଼ିବନି ଆଉ ଗୋଟାଏ ବିଶାଳ ଗଣତାନ୍ତ୍ରିକ ଦେଶର ଦାୟାଦ ବୋଲି ମିଛ ବାହାସ୍ଫୋଟ ମାରିବାରେ କିଛି ମାନେ ନାହିଁ । ଆମକୁ ହିଁ ତା'ର ଉପାୟ ଚିନ୍ତା କରିବାକୁ ପଡ଼ିବ । ଆଗକୁ ଆହୁରି 'ସଂରକ୍ଷଣ' ଭଳି ଅନେକ ନୂଆ ପ୍ରସଙ୍ଗ, ନୂଆ ବ୍ୟବସ୍ଥା ସୃଷ୍ଟିହେବ ଏବଂ ଆମ ସୁବିଧାବାଦୀ ନେତାଏ ତାକୁ ନେଇ ରାଜନୀତିର ଖେଳ ଖେଳୁଥିବେ, ଗରୀବ-ଗରୀବ ହେଇଥିବ ମେଧା ଅବହେଳିତ ହେଉଥିବ, ଦି'ଟଙ୍କିଆ ଚାଉଳର ଭାତ ଖାଇ ପରିଶ୍ରମୀ ପରିଶ୍ରମ ଭୁଲି ନିଦରେ ଶୋଇ ପଡ଼ିବ, ଜନସଂଖ୍ୟା ବଢୁଥିବ । ଆଉ ଆମେ ବୁଦ୍ଧିଜୀବୀ କେତେଦିନ ଆଖିରେ ଅନ୍ଧପୁଟୁଳି ବାନ୍ଧି ଧୃତରାଷ୍ଟ୍ର ସାଜିବା, କହୁନାହାନ୍ତି ? ଉତ୍ତେଜିତ

ହେଇପଡୁଥିଲେ ଦିବାକରବାବୁ କହୁକହୁ । ନାହିଁ ସାର..., ଆମର ଆଉ ଧୈର୍ଯ୍ୟ ନାହିଁ ବୋଝ ବୋଝ ଅପମାନ, ଅତ୍ୟାଚାର, ଅଶିକ୍ଷା, ଗରୀବି ଆଉ ଅନ୍ୟାୟକୁ କାନ୍ଧରେ ବୋହି ଚାଲିବାକୁ... ସବୁସ୍ତରରେ ଏଇ 'ସଂରକ୍ଷଣ' ବ୍ୟବସ୍ଥା... ସହି ହେଉନି ।

ଶଶି ରଥେ ଚୁପ୍‌ଚାପ ଶୁଣୁଥିଲେ ଦିବାକରର ବ୍ୟାଖ୍ୟା । ହେଲେ କାନ ଥିଲା, ଛାତ୍ରନେତାଙ୍କ ଭାଷଣ ଆଡ଼େ । ଆଜିର ଏଇ ସମସ୍ୟାଟା କେବଳ ମୁକ୍ତାପୁର କଲେଜର ସମସ୍ୟା ହେଇ ଦିଶୁ ନଥିଲାକି ଘଟଣାପ୍ରବାହ ମୁକ୍ତାପୁର ଦିନୁରଣା ଛକ ଭିତରେ ବି ସୀମିତ ହେଇ ରହିଛି ଭଳି ବି ଲାଗୁନଥିଲା । ଯେମିତି କାୟାବିସ୍ତାର କରୁଥିଲା ଓ ସମଗ୍ର ଦେଶର ସମସ୍ୟା ଆଡ଼କୁ ଆଙ୍ଗୁଳି ନିର୍ଦ୍ଦେଶ କରୁଥିଲା । ଶଶିମାଷ୍ଟ୍ରେ ଭାବିଲେ, ଇଏ କେବଳ ପିଲାଳିଆମୀ ନୁହେଁ, ଇଏ ସମୟର ଛବି । ପରିବର୍ତ୍ତନର ପଦଧ୍ୱନି ଚକ ଘୂରୁଛି । ପ୍ରତ୍ୟେକ ନାଗରିକ ଆଜି ସତର୍କ । ଥରେ ଗଣଚେତନା ଜାଗ୍ରତ ହେଲେ, କେହି ତାକୁ ରୋକି ପାରିବେନି । ଭାବୁ ଭାବୁ ତାଙ୍କ ମୁହଁ ଉଜ୍ୱଳ ଦିଶିଲା ।

ଏତିକିବେଳେ ଛାତ୍ରନେତା ସୁଧୀର ମଞ୍ଚ ଉପରୁ ଆହ୍ୱାନକଲା ମୁକ୍ତାପୁରର ବରିଷ୍ଠ ନାଗରିକ ଏବଂ ଛାତ୍ରୀମାନଙ୍କୁ... ଯଦି କିଛି ସ୍ୱତନ୍ତ୍ର ବିଚାର ଆପଣମାନଙ୍କର ଥାଏ, ତା'ହେଲେ ମଞ୍ଚ ଉପରକୁ ଆସି ଉପସ୍ଥାପିତ କରି ଆମକୁ ଦିଗ୍‌ଦର୍ଶନ ଦେଲେ ଛାତ୍ରସମାଜ ଉପକୃତ ହେବ ।

ଘନଘନ କରତାଳି ହେଲା । ସମସ୍ତଙ୍କ ଦୃଷ୍ଟି ସ୍ଥିର ହେଲା ଯାଇ ସୁରଭି ଉପରେ । ସୁରଭି ବ୍ରହ୍ମା ଛାତ୍ରୀଙ୍କ ତରଫରୁ ପ୍ରତିନିଧିତ୍ୱ କରିବେ । ଏବଂ ସୁରଭି ବିନା ବାକ୍ୟବ୍ୟୟରେ ଆଗେଇଯାଇ ମାଇକ୍ ଆଗରେ ଠିଆହେଲା । ସାଥିରେ ଗୀତାଂଜଳି ସହିତ ତିନିଜଣ ଛାତ୍ରୀ ବି ଥିଲେ । ସୁରଭି ସମ୍ବୋଧିତ କଲା ସମବେତ ଜନମଣ୍ଡଳିଙ୍କୁ । ଏକ ଅଭିନବ ଦୃଶ୍ୟପଟ । ମୁକ୍ତାପୁର ଇତିହାସରେ, ଦିନୁରଣା ଛକର ଏଭଳି ଐତିହାସିକ ଦୃଶ୍ୟ ଆଗରୁ କେହି କେବେ ଦେଖିନଥିଲେ ନମ୍ର ଅଥଚ ଦୃଢ଼ସ୍ୱରରେ ସୁରଭି ନିଜ ବକ୍ତବ୍ୟ ସାରିବା ପୂର୍ବରୁ କହିଲା ... "ଏଇ ଆନ୍ଦୋଳନରେ ଆମମାନଙ୍କର ସହମତି ଅଛି । ମୁଁ କେବଳ ଠିଆହୋଇଛି ସେଥିରେ ଆଉ ଧାଡ଼ିଏ ଯୋଗ କରିବା ପାଇଁ ମାତ୍ର...

ଭାଷଣ ସଂକ୍ଷିପ୍ତ ଓ ତଥ୍ୟମୂଳକ ଥିଲା । ଝିଅଟିର କଥା କହିବା ଶୈଳୀରେ ଅଭିଭୂତ ହୋଇ ଯାଉଥିଲେ ସମସ୍ତେ । ତାର ବିଚାର ଉପସ୍ଥାପନା ଶୈଳୀ, କେବଳ ଛାତ୍ରସାମଜ ନୁହେଁ ମୁକ୍ତାପୁରର ସର୍ବସାଧାରଣଙ୍କ ଉପରେ ସଂକ୍ରାମକ ଭଳି କାମ କରିବାକୁ ଲାଗିଲା । ମୁହୂର୍ତ୍ତକ ପାଇଁ ସ୍ତବ୍ଧ ହୋଇଗଲା ଦୀନୁରଣା ଛକ । ନିଃଶ୍ୱାସ ରୋକି ହୋଇଗଲା ସତେଯେମିତି । ସୁରଭି ତା' ହାତବ୍ୟାଗରୁ ମହମବତିଟିଏ କାଢ଼ି, ସେଥିରେ ଡିଆସିଲ ମାରି ଜଳେଇଲା । ଜଳି ଉଠିଲା ମହମବତି ଶିଖା ଟେକି ।

ଚଉତରା ପାଖରେ ଠିଆ ହୋଇଥିବା ଗୋପାଳ ସାହାଣୀ, ସୁନାକର ମହାନ୍ତି ନିଜକୁ ଆଉ ରୋକିପାରି ନଥିଲେ । କ'ଣ କିଛି ଚମତ୍କାର ଦେଖେଇବ କି ଝିଅଟା ? ?

ତଟସ୍ଥ ଜନତା ଓ ଛାତ୍ରସମାଜର ଦୃଷ୍ଟି ଆକର୍ଷଣ କରି ସୁରଭି ଏଥର ମହମବତିକୁ ଟେକିଧରି ଗମ୍ଭୀର ସ୍ୱରରେ ଘୋଷଣା କଲା- "ଏଇ ଆମର ବଜ୍ର ସଂକଳ୍ପ... ଦାବୀ ହାସଲ ନ ହେବା ଯାଏ ଏ ନିଆଁ ଲିଭିବନି... । ସମବେତ ଛାତ୍ରସମାଜ ସୁରଭି ସହିତ ଦୋହା ଧରିଲେ "ନା' ଲିଭିବନି" ।

ଘନଘନ କରତାଳି ଅଜାଡ଼ି ହେଇ ପଡ଼ିଲା । ଏକ ଅଭୁତପୂର୍ବ ପରିବେଶ । ମନେହେଲା ଦିନୁରଣା ଛକର ଏଇ 'ସଂକଳ୍ପ ମଶାଲ' - କେବଳ ମୁକ୍ତାପୁରର ନୁହେଁ - ବରଂ ସମଗ୍ର ଭାରତବର୍ଷର ଇଏ ସଂକଳ୍ପର ମଶାଲ । ଠିଆ ହେଇଛି ଭାରତମାତା ମଶାଲ ଧରି ।

ଛାତ୍ରମାନଙ୍କ ଭିତରୁ, ଜଣେ କିଏ ପିଲାଙ୍କ ଗହଳି କାଟି ଧଇଁସଇଁ ହେଇ ମାଡ଼ିଆସିଲା ମଞ୍ଚ ପାଖକୁ । ହାତରେ ତାର ତ୍ରିରଙ୍ଗା ପତାକା । ସମସ୍ତଙ୍କୁ ଚମକେଇ ଦେଇ ଛାତ୍ରଟି ପତାକା ଖୋଲି ସୁରଭି ଉପରେ ଢାଙ୍କିଦେଲା ଚଦର ଭଳି ।

ଉଚ୍ଛ୍ୱସିତ ଜନତା କଣ୍ଠରୁ ଅଜାଡ଼ି ହେଇ ପଡ଼ିଲା 'ବନ୍ଦେ ମାତରମ୍'ର ଜୟଗାନ । ଭାବବିହ୍ୱଳ ପରିବେଶ । କରତାଳିର ପୃଷ୍ଠଭୂମିରେ ଭାସି ଆସୁଥିଲା ସୁରଭିର ଗମ୍ଭୀର କଣ୍ଠସ୍ୱର... "ସଂରକ୍ଷଣ ନାମରେ ମଣିଷ ମଣିଷ ଭିତରେ ବିଭେଦ ଆମେ ଚାହୁଁନା । ଆମେ ଚାହୁଁନା ଆମ ଦେଶ ଜାତି ଧର୍ମ, ଭାଷାକୁ ନେଇ ଖଣ୍ଡ ବିଖଣ୍ଡିତ ହେଉ । ଆମେ ସମସ୍ତେ ଭାରତମାତାର ସନ୍ତାନ, ସମସ୍ତଙ୍କର ସମାନ ଅଧିକାର... ସଂରକ୍ଷଣ ବ୍ୟବସ୍ଥାକୁ ଉଚ୍ଛେଦ କର, ସମସ୍ତଙ୍କୁ ସମାନ ଅଧିକାର ଦିଆଯାଉ... ।"

ଶଶି ମାଷ୍ଟ୍ରଙ୍କର ଶରୀର ରୋମାଂଚିତ ହେଲା; କହିଲେ– "ଦେଖୁଛ ଦିବାକର ଏଇ ସମ୍ଭାବନାର ଦୀପଶିଖାମାନଙ୍କୁ କେମିତି ଉଜ୍ଜ୍ୱଳ ହେଇ ଜଳୁଛନ୍ତି । ଏଇ ଯୋଉ ଝିଅଟି, ବୟସରେ ବରିଷ୍ଠ ନୁହେଁ, ଭବିଷ୍ୟଦ୍ରଷ୍ଟା ବି ନୁହେଁ । କୌଣସି ଚମତ୍କାରିତା ବି ସମ୍ଭବ ନୁହେଁ ତା' ପକ୍ଷରେ । ତଥାପି ତା'ର ଚିନ୍ତା ଚେତନାରେ ସମୟର ଖଣ୍ଡଚିତ୍ର ପ୍ରତିଫଳିତ ହୋଇଛି । ଏଇ ଅଖଣ୍ଡ ଆତ୍ମବିଶ୍ୱାସର ଦୀପଶିଖାକୁ କମ୍ ମନେକରନି । ଚଉଁରା ମୂଳର ସଂଜବତି ଭଳି ସଳିତାଟିକର ଆଲୁଅ ଇଏ ସତ, ବିଞ୍ଛିହେଇ ପଡ଼ି ପାରିବନି ଚାରିଆଡ଼କୁ, ତଥାପି ସେଇ ଜାଗାଟିକୁ ତ ଆଲୋକିତ କରୁଛି – କହିପାରୁଛି ମୁଁ ଆଲୁଅ । ଆଲୁଅ ଦେଖେଇବାର ସାମର୍ଥ୍ୟ ଅଛି ମୋ ପାଖରେ ।"

ହଠାତ୍ ଦିବାକର ମୁଣ୍ଡକୁ ଅଦ୍‌ଭୂତ ଖିଆଲଟିଏ ଜୁଟିଲା । ଶଶି ସାର୍‌ଙ୍କୁ ଅଧିକା କିଛି କହିବାକୁ ନ ଦେଇ କହିଲେ, ସାର୍ ଏଇଠି ନୁହେଁ, ଚାଲନ୍ତୁ ମଞ୍ଚ ଉପରକୁ, ସେଇଠି କହିବେ ସେଇ ସଂକଳ୍ପର ଦୀପଶିଖାମାନଙ୍କୁ, କଲ୍ୟାଣ କରିବେ, ସେଇ ସମ୍ଭାବନାର ଦୁରନ୍ତ କଳିକାମାନଙ୍କୁ – ଯେଉଁମାନେ ବାସ୍ତବରେ ଏ ଦେଶର ଭାଗ୍ୟବିଧାତା, ସେଇମାନଙ୍କୁ । ଯେଉଁମାନେ ଆଜି ଭାରତର ଏକ ଉଜ୍ଜ୍ୱଳ ଭବିଷ୍ୟତ ଗଢ଼ିବାର ସଂକଳ୍ପ ନେଇଛନ୍ତି... । ଆସନ୍ତୁ ସାର୍... ଆପଣ କେବଳ ଶ୍ରେଣୀ ଗୃହ ଭିତରେ ଗୋଟିଏ ଦିବାକର କି ସୁଧୀରର ଭାଗ୍ୟ ଗଢ଼ିନହାନ୍ତି । ଗୁରୁ ଯେ ସମଗ୍ର ମାନବଜାତିର ଦିଗ୍‌ଦର୍ଶକ । ଏତିକି କହୁକହୁ ଦିବାକର ଏକପ୍ରକାର ଟାଣିଟାଣି ନେଇଗଲେ

ଶଶି ସାର୍‌ଙ୍କୁ ମଞ୍ଚ ପାଖକୁ । କିଛି କହିବାକୁ ଅନୁରୋଧ କରିବା ପୂର୍ବରୁ ସୁଧୀର ଘୋଷଣା କଲା– ଆମର ପରମ ସୌଭାଗ୍ୟ ଯେ, ମୁକ୍ତାପୁରର ବରିଷ୍ଠ ନାଗରିକ, ବିଜ୍ଞ ଶିକ୍ଷାବିତ୍ ଶଶିଭୂଷଣ ରଥ ଆମକୁ କଲ୍ୟାଣ କରିବା ସହିତ ଦିଗ୍‌ଦର୍ଶନ ଦେବାପାଇଁ ଆମ ଗହଣରେ ଉପସ୍ଥିତ ଅଛନ୍ତି – ମୁଁ ଏବଂ ଆମର ଛାତ୍ରସମାଜ ତାଙ୍କୁ ସ୍ୱାଗତ କରୁଛୁ... । ଟିକିଏ ଅପ୍ରସ୍ତୁତ ବୋଧକଲେ ବି ଶଶି ରଥେ ମଞ୍ଚ ଉପରେ ଠିଆହେଲେ ।

ଆଶ୍ଚର୍ଯ୍ୟ ଚକିତ ହେଇଗଲେ ଜନତା । ମୁକ୍ତାପୁରର ସାଧାରଣ ଜଣେ ଶିକ୍ଷକ ଶଶି ମାଷ୍ଟ୍ରେ... ଯାହାକି ଜୀବନର ଅର୍ଦ୍ଧାଧିକ ସମୟ ଏଇ ମୁକ୍ତାପୁର ମାଟିରେ କଟିଛି... ସମସ୍ତଙ୍କର ଅତିପ୍ରିୟ ଶଶି ମାଷ୍ଟ୍ରେ, ମୁକ୍ତାପୁର ସର୍ବସାଧାରଣଙ୍କ ଆଖିରେ ସେହି ମୁହୂର୍ତ୍ତରେ ଯେକୌଣସି ସାଧୁ, ସନ୍ଥ, ମହାତ୍ମାଙ୍କ ଠାରୁ ଆହୁରି ବଡ଼, ମହାନ ଭଳି ପ୍ରତୀୟମାନ ହେଉଥିଲେ । ଅଭିଭୂତ ହେବାଭଳି ପରିବେଶ... ରୋମାଂଚିତ ଜନତା ।

ଶ୍ରଦ୍ଧେୟ ଛାତ୍ରଛାତ୍ରୀ ଆଉ ପ୍ରିୟ ମୁକ୍ତାପୁର ଜନସାଧାରଣଙ୍କୁ ଉପଲକ୍ଷ୍ୟ କରି ଆଶାର ଅଭିନବ ଆଲୁଅ ଦେଖେଇଲେ ଗୁରୁ ଶଶି ରଥେ । ଆମର ଆଉ ହତାଶ ହେବାର କାରଣ ନାହିଁ । ଆମର ଅଖଣ୍ଡ ବିଶ୍ୱାସ ଏଇ ଉତ୍ତରଦାୟାଦମାନଙ୍କ ଉପରେ । ଅନେକ ସମ୍ଭାବନାକୁ ନେଇଁ ଏମାନଙ୍କର ଜନ୍ମ । ଅନେକ ଭଲ ମଣିଷ ବି ଅଛନ୍ତି ଆମ ଦେଶରେ । ବିଭିନ୍ନ କାରଣରୁ ଆଗକୁ ଆସିପାରୁନାହାନ୍ତି ମଙ୍ଗ ଧରିବାକୁ । ହେଲେ, ଏବେ ସମୟ ବଦଳିଛି, ପରିସ୍ଥିତି ବି ବଦଳୁଛି । ପରିବର୍ତ୍ତନ ତ ପ୍ରକୃତିର ଧର୍ମ । ଆମକୁ ସ୍ୱୀକାର କରିବାକୁ ହେବ । ଏଇ ଦୀପଶିଖା ।ମାନଙ୍କର ଆତ୍ମବିଶ୍ୱାସକୁ ତେଜି ରଖିବାକୁ ହେବ । ବିଶ୍ୱାସ-ସଂକଳ୍ପରେ ପରିଣତ ହେଲେ ଲକ୍ଷ୍ୟ ସିଦ୍ଧି ନିଶ୍ଚୟ ହେବ । ପିଲାଙ୍କ ଦାବୀ ଯଥାର୍ଥ । ଏକ ଶୁଦ୍ଧ ସ୍ୱଚ୍ଛ, ବିଭେଦହୀନ ଅଖଣ୍ଡ ଭାରତକୁ ଗଢ଼ିବାର ସଂକଳ୍ପ ନେଇ ଆସିଛନ୍ତି । ବଳିତାଏ ଆଲୁଅ ବୋଲି ଇଏ ଅବହେଳାର ଯୋଗ୍ୟ ନୁହେଁ । ଏଥିରେ ଅସୀମ କ୍ଷମତା ଲୁଚି ରହିଛି ସହସ୍ର ଦୀପକୁ ଉଜ୍ଜିବୀତ କରିପାରିବାର । ବିପ୍ଳବ ତ ଏମିତି ଜନ୍ମନିଏ । ଭାବବିହ୍ୱଳ ଦୃଷ୍ଟିରେ ଦୂର ଦିଗ୍‌ବଳୟ ଆଡ଼କୁ ଚାହିଁ କହୁଥିଲେ ଶଶି ମାଷ୍ଟ୍ରେ... ଚେତନା ଭିତରେ ସଂଚିତ ହେଇଥିବା ସ୍ୱପ୍ନମାନେ ଉତୁରି ଆସୁଥିଲେ କ୍ରମଶଃ ପକ୍ଷୀ ଭଳି ଡେଣାମେଲେଇ ସତେ କି !

"ଆଉ ବେଶୀ ଡେରି ନାହିଁ.. ସୁଧାର ଆସିବ ଦେଶର ବ୍ୟବସ୍ଥାରେ... ସ୍ୱସ୍ତିରେ ନିଃଶ୍ୱାସ ନେଇ ପାରିବ ମଣିଷ... ସୁରକ୍ଷିତ ରହିବ ଦେଶର ମେଧା... ସୁରକ୍ଷିତ ରହିବେ ଭବିଷ୍ୟତର ବଂଶଧର... । ସମୟର ପରୀକ୍ଷା ଇଏ – ଆମକୁ ସାମ୍ନା କରିବାକୁ ପଡ଼ିବ ।"

'ବନ୍ଦେ ମାତରମ୍'ର ଜୟଧ୍ୱନି ଭାସି ଆସୁଥିଲା ପବନ ତରଙ୍ଗରେ । ଅନେକ ଅନେକ ଶବ୍ଦଧ୍ୱନି ଭିତରେ ବାରିହେଇଗଲା ଭଳି ଏକ କଣ୍ଠସ୍ୱର – ମାର୍କଣ୍ଡ ଶର୍ମାଙ୍କର, ଶୁଭି ଯାଉଥିଲା ମଝିରେ ମଝିରେ – "ଏଇ ଦୀପଶିଖାକୁ ଜାଳି ରଖ ମା' – ଜାଳି ରଖ" ।



# ଭୋକ ଭୂଗୋଳ

... ବୁଢ଼ୀ ପାଇଁ ଏତେ ପେରେମ ଆଉ ଦେଖାନା ତ ... ମୋ ଧିଅରେ ନିଆଁ ଚରି ଯାଉଛି ଜାଣ... ଆଉ ଖଟି ପାରିବିନି ମୁଁ ଦିନରାତି । ତିନି ତିନିଟା ପିଲାଙ୍କ ଜଞ୍ଜାଳ - କିଏ ଭାତ ମାଗୁଛି, ତ କିଏ ମୁଢ଼ି ମାଗୁଛି ଖାଇବାକୁ... ଏଣେ ବୁଢ଼ୀ ହଗିମୂତି ଦେନାସ୍ତି କଲାଣି ବିଛଣା । କୁଆଡ଼କୁ ମରିବି... ହାତରେ ପଇସା ନାହିଁ କି ହାଣ୍ଡିରେ ଚଉଳ ଦି'ମୁଠା ନାହିଁ । ଠଣାରେ ଟଙ୍କା ଦି'ଟା ରଖିଥିଲି ଯେ, ପୋଡ଼ାମୁହାଁ କେତେବେଳେ ନେଇଁ ପିଇ ଦେଇଛି... ଏବେ ଘରକୁ ଆସି ଗେରସ୍ତପଣ ଦେଖଉଛି, କଣ ନା ମୁଠେ ଭାତ କଅଁଳିଆ କରି ରାନ୍ଧି ବୁଢ଼ୀକୁ ଖୁଆନ୍ତୁନି... ବିକଳ ହେଉଛି ଖାଇବାକୁ । ଭୋକ ପେଟ ତ ଆଉଣ୍ଠି ହେଇଥିବ... ଏତେ ଦରଦ ଯଦି ଝରି ପଡୁଛି, ପୋଡ଼ାମୁହାଁ ଗଲୁନି ମୂଲଲାଗି ଆଣନ୍ତୁ ପଚିଶିତିରିଶି... ବୁଢ଼ୀକୁ ଖୁଆନ୍ତି, ତେଲଲୁଣ ହୋଇଥାନ୍ତା । ଖାଲି ଚିକିଣିଆ କଥା । କୁଆଡ଼େ ମରୁଥିଲୁ ରାତିରେ ଯେ, ଆଇଲା ବେଳେ ଜାଳ ଦି'ଖଣ୍ଡ ଗୋଟେଇ ଆଣି ପାରିଲୁନି...

କାହିଁକି ଏମିତେ ଗେଜେରେ ଗେଜେରେ ହଉଚୁ ଯେ... । ମୁହୂର୍ତ୍ତେ ଶାନ୍ତିରେ ରଖିଥୋଇ ଦେଉନି... ଘରକୁ ପଶୁ ପଶୁ ଜଳେଇଲା ମଣିଷକୁ । ଖଣ୍ଡିଆ ବିଡ଼ିକୁ ଫୁଙ୍କୁଫୁଙ୍କୁ ଘନିଆ ବିରକ୍ତିରେ କହିଲା - ତୁ ଗଲୁନି କଣ୍ଟ୍ରୋଲ ଦୁକାନକୁ ଚଉଳ ଆଣିଥାନ୍ତୁ । ମୋ ଆଗେ ନାଲିସ କଲେ ମୁଁ କୋଉଠୁ ଆଣିବି ? ଦୁକାନ କରିଚି ମୁଁ...

ସେବ ପଞ୍ଚମକୁ ଉଠି କଥାର ବୋଲୁଅଛାଡ଼ି କହିଲା - ଥୋଇଦେଇଛୁ କି ପଇସା । କେମେତେ ଆଣନ୍ତି, ସିଏ ମୋ ବାପ ନା ଶଶୁର ଯେ ଦେଇପକାନ୍ତା । ଭାରି ରୋଜଗାରିଆ ମରଦଟା ତ । ଟଙ୍କା ଆଣି ଝଣଝଣ କରି ଅଜାଡ଼ିଲାମିତି କଥା କହୁଚି - ଆଣିଲୁନି ଚଉଳ ।

ହାତରେ ଟଙ୍କା ନାଇଁ କି ବେଳ ନାଇଁ ଲାଇନିରେ ଠିଆ ହେବାକୁ । ସାନଟା ହାମୁଛି ଦି'ଦିନ ହେଲା ଜର କାଶରେ । ଏଣେ ବୁଢ଼ୀ ଡାକ ପକଉଛି ଥରକୁଥର ଏଇଟା ଦେ, ସେଇଟା ଦେ ପେଜଦେ ପାଣି ଦେ କହି । ମୋ କପାଳକୁ ସବୁ ଏକାଠି ଜୁଟିଛନ୍ତି । ନିଆଁଲାଗି ବୁଢ଼ୀର ହେଲେ ମରଣ ହ'ନ୍ତା । ମୋତେ ଯାହା ହନ୍ତସନ୍ତ କରିବାକୁ ଘୋଷାରି ହେଉଛି । ଆଉ ତୁ, ଯାଇ ପଡ଼ିଥିବୁ ପେଟେ ପିଇଦେଇ କୋଉଠି । ଆଇବୁ ଅଣ୍ଡିରାପଣ ଦେଖେଇବାକୁ । ଗରଗର ହୋଇ ସେବ ଘରର ଏପାଖ ସେପାଖ ଟହଲି ଯାଉଥାଏ ରାଗରେ । ଭୋକିଲା ପେଟ । ଖାଲି ହାଣ୍ଡି । ଝିଅ ଦିଟା ତ ବୋଉର ରାଗତମତମ ମୁହଁ ଦେଖି ଭୟରେ କୁଙ୍କୁଡ଼ିକାଙ୍କୁଡ଼ି ହେଇ ବୁଢ଼ୀମା' ବିଛଣା ପାଶେ ପଶିଚନ୍ତି । କାର୍ତ୍ତିକର ଶୀତୁଳିଆ ପାଗକୁ କଙ୍କାଳସାର ଫୁଙ୍ଗୁଳା ଧିଅ । ଥରିଯାଉଚନ୍ତି । ବୁଢ଼ୀର ବିଛଣା ବି ଓଦା । ଥରକୁଥର ପରିସ୍ରା ହୋଇଯାଉଛି । ହେଲେ ପିଲାଦିଟାଙ୍କୁ ଦେଖି ବିକଳ ଲାଗୁଛି – କନା ଖଣ୍ଡେ ଥିଲେ ଘୋଡ଼େଇ ଦିଅନ୍ତା ଅବା । ଜୁଳୁଜୁଳୁ କରି ଚାହିଁଲା – ମମତା ଉତୁରି ଆସିଲା । ବୁଢ଼ୀ ହାତ ବଢ଼େଇଲା କୋଳେଇ ନେବାକୁ । ନିଜ କୋତରା ଛିଣ୍ଡା ପଣତ କାନିରେ ଢାଙ୍କିବାକୁ ଚେଷ୍ଟା କଲା । ପିଲାଦି'ଟା ଜାକି ହୋଇଗଲେ ତା'ଛାତି ଉପରେ । ଆହା, କନା ଖଣ୍ଡେ ଦିଅନ୍ତୁନି ଲୋ ସେବ... ଡାକ ପକେଇଲା ବୋହୂକୁ... ପିଲାଦିଟା କାଲୁଆ ପଡ଼ିଗଲେଣି... ଆରେ ଘନ... ବାପ ଘନିଆ... କୁଆଡ଼େ ଗଲ ସବୁ । ଏବେ ତ ପାଟି ଶୁଭୁଥିଲା... ପଖାଳ ଦିଟା ବାଢ଼ି ଦେ... ଖାଇ ନଥେବ ରାତିରେ... ସେବ... ।

ସେବ ଉତ୍ତର ଦେଲାନି ତ ତତଲା ପାଣି ଯିମିତି ଅଜାଡ଼ି ଦେଲା ବୁଢ଼ୀଉପରେ... ବାଢ଼ିଦେବି ଖାଇବାକୁ ଭାତ କଂସାଏ ନାତିକୁ ତୋର... ମୋ ପିଲାଏ ଭୋକ ରେ ଛଟପଟ ହଉଚନ୍ତି – କାହାର ନିଘା ନାହିଁ ସିଆଡ଼କୁ – ଝଡ଼ି ପଡୁଛି ଦରଦ ନାତି ପାଇଁ ମରଣ ହଉନି ତୋତେ ଯାହା... ଦିନରାତି ଖାଲି ଦେ, ଦେ, ଖାଇବି ଖାଇବି ।

ଅନ୍ୟଦିନ ହୋଇଥିଲେ, ଘନ ତାତି ଉଠନ୍ତା ହେଲେ ଆଜିକାଲି ଅଭ୍ୟାସ ହୋଇଗଲାଣି ସେବ ପାଟିରୁ କୁଭାଷା ଶୁଣି ଶୁଣି । ବଧିରା ହୋଇଗଲାଣି କାନ । ଦଶବାର ବର୍ଷ ତଳେ ଏଇ ସାଇମୁଣ୍ଡର ଝିଅ ସେବତୀ ପାଇଁ ସେ କମ ପାଗଳ ହୋଇଯାଉନଥିଲା – ଖାସେ ତାକୁ ଦେଖିବ ବୋଲି ସାଇର ଏପାଖରୁ ସେପାଖ ଶହେଥର ଚକର ମାରି ଆସୁଥିଲା ଦିନରେ । ଭାରି ସୁନ୍ଦରୀ ଏଇ ସେବ, ଡଉଲ ଡାଉଲ – ବଡ଼ବଡ଼ ଆଖି – ତା' ଗଲା ଅଇଲା ବାଟକୁ ଚାହିଁ ବସିଥିବ ବାହାନା କରି । ଆଖିରେ ଆଖି ମିଶିଲେ ହସିଦେବ । ଦିନ ମଜୁରିଆ ମୁକୁନ୍ଦ ବାରିକର ଝିଅ – ଗୋଟିଏ ବୋଲି ସେରନ୍ତି । ହେଲେ ଏଇ ଘରକୁ ଆସିଲା ପରେ କୁଆଡ଼େ ହଜିଗଲା ତାର ରୂପର ଚମକ ଗାଲମୁହଁ ଠାକରା ହୋଇ ଏବେ ନଅଙ୍କିଆ ଦିଶୁଛି, ଏଇ ମରିଯିବ ଯିମିତି ।

ପାଟିର ମହୁ ସରିଗଲାଣି, ଏବେ ଖାଲି ବିଷ ଅଜାଡୁଛି । ସହି ହେଉନି କି ରହିହେଉନି । ଘନିଆ ଆଗକୁ ଆଉ ଭାବି ପାରିଲାନି ଭୟରେ... ପକେଟ ଅଣ୍ଡାଳିଲା ବିଡ଼ି ପାଇଁ । ହେଲେ ବିଡ଼ି କୁଆଡୁ ଆସିବ ! ଟିକେ ନିଶା କରିଥିଲେ ମୁଣ୍ଡରୁ ସବୁ ଅଜବ ଚିନ୍ତା ଉଡ଼ିଯାନ୍ତା... ଉପାୟ

ନାହିଁ... କାନ୍ଦୁକୁ ଆଉଜି ଲମ୍ବା ନିଃଶ୍ୱାସ ଛାଡ଼ିଲା ଘନ । ସାନଝିଅଟା ରା'ଧରିଛି... ରୋଗିଣା ପିଲାଟା – ଭୋକରେ ଆଉଟୁପାଉଟୁ – ବାଲିଟିକେ ପେଇଦେଲେ ଅବା ଶାନ୍ତ ପଡ଼ିଯାନ୍ତା – ତିନି'ବର୍ଷର ଛୁଆ ଖୀର ତ କେବେ ଦେଖିନି । ପେଜ-ବାର୍ଲିରେ ଯାହା ବଂଚିଛି । ସେବ ବୋଧେ ମାଇଲା ଝିଅକୁ... କାନ୍ଦୁକାନ୍ଦୁ ଅଟକି ଗଲା ନିଃଶ୍ୱାସ ନିଶ୍ୱେ... ଆହା, କେତେ କାନ୍ଦୁଛି – ବାପ ହୋଇ ସେ କିଛି କରିପାରୁନି । ନିଜେ ବି ତ ଜଳୁଛି ଭୋକରେ – କାଲି ରାତିରେ ପାଣିଚିଆ ଚ' କପେ ପିଇଥିଲା ଟେସନ ବଜାରରେ । ଭାବିଲା, ସେବକୁ କହିବ ବାର୍ଲିଟୋପେ ଛୁଆଟାକୁ ଦେ'ବୋଲି – ପୁଣି ଭାବିଲା, ନା, ନା ନିଆଁରେ ବାରୁଦ ପକେଇବନି । ଓଲଟି ସେବ ତାର ସାତପୁରୁଷକୁ ନରକରେ ନେଇ ଥୋଇଦେବ, ନହେଲେ ନିଜ ମୁଣ୍ଡକୁ ସଇତାନ ଚଢ଼ିଲେ କଟୁରି କି ପନିକି ଉଠେଇ କଣ ନାହିଁ କଣ କରିପକେଇବ । ଥାଉ – । କାନ୍ଦୁଥାଉ ମାଳିଆ ସିମିତି ।

ମନେପଡ଼ିଲା, ଦିନେ କହିଥିଲା ଏକଥା ସେବକୁ ଅବଶ୍ୟ କହୁକହୁ ପାଟିରୁ ଖସିଗଲା "କାହିଁକି ଜନମ କରୁଥିଲୁ ଝିଅ ତିନିଟାଙ୍କୁ, ଜାଣିନଥିଲୁ ଖାଇବାକୁ ଦେଇ ପୋଷି ପରିବୁନି ବୋଲି...", କହିତ ଦେଇଚି... ଦେଖ ସେବକୁ କିଏ ଆଉସମ୍ଭାଳେ । ରଣଚଣ୍ଡୀ ଭଳି ମାଡ଼ି ଆସି ଠିଆ ହୋଇଗଲା ଆଗରେ । ପଚରିଲା 'ନାଇଁ... ମୁଁ ଜନମ କରିଥିଲି ମନକୁ, ନା ବାପଘରୁ ଆଣିଥେଲି–ହଇରେ ହାରାମଜାଦା, ମନେପଡ଼ିଲାନି ତୋତେ ସୁଖ ଗୋଟେଇଲା ବେଳକୁ ଏକଥା ମନେ ନଥିଲା । ବାପ ହେଇଚୁ ଲାଜ ଲାଗୁନି ମୁହଁକୁ ? ମୋତେ ତୁ କଣ ପାଇଚୁ କି... ବାହାର ମୋ ଘରୁ... ନହେଲେ ଦେଖିବୁ କଣ କରିବି... ତୋତେ ମାରିକି, ମୁଁ ମରିବି କନିଅର ମଂଜିଖାଇ । ତୋ ଭଳି ଗେରସ୍ତ ଥିଲେ କେତେ ନଥିଲେ କେତେ । ବାଟଦିଶି ନଥିଲା ବାହାରି ଯିବାକୁ ତା'ଆଗରୁ । ସପ୍ତାହେ ପରେ ଫେରି ଥିଲା । ଆଉ ଦିନେ ଉଠେଇନି ଏକଥା ।

ପାଖଘରୁ ବୁଢ଼ୀମା'ର କୁହ୍ନାଣ ଶୁଭୁଛି; ଡାକ ଶୁଭୁଛି – ବୁଢ଼ୀ ତାକୁ ଖୋଜୁଛି ପାଖକୁ ଟିକେ ଆ'ରେ ଘନିଆ... ଏ ଋନ୍ଦି... ଅଇଲୁମାଁ – ପିଠିରେ ଟିକେ ହାତ ବୁଲେଇଦେଲୁ । ବଡ଼ ନାତୁଣୀ ଋନ୍ଦି – ଋନ୍ଦେନୀ – ବୁଢ଼ୀ ନାଁ ରଖିଥିଲା ବଡ଼ ସରାଗରେ । ବଡ଼ ନିଃଶ୍ୱାସଟିଏ ନେଇ ଘନ ଭାବିଲା... ତା'ସଂସାର କେବେ ଭଲରେ ନଥିଲା ସତ, ହେଲେ ଖରାପରେ ବି ତ ନଥିଲା – ଆଗରୁ ସେ ମଜୁରି ଖଟିବାକୁ ଯାଉଥିଲା ଆଖ ପାଖ ଗାଁକୁ । ଶହେ, ପଚାଶ ହାତକୁ ଆସିଲେ ସଂସାର ଚଳୁଥିଲା ଶାଗ ଭାତରେ । ମହରଗ କାଳ କୁଆଡୁ ଆସିଲା, ନିଅଣ୍ଟ ପଡ଼ିଲା ସବୁ । ଏଇ ଗାଁ ଭିତରେ ତ କାହାର ସେମିତି ଜମି ନାହିଁ ମୂଲ ଲାଗିବାକୁ । ପର ଗାଁକୁ ଯିବା କଥା, ସେମାନଙ୍କ ମନ – ଋହିଁଲେ କାମ ଦେବେ ନହେଲେ ନାହିଁ । ନିଜ ଗାଁରେ ଶହେଘର ମଣିଷ ହେବ ନହେବ । ଅଧାରୁ ଅଧିକ ଗରିବ ଖଟିଖିଆ, ଯୋଉ କୋଡ଼ିଏ ପଚିଶ ଚଳନ୍ତି ପକ୍ଷର ଘର ଅଛନ୍ତି – ତାଙ୍କରି ବେଳଅବେଳରେ ଲୋଡ଼ିଲେ ଯିବାକଥା । ବୁଢ଼ୀମା ଯାଉଥିଲା ଆଗରୁ – ସେବ ବି ଯାଏ ଡାକିଲେ । ସେଇ ମଜୁରି ସମୁଦ୍ରକୁ ଶଙ୍ଖେ ପାଣି । ଆଗରୁ ସରକାରୀ ଯୋଜନା–

ପଞ୍ଚାୟତର ଶହେଦିନିଆ କାମ, ଚାଲିଥିଲା-ତାକୁ ମାସରେ ଦି'ତିନିଥର ମିଳିଯାଏ । ଏବେ ଆଉ ନାହିଁ...

ଝିଅଟାର କାନ୍ଦ ବନ୍ଦ ହୋଇଯାଇଛି... କଣ ଟିକିଏ ଖୁଆଇଛି ବୋଧେ ସେବ । ଭାବୁଛି... ସେବ ଝୁଅକୁ କାଖେଇ ତା'ପାଖଦେଇ ବାହାରିଗଲା ଦାଣ୍ଡକୁ-ବୁଝିପାରିଲା ଘନ ସେବ ଏବେ ଥିଲାଘର-ଦୋକାନୀ ମୁକୁନ୍ଦ ସାହୁ ଘରକୁ ଯାଉଛି - ମୁଠେ ଭାତ କି ରୁଟିଖଣ୍ଡେ ମାଗି ଝିଅକୁ ଖୁଆଇବ ବୋଲି ହୁଏତ । ଭାବିଲାବେଳକୁ ଘନ ଛାତିକୋରି ହୋଇଗଲା, ସେ କିଛି ବ୍ୟବସ୍ଥା କରି ପାରୁନି ଚେଷ୍ଟା କରି ମଧ୍ୟ ।

ମନେପଡ଼ିଲା ପୁରୁଣା ଦିନର କଥା... ପିଲାଦିନୁ ତ ମା'ବାପା ଆଗପଛ ହୋଇ ଚାଲିଯାଇଥିଲେ । ଏଇ ବୁଢ଼ୀମାଁ ଥିଲାବୋଲି ତାକୁ କିଛି ବାଧିନି । ଅସଂଭବ ପରିଶ୍ରମ କରି ତା'ଭଳି ବାପମା' ଛେଉଣ୍ଡକୁ ପାଳିପୋଷି ମଣିଷ କରିଛି - ବୁଢ଼ୀର ସ୍ନେହ ପାଇଁ ହିଁ ସେ ଏମିତି ଅମଣିଆ ହୋଇଯାଇଛି ବୋଲି ସମସ୍ତେ କୁହନ୍ତି ବି । ହୋଇଥିବ । ତା' କଥା ତ ବୁଢ଼ୀ କେବେ ଟାଳିନି କି ଟାଳିବନି । ମନେପଡ଼ିଲା ତା'ବାହାଘର କଥା । ସେବ ଆସିନଥାଏ ଘରକୁ, ହେଲେ ଉଛନ୍ନ କରୁଥାଏ ତାକୁ । ତା'ଦେହମନ ବି ଉଛନ୍ନ ହେଉଥାଏ ତାକୁ ଘରକୁ ଆଣିବା ପାଇଁ - ହେଲେ ସେବ ବାପ, ଗୋଡ଼ଟେକୁଥାଏ । କଣ ଅଛି ଘନଠି ମୂଲ ଲାଗିଲେ ପେଟ ପୋଷୁଛି ଝୁଅକୁ ମୋର କି ସୁଖରେ ରଖିବ - ଚାଖଣ୍ଡେ ଜମି ନାହିଁ; ହେଲେ, ସେ ଜାଣିଥିଲା, ସେବବାପଟା ଲୋଭୀ । ତା'ଆଖି ବୁଢ଼ୀମାଁର ବେଲତୋଟା ଆଉ ଜମି ଅଧମାଣରେ । ଆହା... ବୁଢ଼ୀମାଁ ତାର ବଡ଼ ଦୁଃଖୀ ମଣିଷ । ଏଇ ପାଖ ଗାଁ ଶରଦପୁରରେ ତା'ଶାଶୂଘର । ଶାଶୂଘରେ ସୁଦାମ ଖିଲାର ଛଡ଼ା ଆଉ କେହି ନଥିଲେ । ମଧ୍ୟବୟସର ମଣିଷ, ଭଲ ମଣିଷଟି, ହେଲେ ଭାଗ୍ୟ ଖରାପ ବାହାଘରର ବର୍ଷେ ତିନିଟା ଯାଇନି ସାପ କାମୁଡ଼ାରେ ମରିଯାଇଥିଲା । ସେଇଦିନୁ ଅଳ୍ପବୟସୀ ବୁଢ଼ୀମାଁ ଭାଇ ଘରକୁ ଆସି ରହିଛି ତ ରହିଛି । ସେ' ସେତେବେଳକୁ ଦି'ବରଷର । ସେଇଦିନୁ ତାକୁ ବୁଢ଼ୀମାଁ କୋଳେଇ ନେଇଛି । ଖଟି ଖଟି ବୁଢ଼ୀର ଅଣ୍ଟା ଭାଙ୍ଗିଯାଇଛି । କାମକୁ ଏବେ ପାରୁନି - ନହେଲେ ସେଇଥିଲା ଅନ୍ନଦାତା । ଆଜି କିନ୍ତୁ ଏଇ ପରିବାର ପାଇଁ ସେ ବୋଝ ହୋଇ ପଡ଼ିଛି, ସେବର ଚକ୍ଷୁଶୂଳ ସେ ତା'ର ମରଣ ଚାହୁଁଛି । ସେ ନିଜେ ବି...

ଅଥଚ ସେ ଯେତେବେଳେ ଛନଛନିଆ ଭେଣ୍ଡିଆ ହୋଇ ଦାଣ୍ଡରେ ବାହୁ ଫରକଟେଇ ବୁଲିଲା ବୁଢ଼ୀର ଛାତି ଫୁଲି ଉଠୁଥିଲା, ଘନିଆ ପାଇଁ ତା'ର ମମତାର ମାପ ନାହିଁ । ସେ ଯେତେବେଳେ ସେବକୁ ବାହାହେବ ବୋଲି ଅଡ଼ିବସିଲା, ବୁଢ଼ୀ ମନାକରିପାରିଲାନି । ଲୋଭୀ ମୁକୁନ୍ଦାକୁ ଅନେକ ବାଗରେ ବୁଝେଇ ସୁଝେଇ ରାଜି କରାଇଥିଲା । ମୁକୁନ୍ଦା ବାରିକ ଯେତେବେଳେ ସେବତୀ ବଦଳରେ ବେଲତୋଟା ଆଉ ଜମି ଚାହିଁଲା, ବୁଢ଼ୀ ମନ ମରିଯାଇଥିଲା ଖୁବ୍ । କହିଥିଲା ଜମି ଯଦି ନେବୁ, ତୋଝିଅ ଘରକୁ ଆସିଲେ ଖାଇବ କଣ - ସବୁ ତ ତାର, ଆଉ କିଏ ଅଛି ?? ମୁକୁନ୍ଦ କିନ୍ତୁ ବିଶ୍ୱାସ କଲାନି । ବୁଢ଼ୀ ରାଗୀଯାଇ କହିଲା, ଏବେ ନହେଲା ତୋ ଝିଅ ଆସିବନି ଏ ଘରକୁ ।

... ଭୁଲ ତ ସେଇଠି କରିଥିଲା ଘନ । ମନେପଡ଼ିଲା ସେଦିନର ଘଟଣା ସବୁ । ସେ ହିଁ ଅଡ଼ି ବସିଲା, ଭୋକ ଉପାସରେ ଶୋଇଲା ଚାରିଦିନ କାଳ, ସେବ ଏ ଘରକୁ ନଆସିଲେ ସେ ଏମିତି ମରିବ ଉପାସରେ ।

ଏକଥା ବୁଢ଼ୀର ଅନ୍ତରାତ୍ମାକୁ ଥରେଇ ଦେଇଥିଲା । ଅପତ୍ୟ ସ୍ନେହ ଆଗରେ ତାର ମା'ପଣ ହାରମାନିଲା ଘନର ସୁଖ ଘନର ଜୀବନ ଠୁ କ'ଣ ଜମି ଖଣ୍ଡକ ବଡ଼ ହୋଇଯିବ ! ସେବ ଆସିବ ଏ ଘରକୁ । ଘର କରିବ ଘନ ସୁଖରେ ସେବତୀକୁ ନେଇ । ସେ ଅରାଜି ହେବନି ଆଉ । ବୁଢ଼ୀ ଉପାୟ ଚିନ୍ତାକଲା ତା'ପାଇଁ । ହାତକୁ ଟଙ୍କା କଉଡ଼ି ନଆସିଲେ ସେ ବାହାଘର କରିବ କିମିତି । ବରକନିଆଁ ପାଇଁ ଦି'ଖଣ୍ଡ ନୂଆଁଲୁଗା ତ କିଣିବ । ଅଟ୍ଟିକିଆ ବାହାଘର ସାମଗ୍ରୀ ତ ଆସିବ । ଆଖପାଖର ପଡ଼ିଶାଏ କ'ଣ ଚାହିଁଥିବେ । ଦିଗୁଣ୍ଡା ଭାତଡ଼ାଲି ତ ଖୁଆଇବ । ସେ ତା' ଜମିକୁ ବନ୍ଧକ ରଖିବ । ସେଇ ମୁକୁନ୍ଦା ପାଖରେ । ପଛକେ ତା' ଘନିଆଁ ମୂଲଲାଗିଲେ ଧୀରେ ଧୀରେ ଶୁଝିଦେବ । ତା'ପରେ ମୁକୁନ୍ଦା ନେଉ - ତାର ବି ଆଉ କିଏ ଅଛି କି - ସେଇ ସେବ, ତାରି ପାଇଁ ସବୁ । ଏବେ ବୁଝି ପାରୁନି ମୁକୁନ୍ଦା ସିନା ... ବୁଝିବ ।

ଏକଥା ମନସ୍ତ କରିସାରି ଖବର ପଠେଇଲା ମୁକୁନ୍ଦ ବାରିକ ପାଖକୁ । ରାଜିହେଲା ମୁକୁନ୍ଦା । ଶେଷରେ ସେଇୟା ହେଲା, ସେବ ଆସିଲା ନୂଆଁବୋହୂ ହୋଇ ଏ ଘରକୁ । ହଳଦିଆ ଶାଢ଼ି, ସିନ୍ଦୂର, ଅଳତା ପିନ୍ଧି । ସେଇ'ଯା କେଇଟା ଦିନ ମନଖୁସିରେ ପେଟ ପୂରେଇ, ମନ ପୂରେଇ ଭାତ ଖାଇଚି, ସୁଖ ଭୋଗ କରିଛି... । ତା'ପରଠୁ ତ ଅକାଳ ମାଡ଼ି ଆସିଲା ଘରକୁ । କେମିତି କେଜାଣି, କୋଉବାଟରେ ସେ ତ ଜାଣିପାରିଲାନି । ତେଣିକି, ରୋଗ ପଶିଲା ଘରେ । ଜମି ମୁକୁଳେଇବ କଣ ଆଉ । ତାପରକୁ ପର ତ ପିଲାଏ ଆସିଗଲେ । ତେଣିକି ତ ଭୋକ, ଭୋକ ଆଉ ଭୋକ । ଧନୀ ପରିଡ଼ା ଘରକୁ କାମ କରିବାକୁ ଯାଇ ତାଙ୍କ କୂଅମୂଳେ ପଡ଼ି ବୁଢ଼ୀମାଁର ଅଣ୍ଟା ଭାଙ୍ଗିଲା । ଚାରିଘର ପାଇଟି କରି ଯାହା ଆଣୁଥିଲା ସବୁ ଠପ୍ ହୋଇଗଲା । ବୁଢ଼ୀ ମା କତରା ଧଇଲା - ସେତେବେଳକୁ ସେବ ପୁଆତୀ - ଏଇ ମାଳିଆ ଟା ଜନମିଥାଏ । କିଯୋଗରେ ଝିଅଟା ଜନମ ହେଲା ଯେ ସେଇଦିନୁ ଅଶାନ୍ତି ଅସୁଖ, ଅଭାବ ଘରକୁ ଗୋଡ଼େଇଛି ।

ବେଳ ଅବେଳରେ ମୁକୁନ୍ଦା ଦୁଆରେ ଠିଆହେଲେ ପାଏକି ସେରେ ଚାଉଳ ମିଳେ ତା'ବି ଗଲା - ଜମିକୁ ରଖି ପାରିଲାନି ମୁକୁନ୍ଦାବି, ବିକ୍ରିବଟା କରି କୁଆଡ଼େ ଦେଶାନ୍ତରୀ ହେଲା କି ମଲା ଏ ଯାଏ ଖବର ନାହିଁ...

ସେବର ମିଜାଜ ବିଗିଡ଼ିଲା - ସବୁ ସରାଗ ହଜିଗଲା - ଏବେ ଖାଲି ବିଷ ବରଷୁଛି ଘରେ ପଶିଲେ । ସେ ନିଜେ କେତେଥର ମରିବବୋଲି ନଇ, ପୋଖରୀ ଦେଖିଛି, ଟେରେନ ଲାଇନ୍‌ରେ ଶୋଇଛି ହେଲେ ମରିପାରିନି । ସାଂଗ ଦାମ, ବିଶିନା ତାକୁ ଧରି ଆଣି ବୁଝେଇ ଶୁଝେଇଛନ୍ତି । ... ଏଇତ ... ଭାବନା ଅଟକିଗଲା ଘନର ମୁହୂର୍ତ୍ତେପାଇଁ, ସେ ଯଦି ... ସେଦିନ... ସାଂଗ କଥାରେ ପଡ଼ି ପୁଣିଥରେ ଭୁଲ କରିନଥାନ୍ତା... ଦାମ ଯେତେବେଳେ ବୋତଲ

ଖୋଲି ବଂଚିବାର ନୂଆଁ ଲୋଭ ଦେଖେଇ କହିଲା ଏଥିରୁ ଦି'ଢୋକ ପି ଦେ ତ ଦେଖିବୁ ସବୁ ଦୁଃଖ କଷ୍ଟ ନିମିଷକେ ଉଡ଼ିଯିବ । ହାଲୁକା ଲାଗିବ ମନ - ଆରେ, ନିଜେବଂଚିଲେ ବୋପାର ନାମ । ଅଣ୍ଡିରା ପୁଅ ହୋଇ ମାଇପିଙ୍କ ଭଳି ମରିବି ମରିବି କ'ଣ ହଉଛୁ ବରଂ କହ ମାରିବି । ତା'କଥା ସେଦିନ ସତ ଲାଗିଥିଲା । ସେଇଦିନୁ ତ ଛାଡ଼ିପାରୁ ନି ସେ ନିଶାପାଣିକୁ । ନିଶା ତା'ର ଦୋସର ପାଲଟି ଯାଇଛି । ଏବେ ସମସ୍ତେ ତାକୁ ଘୃଣାଆଖିରେ ଦେଖୁଛନ୍ତି । ସେବ ତ ପାଖ ପଶଉନି ଆଉ । ବୁଢ଼ୀମା ଦୁଃଖ ବି ଦେଖିପାରୁନି । ବୋଝ ବୋଝ ଅପରାଧ ଏବେ ତା' କାନ୍ଧରେ । ବଂଚିଛି ସେ ସତ ହେଲେ ଏ ବଂଚିବାଟା କ'ଣ ବଂଚିବା - ପ୍ରତି ମୁହୂର୍ତ୍ତରେ ତ ମରୁଚି ସେ ।

ପେଟ ଭିତରଟା ହଠାତ୍ କେମିତି ଜଳିଗଲା ଭଳି ତାକୁ ଲାଗିଲା । ପେଟ ଭିତରେ ଏତେ ନିଆଁ କୋଉଠୁ ଆସେ କେଜାଣି ! ଏ ଜାଳା ବଡ଼ ଅସହ୍ୟ, ସବୁ କଷ୍ଟରୁ ବଳି ଏଇ ପେଟର ଭୋକ । କିମିତି ଲିଭିବ ଏଇ ନିଆଁ - ଭାରି କଷ୍ଟ, ଘନ ଆଉ ବସି ପାରିଲାନି । ପେଟକୁ ଧରି ଭୁଇଁ ଉପରେ ଲେପଟେଇ ପଡ଼ିଲା ମାଲୋ, ବାପଲୋ କହି । ପାଣି ଆଞ୍ଜୁଳେ ପିଇ ନିଆଁକୁ ଲିଭେଇବ କି ?

ସେ ପାଖ ଘରେ, ବୁଢ଼ୀ ମାଁ କୋଳରେ ଜାକି ହୋଇ ଶୋଇଥିବା ଝନ୍ଦି ପେଟରେ ବି ମୂଷା ଦେଉଁଥିଲା । ସ୍ଥିର ହୋଇ ଶୋଇପାରୁନଥିଲା... ବୋଉ କୁଆଡ଼େ ଯାଇଛି ମାଳିଆକୁ ନେଇଁ । ସକାଳୁ କିଛି ଦେଇନି ଖାଇବାକୁ । ଭାରି ଭୋକ । ସେ ନିଜେ ଉଠିବସିଲା - ବାସ ଶୋଇପଡ଼ିଛି ଭୋକରେ । ବୁଢ଼ୀମାଁ ବି ଶୋଇପଡ଼ିଛି । ଏତିକିବେଳେ ସେ ହାଣ୍ଡିଶାଳକୁ ଯାଇ ଖୋଜିବ । କାଲି ଦି'ଝରିଟା ପିଜୁଳିକଷି ବୋଉ ଆଣିଥିଲା, କାହା ବାଡ଼ିରୁ କେଜାଣି । ନିଶ୍ଚେ ରଖିଛି କୋଉଠି ସେ ଦେଖିଛି ଅଣ୍ଟିରୁ କାଢ଼ି ଥୋଇବା । ସେଥିରୁ ହେଲେ ଗୋଟେ ମିଳନ୍ତା । ବୋଉ ଆସିବା ଆଗରୁ ଖାଇଦିଅନ୍ତା । ବାସ ବି ଭାଗ ମାଗନ୍ତାନି । ଏଇୟା ଭାବି ଖୁବ୍ ସତର୍କରେ ଉଠି ଝନ୍ଦି ପ୍ରଥମେ ବାରଣ୍ଡା କୋଣ ହାଣ୍ଡିଶାଳକୁ ଗଲା ସେଠି ହାଣ୍ଡି ଚୁଲି ଆଉ ଠଣା । ଠଣା ଖୋଜିବାକୁ ହାତ ବଢ଼େଇଲା ପାଇଲାନି - ଧୀରେ କରି ପିଢ଼ାକୁ ଟାଣିଆଣି ଠିଆହେଲା ତା ଉପରେ । ତଥାପି ଆଖି ପାଉନି, ହେଲେ ବି ଅଣ୍ଡାଳିଲା । ହାତରେ ପଡ଼ିଲା କଣ ଗୋଟେ ଟାଣି ଆଣିଲା - ସଲସଲ ପିମ୍ପୁଡ଼ି - ଝୁଟରାଟ୍ କାମୁଡ଼ି ପକେଇଲେ ତାକୁ । କାଗଜରେ ମୋଡ଼ିମାଡ଼ି ଥୋଇଚି ବୋଉ । କ'ଣ ଯେ ? ଝାଡ଼ିଝୁଡ଼ି ତାକୁ ଖୋଲି ଦେଖେତ ବିସ୍କୁଟ ଦି'ଖଣ୍ଡ, ପିମ୍ପୁଡ଼ି ଖାଇଯାଇଛନ୍ତି ଅଧା ସେଥେରୁ । ଯାଃ । ତଥାପି ଫୁଙ୍କିଫାଙ୍କି ପାଟିରେ ଦେବାକୁ ଯାଉଛି ... ଘର ଭିତରୁ ବାପ ଡାକିଲା କିଏ... ? ଖୁଡ଼ଖାଡ଼ ତ ଶୁଭୁଛି... ସେବ ତ ଫେରିନି ଆଉ କ'ଣ ଝନ୍ଦି ? ଡାକିଲା... ଝନ୍ଦି କିଲୋ... ଅଇଲୁ ଟିକେ ଇଆଡ଼େ । ବିଝରୀ ଝନ୍ଦି ଛାନିଆ ହୋଇ ଡରିଡ଼ରି ଆସି ଠିଆହେଲା ବାପ ଆଗରେ । ଘନ ଝହିଁଲା ଆଖି ଟେକି ଝିଅ ମୁହଁକୁ । ପାଟିରେ କଣ ଲାଗିଛି - ହାତମୁଠା କରିଛି । ପଋରିଲା, କଣ ଖାଇଚୁ ? ଦେଖା ହାତ, କ'ଣ ଧରିଛୁ...

ମାଡ଼ ଭୟରେ ଡରିମରି ହାତ ଖୋଲିଦେଲା ଋନ୍ଦି, ବିସ୍କୁଟ ଖଣ୍ଡିକ ତଳେ ପଡ଼ିଛି - କି ନାହିଁ ଘନିଆ ଚଟ୍ କରି ଉଠେଇ ନେଇ ପୂରେଇ ଦେଲା ପାଟିରେ... ଆଉ ଯଦି କୋଉଠି ରଖିଛୁ ଦେ... । "ଆଉ ନାହିଁ ବାପା । ସେଇତକ ଥିଲା... ମୋତେ ଭାରି ଭୋକ ଲାଗୁଛି..." କହୁ କହୁ ଆଖିରୁ ଟପ ଟପ ଲୁହ ଝରି ପଡ଼ିଲା । ବିଋରୀର ଭୟରେ, ସେ ଜାଣେ ବାପ ଏବେ ମାରିବ ନିଶ୍ଚେ ତାକୁ ।

କିନ୍ତୁ ଘନକୁ ଦୟା ଲାଗିଲା, ଆହା, ଝିଅ ପାଟିରୁ ଛଡ଼େଇ ଚିରୁଡ଼ାକ ବିସ୍କୁଟ ସେ ଖାଇଦେଲା । ସତରେ ଭୋକ ବୁଦ୍ଧି ନଷ୍ଟ କରେ । କହିଲା, କାନ୍ଦୁଛୁ କାହିଁକି, ଯା'ତ ହାଣ୍ଡିରୁ ତୋରାଣି ଗିନାଏ ଆଣିବୁ । ଶୀଘ୍ର ଯା - ବୋଉ ଆସିଯିବ ।

ଋନ୍ଦି ବାପର ଆଦେଶ ମାନି ଗଲା ସିନା, ସେ ଜାଣେ ହାଣ୍ଡିରେ କିଛି ନାହିଁ । ହାଣ୍ଡିଶାଳ ଭିତରୁ କହିଲା 'କିଛି ନାହିଁ ବାପା, ପାଣି ପିଇବୁ ?' 'ହଉ ଆଣେ - ପେଟର ଜଳନ୍ତା ନିଆଁକୁ ତ ନିଭେଇବାକୁ ହେବ ଯିମିତି ହଉ । ଋନ୍ଦି ଆଣିଦେଲା ପାଣି - ଢକଢ଼କ ପିଇ ଦେଇ ଆଖିବୁଜିଲା ଘନିଆ ଖୁବ୍ ଅବସନ୍ନ ଲାଗୁଥିଲା ତାକୁ ।

ସାହୁଘର ଖିଆପିଆ ସରୁଥିଲା, ସେବ ଯାଇ ପହଞ୍ଚିଲା । ତାକୁ ଦେଖି ସାହୁଆଣୀ କହିଲେ, କିଲୋ, ଆଜି ସଅଳସଅଳ କେମିତି ମୁହଁ ଦିଶିଲା ? ସେବର ମଉଳା ମୁହଁରେ ଟିକିଏ ଯାହା ପ୍ରସନ୍ନତା ଫୁଟି ଉଠିଲା... "ହଉ, ଆଇଚୁ ଯଦି ବାସନତକ ମାଜିଦେଇ ଯା, କହିଲେ ସାହୁଆଣୀଏ । ସେବ ମନେମନେ ସେଇୟା ପାଞ୍ଚୁଥିଲା । ରୋଗିଣା ମାଳିଆକୁ ବାରଣ୍ଡାକଡ଼ରେ ଶୁଆଇ ଦେଇ ନିଜେ ବାସନ ଗୋଟେଇବାକୁ ଗଲା । ସବୁ ବାସନ ଏକାଠି କରି କୂଅମୂଳକୁ ନେବା ଆଗରୁ ବଳକାବଳକି ଅଇଁଠାକୁ ଅଲଗାରେ ସାଇତି ରଖିଲା ।

ବାସନମଜା ସରିଲା । ହାତଧୋଇ ମାଳିଆକୁ ଉଠେଇ ଆଣି ସେଇ ଅଇଁଠା ଭାତରୁ ଗୁଣ୍ଡାଏ ଦିଗୁଣ୍ଡା ତା ପାଟିରେ ଦେଇ, ବାକି ପେଜତୋରାଣିକୁ ନିଜେ ପିଇଲା, ଘର ଭିତରୁ ଋହିଁଥିଲା ନୂଆଁବୋହୂ ଲତା, ଦୟା ଲାଗିଲା, କହିଲା ଖାଲି ତୋରାଣି କାହିଁକି ପିଉଛୁ ରହ କହି ଗିନାଏ ଭାତ ଆଣି ଥୋଇ ଦେଲା ସେବ ପାଖରେ । କୃତ୍ୟକୃତ୍ୟ ହେଲା ସେବ, କିନ୍ତୁ ନିଜେ ଖାଇଲାନି । ପତର ପୁଡ଼ିଆ କରି ପଣତରେ ବାନ୍ଧିଦେଲା । ଘରକୁ ନେବ ବୋଲି । ଅଇଲାବେଳକୁ ସାହୁଆଣୀ ଟଙ୍କା ଦିଟା ବଢ଼େଇଦେଉଥିଲେ । ସେବ କହିଲା ମାଁ ତେମେ ତ ଜାଣିଛ ଟଙ୍କାନେଲେ ପୋଡ଼ାମୁହାଁ ଦେଖୁ ଦେଖୁ ନେଇଁ ଶୁଣ୍ଡିଘରେ ପଶିବ । ତାକୁ ଲୁଚେଇ ପାରିବିନି କୋଉଠି ତେମେ ଯଦି ଋଉଳ ଦିଅନ୍ତ ମୋ ଚୁଲିରେ ହାଣ୍ଡି ବସନ୍ତା ମାଁ - ଦି'ଦିନ ହେଲା ଘରେ ଚୁଲି ଜଳିନି... ହେଉ ରହ ଦଉଛି କହି ସେରେଖଣ୍ଡେ ଋଉଳ ଆଣି ଅଜାଡ଼ି ଦେଲେ ସେବ ପଣତ କାନିରେ । କହିଲେ- "ଘନ ଭଳି ପିଲାକୁ ମଦ ସାରିଦେଲା ଲୋ ।" ଘରକୁ ଫେରିଲା ବେଳକୁ ଦିପହର ଗଡ଼ି ଯାଇଥିଲା । ଘରେ ଘନିଆ ନଥିଲା । ଘରେ ପଶୁ ପଶୁ ବୁଢ଼ୀର ପାଟି ଶୁଭିଲା... କ'ଣ ଆଣିଛୁ ସେବ... ଭାତଦିଟା ଦିଅନ୍ତୁନି, ଭୋକ... ।

ସେବ ମୁହଁମୋଡ଼ି ଗେଜେଗେଜେ ହେଲା - ରାକ୍ଷାସୁଣୀ ମରୁନୁ ହେଲେ; ସଂସାର ଯାକର ଭୋକ ତୋତେ । ଯେତେ ଖାଇଲେ ବି ତୋ ପେଟ ପୂରିବନି । ହେଲେ ଘନ୍ଦି, ବୋଉ ଆଣିଥିବା ଭାତ ଗିନାକରୁ ମୁଠାଏ ଧରି ଉଠିଗଲା ବୁଢ଼ୀମାଁ ପାଟିରେ ଦେବବୋଲି, ସେବ ଆଖିରେ ପଡ଼ିଗଲା କି, ଝୁଅକୁ ବେକଧରି ଘୋଷାରି ଆଣୁ ଆଣୁ କାନମୋଡ଼ି ବିଧାଏ ଥୋଇ କହିଲା, ନିଜ ପେଟ ତ ପୂରୁନି - ବୁଢ଼ୀ ପାଇଁ ଏତେ ସରାଗ କିଆଁ - ବାପ ଆଣି ଥୋଇଚି କି ? ମରୁନୁ ପୋଡ଼ାମୁହିଁ ।' ସେବ ଗରଗର ହେଉଥିଲା ସିନା, ତା'ଛାତିଭିତରଟା କରତି ହୋଇଯାଉଥିଲା ମାଁ ହୋଇ ସେ ପିଲାଙ୍କ ପାଟିରେ ଆହାର ଦେଇ ପାରୁନି । ପଶୁପକ୍ଷୀଙ୍କଠୁ ବି ସେ ହୀନ ହୋଇ ଯାଇଛି । ପୋଡ଼ାମୁହାଁ ଘନ ତାକୁ କୁଆଡ଼ର କଲାନି ।

ଭାବୁଭାବୁ ଦୀର୍ଘନିଃଶ୍ୱାସ ପକେଇ ହାଣ୍ଡିଶାଳ ଝାଡ଼ିଝୁଡ଼ି ଜାଳ ଖୋଜି ସଜାନିଲା ସେବ । ବୋଉ ଚୁଲି ଜାଳୁଛି ଦେଖି ଘନ୍ଦିଆଉ ବାସର ମନ ଉଲୁସି ଉଠିଲା । ବୋଉ ରୋଷେଇ କରିବ ଆଜି, ପଚାରିଦେଲା ମଧ, ଆଜି ଭାତ ରାନ୍ଧିବୁ ବୋଉ ? ? ଆମେ ଭାତ ଖାଇବା... ବୁଢ଼ୀ କାନରେ ପଡ଼ିଗଲା ଶବ୍ଦଟା - 'ଭାତ ରାନ୍ଧୁଚୁ କିଲୋ ସେବ - ମୋତେ ପେଜଭାତ ଦିଟା ଦେବୁ...ଏଁ... ଏ... ସେବ... ।' 'ଓହୋ, ସବାଖାଇ କାନରେଇ ପକେଇବାକୁ ଥିଲା ତୋତେ' କହି ଘନ୍ଦିପିଠିରେ ଦିବିଧା ଥୋଇ କହିଲା ଯା, ଉଠୁ ଏଠୁ, ଜାଳ ଗୋଟେଇ ଆଣ ବାଡ଼ିପଟୁରୁ - ମୁହଁ ଶୁଖାଇ ଉଠିଗଲା ଘନ୍ଦି - ବୁଝିପାରୁନଥିଲା ସେ କି ଭୁଲ କଲା ଯେ, ବୋଉ ତାକୁ ମାରିଲା । ବୋଉ ଆଗପରି ଆଉ ଭଲ ନାହିଁ । ଖାଲି ରାଗୁଛି କଳି କରୁଛି । ସବୁବେଳେ ତାକୁ ମାରୁଛି । ବୁଢ଼ୀମାଁକୁ ବି ତ ଭୋକ ହେଉଥିଲା ବୋଲି ସକାଳେ କାନ୍ଦୁଥିଲା, ଆହା ବୁଢ଼ୀମାଁଟା ଭଲ ହେଲେ ବୋଉ ତାକୁ ଖାଇବାକୁ ଦିଏନି । ଖାଇବାକୁ ମାଗିଲେ ଗୋଇଠା ମାରେ । ତାକୁ କାନ୍ଦ ମାଡ଼େ ଦେଖିଲେ । ଜାଳ ଖୋଜୁ ଖୋଜୁ ଘନ୍ଦି ମନଟା ମରିଯାଉଥିଲା ବୁଢ଼ୀମାଁ ପାଇଁ ।

ଘନିଆ ତା' ଆସର ଭାଙ୍ଗି ଘରକୁ ଫେରିଲା ବେଳକୁ ପହରେ ରାତି । ଅବଶ୍ୟ, ସକାଳର ଅବସାଦ ଆଉ ନଥିଲା ତା' ମନରେ । ଟେସନବଜାର ବରଗଛ ଛକରେ ସାଂଗମେଳରେ ଦି'ଘରି ଘଡ଼ି କଟେଇ କାହା ବୋତଲରୁ ଦି'ଢୋକ ପିଇ ଦେଲେ, କୁଆଡୁ ଏତେ ଜୋର ଆସିଯାଏ ତା'ଭିତରକୁ କେଜାଣି । ଫୁର୍ତ୍ତି ଆସେ ମନରେ । ଏଇ ମଉକାରେ ସେ ଓଳିଏ ଅଧଓଳି ମଜୁରି କରିଦିଏ ଇଟାଭାଟିରେ । ଦିନାକେତେ ହାତ ଖରଚଟା ଚଳିଯାଏ । କେବେ କେବେ ସେଥିରୁ ବି ସେବ ମାରିନିଏ ପାଞ୍ଚଦଶ, ସେ ଜାଣିପାରେ, ହେଲେ କିଛି କୁହେନା, କହିଲେ ତ ମାରି ଗୋଡ଼େଇବ । ସେବ ଫେରିବଣି ଘରକୁ ନିଶ୍ଚୟ ।

ଘର ଫେରନ୍ତି ଘନିଆ ଭାବୁଥିଲା ଆବୁରୁ ଜାବୁରୁ ହେଇ କେତେ କଥା । ଆଜି ବି ସେ ସିଧା ଆସରକୁ ହିଁ ଯାଇଥିଲା । ଟେସନବଜାର ବରଗଛ ମୂଳେ ସେମାନଙ୍କର ମେଳ ହୁଏ ନିତି ସଂଜ ସକାଳେ । ତାକୁ ଏତେ ଅବଶ ଲାଗୁଥିଲା ଯେ, ଫୁର୍ତ୍ତିରେ ମନ ଲାଗୁନଥିଲା । ସମସ୍ତେ ପହଞ୍ଚିଯାଇଥିଲେ ସେ ପହଞ୍ଚିଲା ବେଳକୁ । ସେ ସିଧା ଯାଇ ଶୋଇପଡ଼ିଲା ଗଛମୂଳେ । ବିଡ଼ିଖଣ୍ଡେ

ଖାଇବ ବୋଲି ପାକିଟି ଅଣ୍ଡାଳିଲା ଯେ ବିଡ଼ି ତ ନଥିଲା, ପଇସା ବି ନଥିଲା, ତିନି ଚାରିଦିନ ହେବ ସେ କିଛି ମଜୁରି କରିନି । ଆଖି ପହଁରିଗଲା ଗାଁ ମୁଣ୍ଡ ମଶାଣି ସେପଟ ଇଟାଭାଟି ଆଡ଼େ ଧିକିଧିକି ନିଆଁ ଜଳି ଧୂଆଁ ଉଠୁଛି । ମିଣିପେ ମାଇପେ ମିଶି ଇଟା ଗଢୁଛନ୍ତି ନିଶ୍ଚେ - ମନହେଲା ଦି'ଚାରିଘଣ୍ଟା ଭାଟିକୁ ଯାଇ କିଛି କାମ କରିଆସିଲେ, କିଛି ମଜୁରି ଆସିଯା'ନ୍ତା ହାତକୁ - ଚା' ପାଣିକି ବିଡ଼ି ଖଣ୍ଡେ ପାଟିକୁ ନବାଜି ପାଟି ପିତା ହୋଇଗଲାଣି । ହେଲେ ବଳ ପାଉନି ହାତ ଗୋଡ଼ରେ ।

ତାର ଅନ୍ୟମନସ୍କତା ଦେଖି ବିଶିନା ପଚାରିଲା - କଣ, କଣ ଏତେ ଭାବୁଚୁ କିରେ - ଧିଅ ଭଲଲାଗୁନି କି, ନୁଖୁରାଟା ଦିଶୁଚୁ... କହୁ କହୁ ଦି ଝାଙ୍କ ଝାଙ୍କି ଦେଲା ଘନିଆକୁ, ମୁଁ ପରା କଣ ପଚାରୁଛି ତୋତେ, କୁଆଡ଼େ ଚାହିଁଚୁ...

ଉଠିବସିଥିଲା ସେ । କହିଲା, 'ବିଡ଼ିଖଣ୍ଡେ ପାଇଁ ବି ହାତରେ ପଇସାଟିଏ ନାହିଁ ବିଶିନା - ପେଟରେ ଦିଦିନ ହେଲା ଦାନା ପଡ଼ିନି । ଭାବୁଥିଲି ଇଟାଭାଟି ଆଡ଼େ ଯାଇ ଦି'ଭାଡ଼ି ମାଟି ଚକଟି ଆସିଥାନ୍ତି କି... ବଡ଼ କଷ୍ଟ ହେଲାଣିରେ... କଥା ତାର ସରିନଥିଲା ଦାମା'ନା ତା' ବୋତଲ ଖୋଲି ଦି'ଢ଼ୋକ ପେଇଦେଲା ତାକୁ ସାଷ୍ଟାମ କରିବାକୁ - କହିଲା, ଏଇ ଅବେଳରେ କିଏ ଯାଏ କି ମଜୁରି ଖଟିବାକୁ । ସକାଳୁ ଯିବୁ । ଏବେ ରଘୁଆ କହିଛି ଆସିବ ଖାଇବା ନେଇ, ତା ଘର ପାଖେ ଭୋଜି ହେଉଛି । ସମସ୍ତେ ମିଶି ଖିଆପିଆ କରିବା । ଆସିଯିବ ରଘୁଆ ଏଥର, ତୁ ହାଲିଆ ମାରୁଥା'... କହୁ କହୁ ରଘୁଆର ସାଇକେଲ ଘଣ୍ଟି ଶୁଭିଲା ।

... ଅନେକ ଦିନପରେ ସୁଆଦିଆ ଖାଇବା ପାଟିରେ ବାଜିଲା - ଧୋବ ଫରଫର ଭାତ ସାଂଗକୁ ଚିଙ୍ଗୁଡ଼ିଘାଣ୍ଟ ସମସ୍ତେ ମିଶି ଖାଇଲେ ପୂର୍ତ୍ତିକରି । ପେଟ ଅବଶ୍ୟ ପୂରିଲାନି, ମନ ପୂରିଗଲା... । ଘନ ଭାବିଲା, ଘରେ ପିଲାଏ କଣ ଖାଇଥିବେ କି ନାଇଁ ସେ ଜାଣେନା । ପାଞ୍ଚ ଛ'ଟା ପେଟ ପାଇଁ ସେବ କୋଉଠୁ ଯୋଗାଡ଼ କରିବ ଖାଇବା । - ବୁଢ଼ୀମାଁ ଟା ହେଲେ ନଥାନ୍ତା - ବର୍ଷ ବର୍ଷ ଧରି କତରାଲାଗି ହୋଇ ପଡ଼ିଛି - ଖାସ୍ ତା'ରି ପାଇଁ ସଂସାରରେ ତାର ନିତି କଳି-ଗୋଳ । ବୁଢ଼ୀ ତ କୋଉ କାମକୁ ନାହିଁ ଖାଇବା ଥାଳିରେ ଯାହା ଭାଗ ବସୁଛି । ସେବ ସହି ପାରୁନି - ଜଳୁଛି ରାଗରେ । ସାନଝିଅଟା ବି ରୋଗିଣା ମରମର ହେଉଛି... ଔଷଧର ବ୍ୟବସ୍ଥା କରିପାରୁନି ତା ପାଇଁ । ଟଙ୍କା ନାହିଁ କିଏ ଦେବ, କୁଆଡୁ ଆସିବ ! ତାର କିନ୍ତୁ ଅନେକ ଟଙ୍କା ଦରକାର - ଏଇ ସବୁ ସମସ୍ୟା ସମାଧାନ କରିବାକୁ ହେଲେ କିମିତି, କିମିତି, କିମିତି - ସିଧା ସଳଖ ଭାବନାଟା ହଠାତ୍ ଗଣ୍ଡଗୋଳିଆ ହୋଇ ଅବାଟକୁ ଚାଲିଗଲା । ଏବଂ ଭାବିଲା - ଥରେକେବେ ଏଇ ରଘୁଆ ହିଁ କଥାପ୍ରସଙ୍ଗରେ କହିଥିଲା..., ଲୋକେ କେତେ ଉପାୟରେ ଫନ୍ଦିଫିକର କରି ଟଙ୍କା ରୋଜଗାର କରୁଛନ୍ତି । ଆମେ ଗରିବ, ମୂର୍ଖଲୋକ ସେସବୁ ବାଟ ଜାଣୁନୁ ତ । ଆମ ସତ କଥାଟା ବି କେହି ଶୁଣୁନି । ଆମେ ତ ସୁଖସୁବିଧା କିଛି ଚାହୁଁନୁ । ମୁଠେ ଖାଇ ବଂଚିବାକୁ ଚାହୁଁଛୁ । ଆମ ପାଖେ ନିଜ ହାତଗୋଡ଼କୁ ଛାଡ଼ି ସଂପତ୍ତି

ବୋଲିତ କିଛି ନାହିଁ । ଆଜି ଯଦି କିଛି ବିପଦ ହୋଇଗଲା, ହାତ ଗୋଡ଼ ଅକାମି ହେଲା କି ମେହନତ କରୁଥିବା ମଣିଷଟା ମରିଗଲା – ପରିବାରଟା ଭୋକ ଉପାସରେ ମରିବା ଛଡ଼ା ଆଉ କଣ ଅଛି ଗତି କହୁନୁ... ? ହେଲେ ସରକାର କେତେ ପ୍ରକାର ସାହାଯ୍ୟ ଦେଉଛନ୍ତି ଟଙ୍କା ଆକାରରେ । ଏଇ ଗଲାବରଷ ଜ୍ୟୈଷ୍ଠଖରାରେ ଆମଗାଁର ଭରତ ଜେନା, ପକ୍ଷାଘାତ ଭୋଗୁଥିଲା, ମଜିଗଲା । ହେଲେ ତା'ପିଲାଏ ରିପୋର୍ଟ ଲେଖେଇଲେ ଅଂଶୁଘାତରେ ମରିଗଲା ବୋଲି । କିମିତି କଣ ହେଲା କେଜାଣି ଗୁଡ଼ାଏ ଟଙ୍କା ପାଇଲା ଆଉ ଦୁଃଖ ବାଉରୀ, ଅନାମ ଭୋଇ ସତସତ ଅଂଶୁଘାତରେ ମରିଗଲେ – କେହି ଶୁଣିଲେନି ତାଙ୍କ କଥା – ତା'ପିଲା ମାଇପ ଏଇ ଇଟାଭାଟିରେ ମାଟିଚକଟି ବଂଚିବାକୁ ଚେଷ୍ଟା କରୁଛନ୍ତି । ଅଧେଦିନ ଭୋକ । ଅନାମର ବୁଢ଼ୀମାଁ ଦାଣ୍ଡ ଦୁଆରେ ଗଡୁଛି – ଭୋକରେ । ବିଚରା ରୋଗିଣା ବୋହୂଟା କେତେ ମଜୁରି ପାଉଛି ଯେ ଖାଇବାକୁ ଦେବ କହୁନୁ – ସେ ମରୁନି କି ତାକୁ ମାରିପାରୁନି ଆଲୋଡ଼ା ହୋଇଗଲା ବୋଲି ।

ଏମିତି କେତେ କଣ । ସେଦିନ କହିଥିଲା ରଘୁଆ । ତାକୁ କିନ୍ତୁ କିଛି ସତ ଲାଗୁଥିଲା, କିଛି ମିଛ ଲାଗିଥିଲା ସେଦିନ, ଏମିତି କଣ ହୋଇପାରେ । କିନ୍ତୁ ଆଜି ଏଇ ମୁହୂର୍ତ୍ତରେ ମନେହେଉଛି, ସତେତ, ସେ କଣ କରିପାରିବ ! ଚୋରି ଡକେଇତି ତ କରିପାରିବନି – କିନ୍ତୁ ଟଙ୍କା ଦରକାର ତାର – ନିତିଦିନର ଅଶାନ୍ତି, ଭୋକ ଉପାସର ଯନ୍ତ୍ରଣାରୁ ସେ ମୁକୁଳିବାକୁ ଚହେଁ । ଆଉ କଣ ସେ ଦାଦନକୁ ଯିବ ? ସେବ, ପିଲାଏ, ଆଉ ବୁଢ଼ୀମାଁକୁ କିଏ ଦେଖିବ ? ? ବୁଢ଼ୀମାଁଟା ନଥାନ୍ତା ହେଲେ... । ନା, ତା' କପାଳରେ ଶାନ୍ତିରେ ଘର କରିବା ନାହିଁ ।

ଭାବନା ସାଥିରେ ଚାଲୁ ଚାଲୁ କେତେବେଳେ ସେ ଟେସନରୋଡ଼ ଛାଡ଼ି ଆଗକୁ ପାଏ ବାଟ ମାଡ଼ିଆସିଲାଣି । ଅଂଧାର ହୋଇ ଆସୁଛି । ଆଗରେ ଲେଭେଲ କ୍ରସିଂ, ଜଗୁଆଳି ନାହିଁ । ନିଘା କଲା ଗାଡ଼ିଆସୁନି ସିନା– ହାତୀ; ହାତୀପଲ ମାଡ଼ିଆସନ୍ତି ଦିନେ ଦିନେ । ଗଲା ସପ୍ତାହରେ ଏଇବାଟରେ ପାଖ ଗାଁ ଭିତରକୁ ମାଡ଼ିଯାଇ ଝୁପଡ଼ିବସ୍ତି ଭାଙ୍ଗି ଦି'ଜଣଙ୍କୁ ଦଳି ଚକଟି ମାରି ଦେଇଚନ୍ତି ବୋଲି ଅପର୍ତ୍ତି କହୁଥିଲା । ଜମିତ ନାହିଁ ଫସଲ ଖାଇବାକୁ । କିଛି ତ ଖାଇ ବଂଚିବେ... ଭୋକିଲା ହେଲେ ଯାହା ହୁଏ... ବଂଚିବା ପାଇଁ ସଂଗ୍ରାମ । ମନେ ମନେ ହସିଲା ଘନ, ପଶୁ ଆଉ ମଣିଷ ଭିତରେ କିଛି ତଫାତ୍ ନାହିଁ ତ । ଜୀବନ ଅଛି ତ ଭୋକ ଅଛି । ଭାବୁ ଭାବୁ ଏପାଖ ସେପାଖ ଚାହିଁଦେଲା ଅଭ୍ୟାସରୁ, ନହେଲେ ନିଶାଯୋଗୁଁ ତାକୁ ଝାଉଁଳିଆ ଦିଶୁଥିଲା ସବୁ । ଆଉ ଟିକିଏ ବାଟ ଗଲେ ଘର । ଘର କଥା ଭାବୁଭାବୁ ତା'ଛାତି ଭିତରଟା ଦବିଗଲା । କି ଅବସ୍ଥାରେ ଅଛି ସେଇଘର କେଜାଣି ! ସେବ ଫେରିଆସିବଣି କି ନାହିଁ ।

ଘର ଭିତରେ ବୁଢ଼ୀ ଛଟପଟ ହେଉଥିଲା । ସହଜେ ଆଖିରେ ତାର ନିଦ ନଥାଏ । ଏଣେ ଭୋକ । ଚୁଲି ଉପରେ ଭାତ ଫୁଟୁଥିଲା । ଫୁଟିଲା ଭାତର ବାସ୍ନା ଘର ଭିତରେ ବୁଲି ବୁଲି ସେଇ ଭୋକକୁ ତେଜୁଥିଲା । ଅଣ୍ଟା ତ ଉଠୁନି ଯେ ଉଠି ଯାଇ ଦେଖି ଆସିବ । ଏମିତି

ପଡ଼ି ପଡ଼ି ଭାବିବା କଥା । ଓଃ ! ଜୀବନ ତାକୁ କେତେ ବୁଲାଣିରେ ବୁଲେଇ ଆଣି ଏଇ ନରକ ଭିତରେ ପକେଇଲା । ଆଉ ସେ ଘାଣ୍ଟି ହେଉଛି ନରକ ଭିତରେ ପୋକ ଘାଣ୍ଟି ହେଲା ଭଳି । ଏଯାଏ କଣ ଭାତ ହୋଇନି ! କେଜାଣି, ଲକ୍ଷ୍ମୀକୁ ସେ କେତେଥର ପଚାରିଲାଣି - ବୋଉ ଭାତ ଗାଳିଲାଣି ? ଏତେ ଡେରି କାଇଁକି ହେଉଛି ଯେ... ? 'ଜାଳ ନାହିଁ, ଓଦା କାଠ ଜଳୁନି ତ' - କହିଦେଇ ଧାଇଁଯାଉଥାଏ ଲକ୍ଷ୍ମୀ ଚୁଲିମୁଣ୍ଡକୁ । ସମିସ୍ତିଙ୍କ ନିଘା ସେଇ ଭାତ ହାଣ୍ଡି ଠି । ବୋଉ ନଥିବା ଦେଖି ଭାତଘଣ୍ଟା ଚଟୁଟାକୁ ନାକ ପାଖକୁ ଆଣି ଶୁଂଘି ଦେଉଥାଏ ଲକ୍ଷ୍ମୀ । ପେଟ କଁ କଁ ଡାକୁଛି । ବାବୁଘରୁ ଆଣିଥିବା ଭାତପାଣିକୁ ସେ ଆଉ ବାସ ଭାଗ କରି ସୁଡୁକାଏ ଲେଖା ପିଇଥିଲେ ଯେ... ହେଲେ... ଘର ଭିତରୁ ବୁଢ଼ୀ ମାଁ ପଚାରୁଛି ପୁଣି - କଣ ଆଉ କହିବ ତାକୁ ସେ... ବୋଉ ତ ରାନ୍ଧୁଛି...

ଭାତ ଗାଳୁ ଗାଳୁ ସେବ୍ତି କାନରେ ପଡୁଥିଲା ବୁଢ଼ୀର କଥା - ଝିଅକୁ ଆଖି ଦେଖେଇ ପାଟି ବନ୍ଦ କରୁ କରୁ ରଗରଗ ହେଲା । ମନେମନେ ସଂପୁଥାଏ । ଭାରି ସଉକି ଭାତ ଖାଇବାକୁ - ମରଣ ହେଉନି... ଆଜି ଯଦି ବୁଢ଼ୀ, ଭାତରେ ତାର ଭାଗ ବସିବ ନା, ଦେଖିନେବ ସେ...

ଭାତଗାଳିସାରି ଉଠିଗଲା ସେବ ପାଣି ମାଠିଆଏ ଆଣିବାକୁ । ଦୂରରେ ବାଡ଼ିପଟେ କୂଅ । ସଂଜହୋଇ ଆସିଲାଣି... । ଡିବିରିରେ ତେଲ ବି ନାହିଁ ବେଶି । ତରବର ହୋଇ ପାହୁଣ୍ଡ ପକେଇଲା ସେବ ।

ଘରେ ପଶୁ ପଶୁ ଘନ ନାକରେ ଗଳାଭାତର ବାସ୍ନା ବାଜିଲା - ମୁହୂର୍ତ୍ତେ ଆଖି ବୁଜି ଆଘ୍ରାଣ କରିନେଲା ବାସ୍ନାକୁ । ତାହେଲେ ସେବ ଚାଉଳ ଆଣି ଭାତ ରାନ୍ଧିଛି । ବାପ ଆସିବା ଦେଖି ଲକ୍ଷ୍ମୀ ଆଉ ବାସ ଧାଇଁ ଆଇଲେ ଖବରଟା ଜଣେଇ ଦେବାକୁ ଯେ, "ବୋଉ ଆଜି ଭାତ ରାନ୍ଧିଛି... ବାପା ।"

'ଭାତ' ? ? 'ହଁ', ଦେଖୁନ । ବୋଉ ନାହିଁ ପାଣି ଆଣିବାକୁ ଯାଇଛି... -ଲକ୍ଷ୍ମୀ ଉତ୍ତର ଦେଲା । ବାପଝିଅଙ୍କ କଥା ବୁଢ଼ୀ କାନରେ ପଡ଼ିଲା ସତ ହେଲେ ସତ କି ସ୍ୱପ୍ନ ଜାଣି ପାରୁନଥିଲା । ବିଳିବିଳେଇଲା ଭଳି ଡାକ ପକେଇଲା... ଲକ୍ଷ୍ମୀ କିଲୋ... କିଏ ଆଇଚି କି... ଘନ... ? ଖାଉଚୁ... ଘା... ସେବ ଭାତ ରାନ୍ଧିଛି ଦେ ଦିମୁଠା ବାଢ଼ିଦେ ମୋ ଘନକୁ... ଏ ଲକ୍ଷ୍ମୀ... ଆରେ ଘନ ତୋ' ଭାତରୁ ମୁଠେ ମୋତେ ଦେ କି, ମୋତେ ଭାରି ଭୋ...କ... । ସେବ ଦଉନି...ମରିବ... ମନକୁ ମନ ବିଳିବିଳଉଥାଏ ବଢ଼ୀ । ଏ ଲକ୍ଷ୍ମୀ...

ହଠାତ୍ ଯିମିତି ନିଶା କଟିଗଲା ଘନର । ଛାତିଭିତରଟା କିମିତି କଣ ହେଇଗଲା । ଭାବିଲା ମୁହୂର୍ତ୍ତେ ଆହା, କେତେ ବିକଳ ହୋଇ ମୁଠେ ଭାତ ମାଗୁଛି । କଣ କରିବ ସେ... ମୁଠେ ଭାତ ନେଇ ଦେବକି ବୁଢ଼ୀ ପାଟିରେ ! ସେବ ତ ନାହିଁ ଏତିକି ବେଳେ ଯଦି ଦେବ... ନଇଁ ପଡ଼ି ଚଟୁଧରିଲା ଘନ...

ବାପ ମୁହଁକୁ ଋହିଁ କଣ ଭାବି କେଜାଣି ଋନ୍ଦି କହିଲା – 'ବୁଢ଼ୀମା ସକାଳ ପହରୁ ପେଜଭାତ ମାଗୁଛି ଯେ... ବୋଉ ଜାଣିଲେ ମାରିବ...'

ମାରିବ କାହିଁକି... ରହ ମୁଁ ଦଉଛି... କହି ଭାତହାଣ୍ଡିରେ ଚଟୁ ପୂରେଇବାକୁ ଯାଉଛି ତ ସେବ ଆସି ଠିଆ ହୋଇଗଲା ତା' ଆଗରେ ରଣଚଣ୍ଡୀ ଭଳି... ପାଣି ମାଠିଆକୁ ଦୁଲ କରି ଥୋଇ... 'ହାରାମଜାଦା... ତୁ କୁଆଡୁ ଆସିଲୁ କହି ଘନର ଡେଣା ଧରି ଏମିତି ଝାଙ୍କିଦେଲା ଯେ ଭାତ ସହିତ ଚଟୁ ଛିଞ୍ଚାଡ଼ି ହୋଇ ପଡ଼ିଲା ଋରିଆଡ଼େ । ଭାରିତ ସାହସ ତୋର । ଏତେବେଳ ଯାଏ ତ କୁଆଡ଼େ ମଦଖାଇ ମରୁଥିଲୁ । ଖାଇଲାବେଳକୁ ଠିକ ପହଞ୍ଚିଗଲୁ କ'ଣ ଗିଳିବାକୁ ? ଯିମିତି ଥୋଇଦେଇ ଯାଇଥିଲୁ ଋଉଳ ଡାଲି... ଆସୁଆସୁ ବୁଢ଼ୀ ପାଇଁ ସୁଆଗ ଝରିପଡ଼ିଲା ବାଡ଼ିପଡ଼ାର । ଆଉ ମୋ ଭାତହାଣ୍ଡିରେ ଯାଇ ତୋ ଆଖି ପଡ଼ିଗଲା – ମରଣ ହେଉନି ତୋତେ । ଆଉ ତୁ ବାପ ସୁଆଗୀ... ଋହିଁଚୁ ବାପ ମୁହଁକୁ, କହୁକହୁ ଝିଅ ପିଠିରେ ଦୁଲଦାଲ କରି କୁଢ଼େଇ ଦେଇଗଲା ମାଡ଼ ରାଗରେ ତମତମ ହୋଇ । କାକୁସ୍ଥ ପିଲାଦିଟା ଡରିମରି କାନ୍ଥ ଭିତରେ ପଶିଯାଉଥିଲେ ଯିମିତି । ଘନ ତଟସ୍ଥ ହୋଇ ଋହିଁଥିଲା ସେବର ଉଗ୍ର ରୂପକୁ । ଏଇ ମେଞ୍ଚଡ଼ ବି..., ସାନଝିଅ ବାସକୁ ଟାଣିଆଣି ତା'ବେକକୁ ଚିପିଧରି ଉଠେଇ ପକେଇଦେବାକୁ ଯାଉଛି, ଘନ ପାଟିକରି ଉଠିଲା 'ମରିଯିବ ଝିଅଟା, ତୁ ମା' ନା ରାକ୍ଷସୀ' କିଲୋ । "ହଁ ମୁଁ ରାକ୍ଷସୀ – ମାରିବି ସଭିଙ୍କୁ, ମରନ୍ତୁ ସବୁ ଆଜି କାହାକୁ ଦେବିନି ଖାଇବାକୁ... ଦୁଆର ଦୁଆର ବୁଲି ଭିକ ମାଗିବି, ଖଟିଖଟି ମୁଁ ମରିବି ... ତେମେ ସବୁ ସୁଖଭାତ ଗିଳିବ ନେଇଁ... ।" ରହ... କାହିଁ ସେଇ ବୁଢ଼ୀ... ସବୁ ନାଟର ମୂଳ ସେଇ କହି ଅଣ୍ଟାରେ ପଣତ ଗୁଡ଼େଇ ମାଡ଼ିଗଲା ବୁଢ଼ୀର ଶୋଇବା ଘର ଭିତରକୁ... । ସତେ ଯେମିତି କାଳିସୀ ମାଡିଛି, କାହା କଥା କାନକୁ ଶୁଭୁନି ତାର । ବୁଢ଼ୀ ସେମିତି ବିଳିବିଳଉଥାଏ – କିଏ କାନ୍ଦୁଚି, କିଏ ବାସ ? ଭାତ ଆଣିଚୁ... ସେବ କିଲୋ... ଦେ... ଖାଇବାକୁ... ଭୋକ । – "ହଉ ରହ ଦଉଛି ତୋତେ... ଗିଳିବୁ । ଏମିତି ଗିଳିବୁ ଯେ... ଆଉ ମାଗିବୁନି କେବେ । ବାପଘରୁ ଆଣି ଥୋଇଛୁ ତ... ଖାଇବାକୁ ଦେ... ଆପଣେଇତି ଦେଖଉଛି..."

ଏଥର ଘନର ଧୈର୍ଯ୍ୟ ସୀମା ଟପିଲା । ହଠାତ୍ ସେବକୁ ପଛପଟୁ ମାଡ଼ିଧରି ପଋରିଲା – ନାଇଁମ ବୁଢ଼ୀ କୁଆଡୁ ବାପଘରୁ ଆଣିବ–ତୁ ଆଣିଛୁ । ହାରାମଜାଦୀ । ତୋର ଏଇ ଜିଭକୁ ସିଧା ଟାଣି ଆଣିବି ଯେ, ଚିହ୍ନିବୁ ମୋତେ... ।

ଗଁ ଗଁ ହେଇ ସେବ ଛାଟିପିଟି ହୋଇ କହିଲା ଛାଡ଼ ମୋ ବେକକୁ – ନହେଲେ ଦେଖିବୁ... । କ'ଣ ଦେଖିବି ? ମୋତେ ଦିମାକି ଦେଖଉଛୁ ବେଇମାନ... ସବୁ ଭୁଲିଗଲୁ କି ? ବୁଢ଼ୀ ଯେତେବେଳେ ତା' ଶଶୁରର ଜମି ତୋ ବାପକୁ ଟେକିଦେଇ, ତୋତେ ବୋହୂ କରି ଆଣିଥିଲା ଏଘରକୁ... ଭୁଲିଗଲୁ – ଶାଳୀ ତୋତେ କଷ୍ଟ ନଦେଇ, ଘରଘର ବୁଲି ଅଇଁଠା ବାସନ ମାଜି ତୋ'ହାତକୁ ଟଙ୍କା ବଢ଼େଇ ଦେଉଥିଲା... ବଦମାସ । ତୁ ଆଉ ତୋ' ଭାତହାଣ୍ଡି

ହେଉଚି ସବୁରି ମୂଳ ତୋତେ ଆଜି ଶେଷ କରିବି କହୁକହୁ ଚୁଲିମୁଣ୍ଡକୁ ଯାଇ ସିଧା ଭାତହାଣ୍ଡିକୁ ନେଇଁ କଚିଦେଲା ବାଡ଼ିପଟ ମାଟି ଅଗଣାରେ । ଶଳା ମୋତେ ଦର୍ପ ଦେଖଉଛି । ମରସବୁ ଭୋକରେ । ଛଡ଼େଇ ପାରିଲାନି ସେବ ଘନ ହାତରୁ ହାଣ୍ଡିକୁ । ହାଣ୍ଡିକ ଭାତ ମାଟିଅଗଣାରେ ଛିନଛତର ହୋଇ ପଡ଼ିବା ଦେଖି ସେବ ମୁଣ୍ଡକୁ ରକ୍ତ ଚଢ଼ିଗଲା –ବ୍ରହ୍ମ ଜଳିଗଲା ତାର ଆଉ କିଛି ନକହି ସିଧା ମାଡ଼ିଆସିଲା ବୁଢ଼ୀ ପାଖକୁ । ମୁହୂର୍ତ୍ତେ ଠିଆ ହୋଇ ଋହିଁଲା ଘୃଣାରେ... ବୁଢ଼ୀ ନେହୁରା ହୋଇ କହୁଥିଲା... ଗୋଳ କାହିଁକି କରୁଛୁରେ ଘନିଆ... ଖାଇପକା ବାପା, ଭୋକ ହେଉଥିବ... ସେଇ ଏକା ରଟ ବୁଢ଼ୀର କଥା ଅସ୍ପଷ୍ଟ ଶୁଭୁଥିଲା କ୍ରମଶଃ । ସେବ ଭାବିଲା, ଆଉ ନୁହଁ... ଯେବେ ଅଶାନ୍ତି ଏଇ ବୁଢ଼ୀ ପାଇଁ... ଶେଷ କରିଦେବି ସବୁ... ଭାବୁଭାବୁ ହଠାତ୍ ଡାହାଣପାଦ ବୁଢ଼ୀ ଛାତି ଉପରେ ଥୋଇଦେଲା – ଏଥର ଖାଉଥା କେତେ ଖାଇବୁ... ମୋ ପ୍ରାଣ ଖାଇଲାଣି ।

ଘନ ରାଗରେ ସଁ ସଁ ହେଉଥିଲା – ନିଘା ନ ଥିଲା ସେବ ଆଡ଼ିକି । ପିଲାଦୁହେଁ ଚୁଲି ମୁଣ୍ଡରେ ବସି ଧକଉଥିଲେ । ମୁଣ୍ଡ ଝାଇଁ ମାରିଦେଲା ଘନର ଠିଆହୋଇ ପାରିଲାନି ବସିପଡ଼ିଲା ସେଇଠି ମୁଣ୍ଡଧରି ।

... ଛାତି ଉପରେ କାହାର ଓଜନିଆ ଋପ । ଋଉଁକିନି କ୍ଲାନ୍ତ ଦରବୁଜା ଆଖିପତା ଖୋଲିହୋଇଗଲା ବୁଢ଼ୀର । ଆରେ, ଇଏ ତ ଋନ୍ଦି ନୁହେଁ ସେବ ? ଚମକି ଉଠିଲା ତା'ର ଅନ୍ତରାତ୍ମା । ସେବ ତାକୁ ଇମିତି କାଇଁକି ଗାରଢ଼େଇ ଋହିଁଚି ଯେ... ମାରିଦେବ କି ? ହଠାତ୍ ତା'ର ଆଚ୍ଛନ୍ନ ଭାବ କଟିଗଲା ସତେକି – ପାଟି ଫିଟୁନଥିଲା ସିନା ମନେମନେ ଅନେକ କଥା ବୋଧେ କହି ଯାଉଥିଲା ଆକୁଳ ହୋଇ । ଯିମିତି କହୁଥିଲା ତୁ ମୋତେ ମାରି ପାପ ମୁଣ୍ଡାନା । ମୁଁ ତ ମାଁ ଏମିତି ମରିବାକୁ ବଇଚି.. ତମକୁ ମୁଁ ସିନିହ କରେ – ତେମେ ସବୁ ଭଲେରେ ଥାଅ – ନିଜ ହାତରେ ମୋତେ ମାରନା ପାପହେବ କିଛି ଖାଇବାକୁ ମାଗିବିନି ମୁଁ । ତା'ର ଶିଥିଳ ହୋଇପଡ଼ିଥିବା ହାତ ଉଠେଇ ପାରୁନଥିଲେ ବି ହଲୁଥିଲା ଧୀରେଧୀରେ ଏବଂ ଜାଣି ହେଉଥିଲା – 'ମୋତେ ମାରନା' ବୋଲି କହୁଚି । ହେଲେ ତା'ର ଏଇ ଶବ୍ଦହୀନ ଆକୁଳ ମିନତିକୁ ସେବର କାଳିସୀ ଲଗା ମନ କିମିତି ବୁଝନ୍ତା – ସେତ ଭିନ୍ନ ଏକ 'ଘୋର' ଭିତରେ ଥିଲା, 'ତମଃ' ତାକୁ ଘାରିଥିଲା । ହୋସ ନ ଥିଲା । ମୁହୂର୍ତ୍ତକରେ ସବୁ ଏପାଖ ସେପାଖ ହେଇଗଲା । ଛାତି ଉପରୁ ପାଦ ଘୁଞ୍ଚିଗଲା ବେକ ଉପରକୁ । ବୁଝିଗଲା ବୁଢ଼ୀ ଏଇ ତାର ଶେଷ ...

ଏଥର ବୁଢ଼ୀ ଓଠରେ ଫୁଟିଗଲା ମୃଦୁହାସ୍ୟର ରେଖାଟିଏ – ସତେଯେମିତି ଅନନ୍ତ କ୍ଷମାର ଆଲେଖ୍ୟ ଟିଏ ଲେଖିହେଇଗଲା ସେଇ ଲିଭିଆସୁଥିବା ହସ ଟିକକରେ । ନୀଡ଼ଛାଡ଼ି ଉଡ଼ିଗଲା ପକ୍ଷୀ ନିଃଶବ୍ଦରେ ।

ହଠାତ୍ ବାହାରେ କିଛି କୋଳାହଳ ସହିତ ଧାଁ-ଦଉଡ଼ର ଶବ୍ଦ । ସେବର ଘୋର ଭାଙ୍ଗିଗଲା । ତଳକୁ ଋହିଁଲା, ତା'ପାଦଟା ସେଇମିତି ବୁଢ଼ୀ ବେକ ଉପରେ ଥିବା ଦେଖି

ଚମକି ଗଲା ଇୟେ କଣ କଲା ସେ !! କିଛି ଭାବିବା ପୂର୍ବରୁ ସେ ଘର ଭିତରୁ ବାହାରକୁ ବାହାରି ଆସିଲା ଅଂଧାର ଭିତରକୁ ନିଜକୁ ଲୁଚେଇବାକୁ ? ତାକୁ ଯିମିତି କିଏ ପଛରୁ ଗୋଡ଼େଇଛି । ଭୟ ? ନା ପାପବୋଧ ?? ଏଣେ ଘନିଆ କାନରେ ବି ପଡ଼ିଲା ସେଇ କୋଳାହଳର ଶବ୍ଦ । କିଏସବୁ କଥା କହୁଛନ୍ତି । କଣ ହେଲା କାହାର ! କିଛି ଆଗପଛ ନଭାବି ନିଜକୁ ସମ୍ଭାଳୁ ସମ୍ଭାଳୁ ଏକା ନିଃଶ୍ୱାସକେ ବାହାରିଗଲା ବାଡ଼ିପଟ ଦୁଆର ଖୋଲି ସିଧା ରାସ୍ତାକୁ । ବାହାରେ ଅଂଧାର ଲେସି ହୋଇ ରହିଛି । କିଛି ସ୍ପଷ୍ଟ ଦିଶୁନି । କାହାର ପାଟି ଶୁଭିଲା – ହାତୀ ମାଡ଼ିଆଉଚନ୍ତି – ପଳା, ଧାଇଁ ପଳା...

ଘନ ଭିତରେ ଅସ୍ଥିରତା । କ'ଣ କରିବ । କୁଆଡ଼େ ଅଛନ୍ତି ହାତୀ । ଅଂଧାର, ପହଁରି ପହଁରି ଆଉ ପନ୍ଦର କୋଡ଼ିଏ ପାହୁଣ୍ଡ ଆଗେଇ ଗଲା । ବରଗଛ କଡ଼ରୁ କିଏ ଆସୁଛି । କିଏ ?? ଅଂଧାର ଭିତରୁ ଉତ୍ତର ଆସିଲା – "ଘନକିରେ... ମୁଁ ପଦନ, ତୁ କୁଆଡ଼େ ଚାଲିଛୁ ଯେ – ଶୁଣିନୁ... ହାତୀ ପଲ ପରା ଲେଭେଲକ୍ରସିଂ ପାଖ ହେଲେଣି । ଟେସନରୁ କିଏସବୁ ମୂଲଖଟି ଫେରୁଥିଲେ... ହାତୀ ହାବୁଡ଼ରେ କୁଆଡ଼େ ପଡ଼ିଯାଇଛନ୍ତି – ବଂଚିଚନ୍ତି କି ନାହିଁ କେହି କହିପାରୁନାହାନ୍ତି । ତଥାପି ଆମ ଗାଁ ଭିତରକୁ ଯେମିତି ନପଶିବେ ସେଥିପାଇଁ ହୁରୁଡ଼େଇବାକୁ ଜଗିଚନ୍ତି ବାଟରେ । ମୁଁ ସିଆଡ଼େ ନଯାଇ ଫେରିଆଇଲି ପରା । ହଉ ଚାଲ ଶୀଘ୍ର ଘରକୁ... ଘନର ହାତଧରି ଟାଣିନେଲା ପଦନ... ଅବଶ୍ୟ ତୋର ବି ଦଖୁରିଆ ଟିଣ ଘର । ହେଲେ ପଶୁ ତ ପଶୁ... ତାର ବିଚାର ନାହିଁ । କହି ପଦନ ବାଟ ଭାଙ୍ଗିଲା ନିଜ ଘରଆଡ଼େ ।

ଘନ କାନରେ ପଦନ କଥା କିଛି ପଶୁନଥିଲା – ସେ ଆଉକିଛି ଭାବୁଥିଲା । ଏଇଟିକିଏ ସମୟ ପୂର୍ବରୁ ଯୋଉ ଅଭାବନୀୟ ଘଟଣା ଘଟିବାକୁ ଯାଉଥିଲା... ଯଦି ଘଟିଯାଇଥାନ୍ତା... ତା'ହେଲେ... ।

ତାହେଲେ ଆଉ କଣ... ଘନର ଚେତନମନର ଅନ୍ତରାଳରେ ହଠାତ୍ ଯିମିତି ଦୃଶ୍ୟପଟ ବଦଳିଗଲା । ମନେପଡ଼ିଲା ରଘୁଆକଥା – ତାଙ୍କ ଗାଁ ରାଜୁନାହାକ ତା ରୋଗିଣା ବୁଢ଼ାବାପକୁ ଗଳାଚିପି ଟ୍ରେନ୍ ଲାଇନ୍‌ରେ ପକେଇ ଦେଇ ଆସି କୁଆଡ଼େ ରିପୋଟ ଲେଖିଲା ଦୁର୍ଘଟଣାରେ ମଲା ବୋଲି – କ୍ଷତିପୂରଣ ଟଙ୍କା ବି ପାଇଲା ଗୁଡ଼େହେବ । ସତ କି ମିଛ, ସେ ଜାଣେନା । ଆଉ ଦି'ମାସ ତଳେ ହାତୀପଲ ଝୁପୁଡ଼ି ଭାଙ୍ଗିଥିବା ଲୋକଙ୍କୁ ବି ତ କ୍ଷତିପୂରଣ ଟଙ୍କା ଦେଇଚନ୍ତି ।

... ସେ ଯଦି ବୁଢ଼ୀ ମାଁକୁ ନେଇ ହାତୀପଲ ଆସିବା ବାଟରେ ପକେଇ ଦେଇ ଆସେ କିଏ ଦେଖିବ ଏଇ ଅଂଧାର ଭିତରେ । ଅନେକ ବର୍ଷ କତରା ଲାଗିହୋଇ ଘାଣ୍ଟିହେଲାଣି । ତାରି ଯୋଗୁଁ ଅଯଥା ଅଶାନ୍ତି ଘର ଭିତରେ ... କିଛି ନହେଲେ ଗୋଟାଏ ପେଟର ଦାନା ତ ବଳିଯିବ । ସେବ ହାତରେ କୋଉଦିନ ତା ପ୍ରାଣ ଯିବା ଅପେକ୍ଷା ସେହିଁ ସେଇ ଦାୟିତ୍ୱଟା ନେବ । କିଛି ଟଙ୍କା ଯଦି ହାତକୁ ଆସିବ, ଅନେକ ସମସ୍ୟା ଦୂର ହେଇଯିବ ତା'ର । ଭାବୁ ଭାବୁ ଘନ ଘରମୁହାଁ ତରବର ହୋଇ ପାଦ ପକେଇଲା । ଅଂଧାର ପୁଛିବା ପୂର୍ବରୁ କାମଟା ସାରିବାକୁ ହେବ ତାକୁ – ଗାଁ ନିଶୂନ୍ ହେଲାଣି ।

ଏକଥା ଭାବିଲା ବେଳକୁ ଅବଶ୍ୟ ତା ପେଟ ଭିତରଟା ଗୋଳେଇଘାଣ୍ଟି ହେଇଗଲା । ଏଇ ବୁଢ଼ୀମାଁ ଯୋଗୁ ହିଁ ତା' ସଂସାର ତାରି ଡୋକରେ ହିଁ ତା'ଜୀବନବଂଚିଚି । ତା'ପିଲାଏ ବଂଚିଚନ୍ତି... । ଅପରାଧ ବୋଧରୁ ଘନର ଭାବନା ଏପାଖସେପାଖ ହେଲା । ପୁଣି ଭାବିଲା, ଆଜିର ଏଇ ମୁହୂର୍ତ୍ତର ସୁଯୋଗ ଆଉ ହୁଏତ ମିଳିବନି । ଯା ଛଡ଼ା ତା'ପାଖରେ ସମାଧାନର ବାଟ କିଛି ନାହିଁ । ନିତି ଅଶାନ୍ତି, ନିତି ମରଣ, ନିତି ଭୋକ... ଅସହ୍ୟ ତା'ପାଇଁ । ସେ ଆଉ ପଛେଇବନି । ଭାବୁଭାବୁ ଘର ଭିତରକୁ ପଶିଲା ଘନ । ତା'ର ଆଉ କୁଆଡ଼କୁ ଲକ୍ଷ୍ୟ ନ ଥିଲା – ସିଧା ବୁଢ଼ୀମାଁ ପାଖକୁ ଯାଇ ଟିକିଏ ନିରେଖି ଚାହିଁଲା; ଅଂଧାର ଭିତରେ କିଛି ଅନୁମାନ କରିପାରୁନଥିଲା । ବୁଢ଼ୀ ଶୋଇପଡ଼ିଛି ଗାଢ଼ ନିଦରେ – ଉଠେଇନେଲା କାନ୍ଧ ଉପରକୁ – ନଖାଇନପିଇ ବୁଢ଼ୀମାଁ ହାଲୁକା ହେଇଯାଇଛି କେତେ । ଆହା । ଭାତମୁଠେ ମାଗୁଥିଲା, ସେତକ ଆଶା ବି ତା'ର ପୂରଣ କରି ପାରିଲାନି ସେ । ମନେ ମନେ ବୁଢ଼ୀମାଁକୁ କ୍ଷମା ମାଗିଲା ତୁ ତ ସବୁବେଳେ ମୋ ଦୋଷ କ୍ଷମା କରି ଆସିଛୁ – ଆଜି ବି କରିଦେ ଶେଷ ଥର ପାଇଁ । ବଡ଼ ବଡ଼ ପାହୁଣ୍ଡ ପକେଇ ଚାଲୁଥାଏ ଘନ ଲେଭେଲ କ୍ରସିଂ ଆଡ଼କୁ... ଭାବି ଚାଲିଥାଏ କେତେ କଥା ଆଗପଛ ହେଇ ।

ଅଧରାତି ହେବ । ଗାଁ ଶୋଇପଡ଼ିଲାଣି ନିଶ୍ଚୟ । ବୁଢ଼ୀମା' ବି ମଲାଭଳି ଶୋଇପଡ଼ିଛି ଯେ ଟିକିଏ ହଲଚଲ ବି ହେଉନି । ଶୋଉ, ଭୋକ ଉପାସରେ ପ୍ରାଣଶକ୍ତି କ୍ଷୀଣ ହେଇଯାଇଛି । କେତେ ସମୟ ବା ଲାଗିବ ତାକୁ ସ୍ତବ୍ଧ କରି ଦେବାକୁ । ଆହା କେତେ ଦୁଃଖ କଷ୍ଟ ସହି ଆଦର ସିନିହ ଦେଇ ତାକୁ ବଢ଼େଇଥିଲା । ସେ ହତଭାଗା ତା' ସିନିହର ମୂଲ ଦେଇପାରିଲାନି । ଓଲଟି ତାକୁ ବଳି ଚଢ଼େଇବ ନିଜ ସୁଖସଂପଦ ପାଇଁ । ଠାକୁରେ କେବେ ତାକୁ କ୍ଷମା କରିପାରିବେନି । ଯେତେ ପ୍ରକାରେ ଯୁକ୍ତି ଦେଲେ ବି ସେ ଅପରାଧୀ । ଜାଣୁଛି...

ହଠାତ୍ ତା' ପାଦ ଟି ଝୁଣ୍ଟିହେଇଗଲା, କଣ ଗୋଟାଏ ପଡ଼ିଛି ବାଟରେ, କିଏ ଶୋଇଛି ? ପୁଣି ଭାବିଲା, କିଏ କାହିଁକି ଶୋଇବ ଏଠି – ହାତୀ ପଲ ଦଳିଦେଇଛନ୍ତି ନିଶ୍ଚୟ । ଦେଖିବ କି କିଏ ? ପୁଣି ଭାବିଲା ନା, ନିଜ କାମ ସାରିଲାପରେ ବାକି କଥା । ଏଇଟା ହିଁ ତା'ର ଲକ୍ଷ୍ୟସ୍ଥଳ । ଆଗକୁ ସେ ଆଉ ଯିବନି । ସକାଳ ହେଲେ ସମସ୍ତେ ଏଠିକି ଆସି ଖୋଜକରିବେ ରିପୋର୍ଟ ଲେଖେଇବାକୁ ସେ ବି ଆସି ଦେଖିବ । ଯାହା ଯିମିତି କହିବା କଥା କହିବ ବାବୁଙ୍କୁ ।

ଏଥର ବୁଢ଼ୀମାଁକୁ ସେ କାନ୍ଧରୁ ଓହ୍ଲେଇ ଶୁଆଇ ଦେଲା ମାଟି ଉପରେ । ଅନ୍ଧାର ଭିତରେ ଅଣ୍ଡାଳି ବୁଢ଼ୀମାଁର ପାଦଦିଟା ଧରି କୁହାର ହେଲା ବେଳକୁ ଝାଳରେ ତିନ୍ତି ଯାଉଥିଲା ଗୋଟାପଣେ । ଏବଂ ତା'ହାତ ଥରୁଥିଲା । ନିଜକୁ ନିଜେ ସାହସ ଦେଇ କହିଲା – ଏତେବେଳକୁ ଇମିତି ଦୁର୍ବଳ ହେଲେ ଚଳିବନି – କାମ ସାରିବାକୁ ହେବ । ସେଇ ସ୍ଥିତିରେ ଘନଶ୍ୟାମ ବାରିକ ସାହସର ସହିତ ବୁଢ଼ୀମାଁବେକକୁ ଚିପିଲା ମୁହୂର୍ତ୍ତେ । କିଛି ହଲଚଲ ନାହିଁ । ଆଶ୍ଚର୍ଯ୍ୟ ! ଘନ ଭାବିଲା କି ବା ଜୀବନ ବିଚାରୀର ଯେ ଛଟପଟ ହେବ । ଶୋଇଥିଲା ତ ଶୋଇପଡ଼ିଲା ସବୁଦିନ

ପାଇଁ । ହାତନେଲା ନାକପାଖକୁ ନିଶ୍ୱାସ ନାହିଁ । ବାସ୍ । ଏଥର ଘରକୁ ଫେରିବ । ଉଠି ଚାଲିଲା । ଛ'ଆଠ ପାହୁଣ୍ଡ ଯାଇଛି କି ନାହିଁ ଭାବିଲା, ଏଇଠି ପଡ଼ିଥିବା ମୃତଦେହଟାକୁ ଟିକେ ଦେଖିନବ । ଯଦିଓ ଅଂଧାର କିଲିବିଲି, ଚିହ୍ନିହେବନି - ତଥାପି ନଇଁପଡ଼ି ଖୋଜି ନେଲା ସ୍ତ୍ରୀଲୋକଟିଏ । ବିଚାରୀ, ଛାଡ଼, ଆଉ ଅଣ୍ଡାଳିବା ଦରକାର ନାହିଁ ।

ଘରକୁ ପଶିଲା କିଛି ଯନ୍ତ୍ରଣା ମିଶା ନିଶ୍ଚନ୍ତ ପଣ ନେଇଁ - ଏଥର ସେବ ସହିତ ବୁଝାମଣା କରିବାକୁ ହେବ, ତାର କଣ୍ଟା ସେ ବାଟରୁ ହଟେଇ ଦେଇଛି ।

ଘର ଅଂଧାର ଥିଲା । ଡିବିରିରୁ ତେଲ ସରିଯାଇଥିଲା । ବାସ, ମାଳିଆ ଭୋକରେ ଶୋଇପଡ଼ିଥିଲେ । କିନ୍ତୁ ଚାନ୍ଦି ଆଖିରେ ନିଦ ନଥିଲା । ଭୟରେ କଂପୁଥିଲା ବିଚାରୀ ଘର ଭିତରେ । ଚାହିଁ ପାରୁନଥିଲା ଅଂଧାର ଭିତରକୁ ।

ହଠାତ୍ କାନରେ ବାଜିଲା କିଏ ଆସିବା ଶବ୍ଦ । ବାପା ହୋଇଥିବ ଅନୁମାନ କରି ସାହସ ଗୋଟେଇ ଦାଣ୍ଡ ଦୁଆରକୁ ଗଲା । ଘନ ପଚାରିଲା, କିଏ ଚାନ୍ଦି କିଲୋ, ଶୋଇନୁ ଏଯାଏ ?

ଉତ୍ତର ଦେବା ପୂର୍ବରୁ ଚାନ୍ଦି ସେଇଠି ଠିଆହୋଇ ଓଲଟା ପ୍ରଶ୍ନ କଲା, ବୁଢ଼ୀମାଁକୁ କୋଉଠି ଛାଡ଼ି ଅଇଲୁ ବାପା ? ମୋ ବୋଉ କାହିଁ ??

ଠିଆ ହୋଇଗଲା ଘନ । ଘର ଫେରନ୍ତି ବାଟରେ କିଛି ନୂଆଁ ସ୍ୱପ୍ନକୁ ଗୋଟେଇ ତାକୁ ନିଜ ବାଗରେ ସାଜଡ଼ି ସୁଜୁଡ଼ି ଦେଖିବାକୁ ଚେଷ୍ଟା କରୁକରୁ ହଠାତ୍ ଦପ୍ କରି ଲିଭିଗଲା ସବୁ ଆଲୁଅ । ନିର୍ବାକ ହେଇ ସେ ଚାହିଁ ରହିଲା ଚାନ୍ଦି ମୁହଁକୁ !!



# ମେଘକନ୍ୟା

ସମୁଦ୍ରକୂଳିଆ ଗାଁ, ଖୁବ୍ ବଡ଼ ନହେଲେ ବି ଛୋଟ ନୁହେଁ । ... ଅନେକ ଦୂରରୁ ଶୁଭୁଛି ସମୁଦ୍ରର ଗୁରୁ ଗର୍ଜନ । ଆନ୍ଦୋଳିତ ହେଉଛି ସମୁଦ୍ର । ନିଜ ଭିତରେ ଅଶାନ୍ତ, ଅତୃପ୍ତ । ଏଇ ଗର୍ଜନ ସେଇ ଅନୁଭବର ଶାବ୍ଦିକ ପ୍ରକାଶ । ଏଇ ତ ସଂଧ୍ୟା ନଇଁଛି । ଆଉ ଟିକିଏ ପରେ ପ୍ରାଚୀ ଆକାଶରେ ଉଇଁ ଆସିବ ଜହ୍ନ । ଆଉ ସେତିକିବେଳକୁ ତାକୁ ଦେଖି ଆହୁରି ପାଗଳ ହେବ ଏଇ ସମୁଦ୍ର । ରାତି ବଢ଼ିଲେ ଆହୁରି ଗର୍ଜିବ । ଘରିଆଡୁ ନିଶୂନ୍ ହେଇ ଯାଇଥିବ; ଆଉ ଫୁଲେଇ ଜହ୍ନ ଉଠି ଆସିବ ଆକାଶର ଛାତି ଉପରକୁ । କେଜାଣି କେତେ ଛଇ ଦେଖାଇ ଖେଳିବ ତା’ ଆଗରେ । ତେଣିକି ଉତୁରିବ ସମୁଦ୍ର ଉଚ୍ଚାଟରେ । ଢେଉର ହାତ ବଢ଼େଇବ ତାକୁ ଛୁଇଁବାକୁ । ଗୋଟାପଣେ ତାକୁ ପାଇବାକୁ । ସମୁଦ୍ରର କ’ଣ ବୟସ ଅଛି ? ନା ରୂପ ଅଛି, ନା ଅଛି ସୀମା ?? ଆକାଶର ନୀଳ ନେଇ, ମନର ମାପରେ ରୂପଟିଏ ଅଙ୍କାଯାଇ ପାରେ । ଅଖଣ୍ଡ ସମୟର ପ୍ରବାହମାନତାରେ ମାପିଲେ ସେ ତ ଅସୀମ - ଯିଏ ସଚରାଚର ବ୍ୟାପ୍ତ ହେଇ, ସମସ୍ତଙ୍କ ଭିତରେ ବିମୂର୍ତ୍ତ ଭାବେ ଥାଇ ନିଜ ପ୍ରତିପତ୍ତିକୁ ଜାହିର କରୁଛି । ଜହ୍ନ ଖେଳୁଛି; କେତେବେଳେ ଚକାଭଉଁରି ତ, କେତେବେଳେ ଲୁଚକାଳି, ତାରାଙ୍କ ଗହଳି ଭିତରେ ଲୁଚିଛପି । ସମୁଦ୍ର କିନ୍ତୁ ଘହିଁଛି ଆକାଶକୁ, ଜହ୍ନକୁ -କେଜାଣି କେତେ ଯୁଗ ହେବ ହିସାବ ନାହିଁ । ତା’ ଜାଣିବାରେ ଜହ୍ନ ତା’ର, କାହାର ନୁହେଁ ଆଉ । କାହାର ହେଇ ପାରେନା, ହେଲେ ଜହ୍ନ ଧରା ଦିଏନା । ସମୁଦ୍ର ଭିତରେ ସମୁଦ୍ରେ ତାତି, କହି ନ ପାରିବାର, ସହି ନ ପାରିବାର ଜଳେ ଈର୍ଷାରେ । ତା’ ମନ କ’ଣ ତା’ ଅକ୍ତିଆରରେ ଅଛି ? ଅଣାୟତ ସେ । ଜହ୍ନ ତାକୁ ପାଗଳ କରୁଛି । ହାତ ବଢ଼ଉଛି ସମୁଦ୍ର ଆକାଶ ଛାତିକୁ । ଛଡ଼େଇ ଆଣିବ ଜହ୍ନକୁ । ପାଉନି, ଭାଙ୍ଗି

ପଡୁଛି ବାରଂବାର । ଆଶା ଛାଡ଼ି ପାରୁନି, ଆହୁରି ବଢ଼ଉଛି, ଲମ୍ୱି ଯାଉଛି ଢେଉର ହାତ । ଆକାଶେ ହଲଚଲ ତା' ଭିତରେ । ଜାଣି ନ ଜାଣିଲା ପରି ଢାଳି ଦେଉଛି ଚନ୍ଦ୍ରିକାର ଶୀତଳ ଅତର । ଭିଜେଇ ଦଉଛି ନୀଳଜ୍ୟୋତ୍ସ୍ନାର କାକର ବିନ୍ଦୁରେ । କାମନା ଜଳୁଛି ହୁତୁହୁତୁ ହେଇ । ସେଇଥିପାଇଁ ତ ଏତେ ବାଲି; ଏତେ ଶୂନ୍ୟତା ! କେମିତି ଜଣେଇବ ତା'ର ଜ୍ୱଳନକୁ ? ଗର୍ଜିବ ତ, ଗର୍ଜୁ ।

ସମସ୍ତେ କହୁଛନ୍ତି ସମୁଦ୍ର ଅସହଣି, ଅସଭ୍ୟ ସମୁଦ୍ର, ନିର୍ଲଜ । କହିବେ ତ । ହେଲେ କେହି ଶୁଣି ପାରୁନାହାନ୍ତି ତା' କଥା । ସେ କିନ୍ତୁ ଶୁଣି ପାରୁଥିଲା ! ବୁଝି ପାରୁଥିଲା ସମୁଦ୍ରର ମନ କଥା । କାରଣ ତା' ଭିତରେ ବି ସମୁଦ୍ର ଆନ୍ଦୋଳିତ ହେଉଥିଲା; ଗର୍ଜୁଥିଲା । ଜାଣେନା କାହିଁକି । ସମୁଦ୍ରର ସିନା କାୟା ନାହିଁ । ତା'ର ତ ଅଛି । କାୟାକୁ ଆଶ୍ରାକରି ମନଟିଏ ବି ଅଛି । କାହାକୁ ନ ଦିଶୁ ପଛେ । କାମନାର କ'ଣ ରୂପ ଅଛି ? ସେ ଅରୂପ, ହେଲେ ସର୍ବବ୍ୟାପୀ । ସମୁଦ୍ର ଭଳି । ଆଉ ରଂଗ ? କେହି କେହି କରିଛନ୍ତି ରଂଗର କଳ୍ପନା । କିଏ ତାକୁ ହୁତୁହୁତିଆ ଲାଲ କୃଷ୍ଣଚୂଡ଼ା କୁହନ୍ତି ତ, କିଏ ନିଆଁରଂଗୀ ପଲାଶ ଆଡ଼କୁ ଆଙ୍ଗୁଠି ଦେଖାନ୍ତି । କେହି କେହିବି ତାକୁ ପିଚୁକଳା କଳଅଂଧାର ବୋଲିବି କୁହନ୍ତି । ଏଇ ତ... ସକାଳ ଟେଲିଭିଜନରେ ଜଣେ ସାଧୁ କାମନା ଉପରେ ପ୍ରବଚନ କରୁଥିଲେ । ତାର ନକାରାତ୍ମକ ଦିଗ ପ୍ରତି ବିଶେଷ ଜୋର ଦେଇ କହିଥିଲେ ଯେ, କାମନାର ବିଲୟ ହିଁ ସକଳ ସୁଖର ନିଦାନ । ମିଛ କଥା । ମିଛ ହିଁ ଲାଗିଲା । କାମନା କେବେ ବିନାଶ ହେଲାଣି ନା ହେବ ! ତା'ର ଅନେକ ରୂପ । ତା' ସ୍ଥିତି ତ କୋଉ ଅନାଦି କାଳରୁ ସୃଷ୍ଟିର ପ୍ରଭାତରୁ । ସେଇଥିପାଇଁ ତ ସେ ଆଦିମ । ସେ ଅଛି ବୋଲି ସମସ୍ତେ ଅଛନ୍ତି । ସଂସାର ଅଛି, ସବୁ ଅଛି । ଅବଶ୍ୟ ପ୍ରତ୍ୟେକ ମୁହୂର୍ତ୍ତରେ ନିଜ ରୂପକୁ ସଜାଡ଼ି ସୁଜୁଡ଼ି ପେଶ୍ କରୁଛି ଲୋଭନୀୟ କରି । ଆକର୍ଷଣ କରୁଛି ସୃଷ୍ଟି ଆଡ଼କୁ । ନହେଲେ, ଏଇ ପୃଥିବୀ ମରୁଭୂମି ପାଲଟି ଯାଇନଥାନ୍ତା ? ନା, ହେଇନି । କି ହବନି । କାରଣ ଏଇ ପୃଥିବୀ ସବୁବେଳେ ସରସ, ସୁନ୍ଦର, ପ୍ରାଣବନ୍ତ । ଲାଲ୍ କୃଷ୍ଣଚୂଡ଼ାର ପୃଥ୍ୱୀ । ଏଠି ଖାଲି ଆଖି ପାଉନଥିବା ମାଇଲ ମାଇଲ ବ୍ୟାପୀ ପଲାଶ ବଣ । ନିଆଁରଂଗୀ ଥୋପା ଥୋପା ପଲାଶ । ଦେହ ମନରେ ଖାଲି ନିଆଁ ଲଗାଏ । ଜଳେ ଆଉ ଜଳେ । ଥରେ ନିଆଁ ଲାଗିଲେ ଆଉ ଲିଭେନା । ଯେମିତି, ଏଇ ସମୁଦ୍ରର । ଏତେ ପାଣିଥିବା ସତ୍ତ୍ୱେ ଲିଭୁଛି, କ'ଣ ସେଇ ନିଆଁ ? କାମନାରଂଗୀ କୃଷ୍ଣଚୂଡ଼ା ଆଉ ପଲାଶର ଗୁଣ ହିଁ ସେମିତି । ଖାଲି ଟାଣିବ ନିଜ ଆଡ଼କୁ । ଆଉ ସେ ନିଜେ,... ? ନିଜେବି ତ ପିଲାଟି ଦିନରୁ ଏଇ କୃଷ୍ଣଚୂଡ଼ା ଆଉ ପଲାଶ ପାଇଁ ପାଗଳ । ଏବେ ବି, ଏଇ ବୟସରେ ବି । ବୋଉକୁ ସେ ଅନେକ ଥର କହିଥିଲା, ବାଡ଼ିରେ କୃଷ୍ଣଚୂଡ଼ା ନହେଲେ ପଲାଶ ଗଛଟିଏ ଲଗେଇବାକୁ । କହିବାକୁ ଗଲେ ଜିଦି ବି କରିଥିଲା । ବୋଉ କିନ୍ତୁ ମୋଟେ ରାଜି ହେଇନଥିଲା । ସେ'ଦିନ ଅବଶ୍ୟ ସେ ତା'ର କାରଣ ଜାଣିନଥିଲା । ବୋଉ କାହିଁକି ବାରଣ କରୁଛି । ସେତେବେଳେ

ବୋଉ କହିଥିଲା ଯେ, ଗନ୍ଧବାସ୍ନାହୀନ ଏଇ ଫୁଲରେ କେବଳ ଉଚ୍ଚାଟନକାରୀ ରଂଗ ଅଛି, ଯାହା ମନର ସ୍ଥିରତା ଭଂଗ କରିବ ।

ସେ କିନ୍ତୁ ପଲାଶ ଆଉ କୃଷ୍ଣଚୂଡ଼ା ପାଇଁ ପାଗଳ ହେଇ ଯାଉଥିଲା । ତେବେ ମନ ବୁଝିବାକୁ ତାଙ୍କ ବାଡ଼ିରେ ନହେଲା, ଘରଠୁ ଟିକିଏ ଦୂରରେ ଛକ; ବୁଲାଣିରେ ରଘୁ ମଉସାଙ୍କ ଘର ସାମ୍ନାରେ ଥିଲା ଗୋଟିଏ ପଲାଶ ଗଛ । ବସନ୍ତ ଆସିବା ଜାଣିଲେ ହିଁ ଗଛଟାରେ ନିଆଁ ଲାଗିବାର ପ୍ରସ୍ତୁତିପର୍ବ ଆରମ୍ଭ ହୋଇଯାଏ । ସିଏ ବି ନଜର ରଖିଥାଏ ସେଇ ସମୟକୁ । ସ୍କୁଲ ଯିବା ଆସିବା ବେଳରେ ସେ ଋହିଁ ଋହିଁ ଯାଏ ଗଛକୁ । ନହେଲେ ବି, କିଛି ଗୋଟାଏ ବାହାନା ଦେଖେଇ ସେ ପ୍ରତିଦିନ ଥରେ ଦିଥର ବୁଲିଆସେ ଗଛ ପାଖରୁ । ଦୂରରୁ ଦେଖିଲେ ଲାଗେ ଗଛରେ ଥୋପା ଥୋପା ହୋଇ ନିଆଁଲାଗି ଟିକ୍ ଟିକ୍ ଦିଶୁଛି । କହି ନ ପାରିଲେ ବି ଅନୁଭବ କରେ, ତା' ନିଜ ଭିତରେ ବି ଘଟୁଛି କିଛି ଗୋଟାଏ । ଅନୁଭବ କରୁଛି ସେ ତାତିକୁ । ରାତିରେ ସ୍ୱପ୍ନ ଦେଖେ ସେ ପଲାଶ ଗଛ ହୋଇଯାଇଛି । ସ୍କୁଲ ସାରି କଲେଜ ଜୀବନରେ ମଧ ତା'ର ସେଇ ଅଭ୍ୟାସ ଜାରିଥିଲା । ପଲାଶ ସହିତ ସେଇଦିନରୁ ତା'ର ପରିଚୟ ଆଉ ବନ୍ଧୁତା । ମିହିର ସହିତ ମଧ ତା'ର ପରିଚୟ ହେଇଥିଲା ଏଇ ପଲାଶ ମାଧମରେ । ପଲାଶ ଗଛ ପାଖକୁ ଯିବା ଅବସରରେ ହିଁ ମିହିର ସହିତ ଦେଖା ସାକ୍ଷାତ । ଠିକ୍ ସମୟ କଣ୍ଟା ଦେଖି ଅପେକ୍ଷା କରିଥିବ ତାକୁ ମିହିର । ସେହି ବଂଧୁତାର ଘନିଷ୍ଠତା, ଦୁହିଁଙ୍କୁ ପାଗଳ କରି ମନରେ ନିଆଁ ଲଗେଇଥିଲା । କେବଳ ଏତିକି ନୁହେଁ, କଲେଜ ପଢ଼ା ନ ସରୁଣୁ ସେ ଜିଦ୍ କରିଥିଲା ମିହିରକୁ ବାହା ହେବ । ତାକୁ ଛାଡ଼ି ସେ ବଂଚି ପାରିବନି – କଥା ଦେଇ ସାରିଛି ।

ଏଠି ବି ରାଜି ହେଉନଥିଲା ବୋଉ । କାନ୍ଦିଲା, ଅନଶନ କଲା – କଥା ଫେରାଇ ଆଣ, କହିଲା, ସୁଖୀ ହେବୁନି ମା', କୋଉଥିରେ ସେମାନେ ଆମ ସରି ସମାନ ନୁହଁନ୍ତି । ତୁ ଯାହା ହାତ ଧରିବାକୁ ଋହୁଁଛୁ, ସିଏ ତ ପଲାଶ, ଖାଲି ଦେଖା ସୁନ୍ଦର, ବାସ୍ନା ନାହିଁ, ସଂସ୍କାର ନାହିଁ, କୁଳଶୀଳ ବି ନାହିଁ । ବାପା ଯଦିଓ ତାକୁ ଖୁବ୍ ଭଲ ପାଉଥିଲେ; ସେ ବିବଶ ଥିଲେ ବୋଉ ପାଇଁ । ହଁ-ନାହିଁର ଦ୍ୱନ୍ଦ୍ୱ ଦୋଳନ ଭିତରେ ମେଘମାଳା, ଓରଫ ମେଘାର ଜିଦ୍‌କୁ ସେ ରଖିପାରି ନଥିଲେ । ଜାତିକୁଳ, ବଂଶ ମର୍ଯ୍ୟାଦାର ପାଚେରି ଡେଇଁବା ସମ୍ଭବ ନଥିଲା । ସାହସ ନଥିଲା କିଛି ଗୋଟାଏ ନୂଆ କରି ଦେଖେଇବାକୁ । ଅନେକ ସଂଘର୍ଷ ଆଉ ସଂଘାତର ସମୟ ସେ ସବୁ । ଲୁହ ଆଉ ଲୁହାଣର ଦିନ । ନିନ୍ଦା ଅପନିନ୍ଦାର ଦିନ । ବୁଝି ବୁଝେଇ ନ ପାରିବାର ଦିନ ।

ମିହିର ମଧ ଦୃଢ଼ମନା ନଥିଲେ । ଭାଙ୍ଗି ପଡ଼ିଥିଲେ ନିଜ ଭିତରେ-କିଛି କରିନପାରିବାର ଗ୍ଲାନିରେ । ବାପାବୋଉଙ୍କର ସ୍ୱୀକୃତି ନଥିଲା ଏଥିରେ । ଦୁହିଁଙ୍କ ସଂପର୍କକୁ ଘୃଣା ନଜରରେ ଦେଖିଥିଲେ । ସେମାନଙ୍କ ଆଖିରେବି ଘର ସାମନାର ସେଇ ପଲାଶ ଗଛଟା ହିଁ ଅପରାଧୀ ହେଇ ଠିଆ ହେଇଥିଲା । ଶେଷରେ ଦିନେ... ଘୃଣା ଆଉ କ୍ରୋଧରେ ପୁଅକୁ କିଛି କହିନପାରି ସୁନ୍ଦର ଘଞ୍ଚ ପୁଷ୍ପବନ୍ତ ସେଇ ପଲାଶ ଗଛଟାକୁ ବିବାକ୍ କାଟି ପକେଇଥିଲେ । ବିନା କାରଣରେ

ଗଛଟାକୁ କାଟିବା ଦେଖି ଆଖପାଖର ଲୋକେ ପ୍ରଶ୍ନ କରିଥିଲେ ବି, ତେବେ କାହାକୁ କିଛି ଉତ୍ତର ଦେବା ତାଙ୍କର ଆବଶ୍ୟକ ନ ଥିଲା ।

ମେଘମାଳାର ଠିକ୍ ମନେ ଅଛି । ସେଇଟା ଥିଲା ଏକ ବର୍ଷନ୍ତି ସଂଧ୍ୟା । କୁଆଡ଼େ ନାହିଁ ନଥିବା ଝଡ଼ ହଠାତ୍ ଭୟଙ୍କର ରୂପ ନେଇଥିଲା । ଘରିଆଡ଼ ଜମାଟ ବନ୍ଧା ଅଂଧାର । ଝଡ଼ର ତାଣ୍ଡବ ଚାଲିଥିଲା ସାରା ରାତି । ଘଟଣା, ଅଘଟଣ, ଦୁର୍ଘଟଣା ସବୁକୁ ନିଜ ଭିତରେ ଲୁଚେଇ ରଖିଥିଲା ସେଇ ରହସ୍ୟମୟୀ ଅଂଧାର ରାତି । ଅଥଚ ରାତି ପାହିଲା ବେଳକୁ ଥମି ଯାଇଥିଲା ଝଡ଼ର ପ୍ରକୋପ । ସଫା ହେଇ ଯାଇଥିଲା ଆକାଶ । ହେଲେ ଦାଣ୍ଡ ଦୁଆର ଖୋଲିଲା ବେଳକୁ ଆଉ ଗୋଟିଏ ଥମ୍ବିଲା ଝଡ଼ ଠିଆ ହେଇଥିଲା ନିଃଶ୍ୱାସ ରୁଦ୍ଧ କଲା ଭଳି । ଖୋଲାଖୋଲି କେହି କିଛି କହି ପାରୁନଥିଲେ ସିନା, ଗୋଟାଏ ଚାପା ଗୁଞ୍ଜରଣ କାନରୁ କାନ ହେଇ ବ୍ୟାପି ଯାଇଥିଲା କ୍ରମଶଃ କୁହୁଡ଼ି ମାଡ଼ିଲା ଭଳି । କିଏ ଜଣେ କହିବି ପକେଇଲା ସମ୍ଭାଳି ନପାରି । ପଥରମୁଣ୍ଡିଆ ପାଖ ଘାସ ମଇଦାନରେ ଯୋଉ କୃଷ୍ଣଚୂଡ଼ା ଗଛ... ତାରି ଡାଳରେ ଜଣେ କିଏ ଝୁଲି ପଡ଼ିଛି ବେକରେ ଗାମୁଛା ଦେଇ, କିଏ ???

କେଜାଣି, ଚିହ୍ନି ହେଉନି ଦୂରରୁ । ଚଂପତିରାୟଙ୍କ ପୁଅ ମିହିର ଭଳି ଦିଶୁଛି । ଆଖ ପାଖରେ ଚଳପ୍ରଚଳ ହେଉଥିବା ମଣିଷମାନେ ହଠାତ୍ ଠିଆ ହେଇ ପଡ଼ିଲେ କହିବା ଲୋକଙ୍କୁ ଘେରି କଥାର ସତ୍ୟାସତ୍ୟ ଜାଣିବା ପାଇଁ । ଆହା, ଓହୋ, ଚୁଚୁର ଦୀର୍ଘଶ୍ୱାସରେ ଓଜନିଆ ଧରି ଯାଇଥିଲା ଉପସ୍ଥିତି ସମୟ । ଘଟଣା କ'ଣ ଜାଣିବା ପାଇଁ; ଔତ୍ସୁକ୍ୟ ନେଇ ଧାଇଁ ଆସିଲା ମେଘା, କାନରେ ବାଜିଲା ହଠାତ୍ ମିହିର ନାଁଟା, ଜମାଟ ବାନ୍ଧିଗଲା ରକ୍ତ । କ'ଣ ହେଲା ମିହିରର । ତା' କଥା କାହିଁକି ପଡ଼ିଛି-ଚୁପ୍‌ଚାପ୍ ଗୁମସୁମ ମୁହଁ ସବୁ, ଖୋଲା ଶୁଭୁନି କଥା... କାହାକୁ ପଚାରିବ, ତା' ମିହିରର କ'ଣ ହେଲା ? ସମସ୍ତଙ୍କ ମୁହଁକୁ ଚାହିଁଲା ମେଘା ବିକଳ ହେଇ, କିଏ ଟିକିଏ କୁହ ଭଲା... ଶେଷରେ ବାପାଙ୍କ ମୁହଁ ଉପରେ ଦୃଷ୍ଟି ସ୍ଥିର କଲା ମେଘା, ସତ ଜାଣିବାକୁ । ବାପା ଧରଣୀ ଶ୍ରୀଚନ୍ଦନ ଝିଅ ମୁହଁକୁ ସିଧା ଚାହିଁ ପାରିଲେନି । ଆଖି ଅବନତ ହେଲା । ପେଟ ଭିତରୁ କୋହ ଉବୁକେଇ ଆସିଲା । ରୁଦ୍ଧକଣ୍ଠରେ କେତୋଟି ଶବ୍ଦ ସେ ଉଚ୍ଚାରଣ କଲେ । "ଏମାନେ କ'ଣ କହୁଛନ୍ତି, ମିହିର ସେଇ କୃଷ୍ଣଚୂଡ଼ା ଗଛରେ......" ମେଘା କିଛି ଆଉ ଶୁଣିଲାନି । କ'ଣ ବୁଝିଲା କେଜାଣି, ଧାଇଁଲା ଏକାଲୟରେ ସେଇ କୃଷ୍ଣଚୂଡ଼ା ମୂଳକୁ । ଯେଉଁଠି ମିହିର ସହ ତା'ର ନିତି ସାକ୍ଷାତ୍ ହେଉଥିଲା, ଯୋଉ କୃଷ୍ଣଚୂଡ଼ା ପରସ୍ପରକୁ ଜାଣିବାର, ଚିହ୍ନିବାର ଏବଂ ଯୋଡ଼ିବାର ସୁଯୋଗ ଆଣି ଦେଉଥିଲା । ବାନ୍ଧି ଦେଇଥିଲା ଏକ ଅଜଣା ବନ୍ଧନରେ; ନିଜେ ସାକ୍ଷୀ ରହି । ତାରି ମୂଳକୁ ଧାଇଁଲା ମେଘା ବାୟାଣୀ ଭଳି । ସମୁଦ୍ର କୂଳର ସେଇ ଗାଁ ଦାଣ୍ଡ ଚାହିଁଥିଲା ତାଟକା ହେଇ ।

କାହିଁକି, କ'ଣ, କେମିତିର ଅନେକ ପ୍ରଶ୍ନବାଚୀ ଗାଁ ଦାଣ୍ଡର ପବନରେ ଗୁଂଜରି ଉଠିଥିଲା । ମେଘାର କିନ୍ତୁ ଏସବୁ ପ୍ରତି ଧ୍ୟାନ ନ ଥିଲା । ସବୁ ଗୁଂଜନ, ପ୍ରଶ୍ନବାଚୀ ଆଉ ଆଖିର କୌତୂହଳକୁ

ଆଡ଼େଇ ମେଘା ଧାଇଁଥିଲା ବାୟାଣି ଭଳି କୃଷ୍ଣଚୂଡ଼ା ମୂଳକୁ । ଅପବାଦ, ନିନ୍ଦା, ଛିଛାକର, ଟୀକାଟିପ୍ପଣୀର ନାଗରା ପିଟା ହେଉଥିଲା ତା' ଆଗ ପଛରେ । ପଣତ ଉଡୁଥିଲା ପବନରେ, ପାଦ ଯେମିତି ମାଟି ଉପରେ ନଥିଲା । ମନ ଧାଉଁଥିଲା ସମୟକୁ ପଛରେ ପକେଇ ଆଗକୁ ଆଗକୁ ତା' ମିହିର ପାଖକୁ । ଓଠମାନେ ଘୁଞ୍ଚି ଯାଉଥିଲେ କାନ ପାଖକୁ; କାନମାନେ ସନ୍ତର୍ପଣରେ ଘୁଞ୍ଚି ଆସୁଥିଲେ କଥାକୁହା ଓଠମାନଙ୍କ ପାଖକୁ-ଦେଖ କେମିତି ଧାଇଁଛି ଶ୍ରୀଚନ୍ଦନ ଘର ଗେଲବସରର ସୁନାନାକି ଝିଅ । ରାଇ ବିନୋଦିନୀ ରାଧା ତ'..., 'କ'ଣ ହେଇଥିବ ଘଟଣା ?' 'ଜାଣିନୁ କି ବଡ଼ଘରର ବଡ଼ ଗୁମର କଥା'..., 'ଦେଖ କିମିତି ଲାଜ ସରମ ନାହିଁ ଧାଇଁଛି' ଦେଖ... ଦେଖ... ଦେଖ । ସମସ୍ତେ ସମସ୍ତଙ୍କୁ ଦେଖଉଥିଲେ ଆଉ ଦେଖୁଥିଲେ, କହୁଥିଲେ "କେଡ଼େ ଚୁପୁସାଟିଏ ମ..." । ଗାଁ ଦାଣ୍ଡ ଉଠୁଥିଲା ପଡୁଥିଲା । ନୂଆ ଘଟଣା । ନୂଆ ଇତିହାସଟିଏ ରଚି ହୋଇ ଯାଇଥିଲା । ସେଇ ସମୁଦ୍ର କୂଳର ଗାଁ ପାଇଁ । କେବେ ଘଟିନଥିଲା ଏମିତି ନାଁ ପକେଇଲା ଭଳି ଘଟଣା । ତେବେ ନାଁ ପକେଇଲା, କି ନାଁ ରଖିଲା ଆଉ ପ୍ରକାରେ, ସମୟ ହିଁ ତାର ସାକ୍ଷୀ ଥିଲା । ହେଲେ ଚଳନ୍ତି ସମୟର ପରିପ୍ରେକ୍ଷୀରେ ଆସି ସାମ୍ନାରେ ଠିଆ ହୋଇଥିବା ବାହ୍ୟ ରୂପଟା ମେଘମାଳା ଦେହରେ କଳଙ୍କ ହିଁ ବୋଳି ଦେଇଥିଲା ବହଳ ବହଳ କରି । ଯେତେବେଳେ ମେଘା, ଧରଣୀ ଶ୍ରୀଚନ୍ଦନଙ୍କ ଅଭିଆଡ଼ି ଝିଅ ମେଘମାଳା ହାତରୁ ସୁନା ଚୂଡ଼ି ଏବଂ କପାଳରୁ ବିନ୍ଦି ପୋଛି ମିହିରର ଶବଧାର ଉପରେ ଥୋଇ ଦେଇ ସତ୍ୟପାଠ କଲା - "କିଏ ସ୍ୱୀକାର କରୁ କି ନକରୁ, ଈଶ୍ୱରଙ୍କ ନାଁରେ ଶପଥ କରି, ଦଶଦିଗପାଳଙ୍କୁ ସାକ୍ଷୀ ରଖି ମୁଁ ମେଘମାଳା, - ଧରଣୀ ଶ୍ରୀଚନ୍ଦନଙ୍କ ଝିଅ କହୁଛି, ମୁଁ ମିହିର ଚଂପତିରାୟଙ୍କ ପତ୍ନୀ । ସେ ମୋ ସୀମନ୍ତରେ ସିନ୍ଦୂର ଦେଇ ଧର୍ମପତ୍ନୀର ମର୍ଯ୍ୟାଦା ଦେଇଛନ୍ତି । ତାଙ୍କ ରକ୍ତ ମୋ' ଭିତରେ ରୂପ ପରିଗ୍ରହ କରୁଛି..." ଏକଥା ବହୁ କଷ୍ଟରେ ଉଚ୍ଚାରଣ କରି ମେଘା ଆଉଜି ପଡ଼ିଲା କୃଷ୍ଣଚୂଡ଼ା ଗଛକୁ ଓ ଚେତନା ହରେଇଲା ।

ହଠାତ୍ ସବୁ ଗୁଂଜରଣ ବନ୍ଦ ହେଇଗଲା ସେଇ ମୁହୂର୍ତ୍ତରେ । ସମୁଦ୍ରକୂଳ ଗାଁର ମାଟି ଆଉ ଆକାଶ ସତେ ଯେମିତି ସ୍ତବ୍ଧ । ପ୍ରକୃତିର ଉଚ୍ଛ୍ୱାସ ନିରବିଗଲା । ପେନ୍ଥାଏ କୃଷ୍ଣଚୂଡ଼ା ଝରି ପଡ଼ିଥିଲା ମିହିରର ଶବଧାର ଉପରେ ଶ୍ରଦ୍ଧାଞ୍ଜଳି ଦେଇ, ନିଃସ୍ତରଙ୍ଗ ଗାଁ ଦାଣ୍ଡ, ବିସ୍ମିତ ହେଲା ସକାଳ । କି ଦୁଃସାହସ ସତରେ ଏଇ ଝିଅଟାର !! ନାହିଁ ନଥିବା କଥା କରି ଦେଖେଇଦେଲା ! ସବୁରି ମନରେ ହଜାରେ ପ୍ରଶ୍ନବାଚୀ । କେବଳ ଭାବୁଥିଲେ ଆକାଶ ପାତାଳ, ଆଗକୁ ପଛକୁ ହୋଇ । କାହା ପାଟିରେ କଥା ନଥିଲା ।

ହଠାତ୍ ଜଣେ କିଏ ପ୍ରଶ୍ନ କରି ଉଠିଲା 'କିଏ ସାକ୍ଷୀ ତା'ର ??' ଅଶ୍ରୁମୁଖୀ ମେଘା, ମିହିର ଛାତି ଉପରୁ ମଥାଟେକି ଚାହିଁଲା କୃଷ୍ଣଚୂଡ଼ା ଗଛକୁ ଓ ଅଙ୍ଗୁଳି ନିର୍ଦ୍ଦେଶ କଲା 'ଏଇ' । ଲୋକଙ୍କ ଭିତରେ ଚପା ଗୁଂଜରଣର ଢେଉ ଖେଳିଗଲା 'କି ଅସମ୍ଭବ କଥା କହୁଛି ଝିଅଟା ।' ମିହିରର ଶବ ବ୍ୟବଚ୍ଛେଦ ପାଇଁ ଡାକ୍ତରଖାନାକୁ ଗଲା । ଗାଁ ଦାଣ୍ଡ ଚାଲିଲା ତା' ପଛେ ପଛେ

ଆଉ ମେଘା ବାତୁଳ ପ୍ରାୟ ସିଧାସଳଖ ରଘୁ ଚଂପତିରାୟଙ୍କ ଦାଣ୍ଡ ଦୁଆରେ ଠିଆ ହେଲା ନିଜ ଅଧିକାର ମାଗିବାକୁ । ଚକିତ ହେଲା ଜନତା । ଚଂପତିରାୟ ଦୁଆର କିଳି ଦେଲେ । ମୁହଁ ଫେରେଇ ନେଲେ । ବାପା ବୋଉ ଅନେକ ବୁଝେଇଥିଲେ । ଭାଇମାନେ ହତଧରି ଡାକିଥିଲେ । "ଫେରି ଚାଲ ମା ଘରକୁ । ଯାହା ହେବାର ତ ହେଇଗଲା । କାହ୍ନୁ ପାଇଁ ସିନା ଗୋପ । ଆଉ କାହାକୁ ଅପେକ୍ଷା । ସମୟ ସରି ଯାଇନି । ଅନେକ ବାଟ ଚାଲିବାକୁ ଅଛି । ବାପାଙ୍କ ସମ୍ମାନ ବଂଶ ମର୍ଯ୍ୟାଦାର କଥା ଚିନ୍ତାକର, ଏଠି ତୋର କିଏ ଅଛି ??"

ସବୁ ଶୁଣିଲା ମେଘା ମୁଣ୍ଡପାତି । ବୁଝି ପାରିଲା, ଭାଇମାନଙ୍କୁ ତା'ର ଦୁଃଖ ବାଧୁଛି । କେମିତି ବି ନବାଧିବ, ତା' ଦେହରେ ଫୁଲ ପଡ଼ିଲେ ତ ସେମାନଙ୍କ ଦେହରେ ପଥର ପଡ଼େ । ପାଟିରୁ କଥା ସରୁ-ନସରୁଣୁ ତାର ସବୁ କାମ ହେଇଯାଏ । ଏବେ ବି ଇଚ୍ଛା କଲେ ଭାଇମାନେ ତା' ଜୀବନକୁ ଓଲଟପାଲଟ କରି ନୂଆ କରି ସଜାଡ଼ିଦେବେ । ହେଲେ ସେ ନିଜେ ତ ହତଭାଗୀ, ସେମାନଙ୍କର ସ୍ନେହର ଯୋଗ୍ୟ ନୁହେଁ । ତାଙ୍କ ଗେଲବସରୀ ସେରେନ୍ତୀ ଭଉଣୀ ମେଘା ଯେ ତା' ମନପ୍ରାଣକୁ ଅଜାଡ଼ି ଦେଇଛି ଆଉ ଜଣଙ୍କ ପାଇଁ । ସେ ମିହିରର । ମିହିରର ରକ୍ତ ତା' ଭିତରେ ବଢୁଛି । ସେ ଥାଉ କି ନଥାଉ କିଛି ଯାଏ ଆସେ ନା । ହଠାତ୍ ମେଘାର ଭାବନା ଠିଆ ହୋଇଗଲା ମୁହୂର୍ତ୍ତେ; ଭାବିଲା, ସେ କେମିତି ଭାବି ପାରୁଛି ଯେ, ମିହିର ନ ଥିବ, ଏଇଠି ଏମିତି ତାକୁ ଛାଡ଼ି, କ'ଣ ତା' ଆତ୍ମା ଆଉ କୋଉଠି ଆଶ୍ରା ଖୋଜୁଥିବ, ନା, ହେଇପାରେନା କେବେ । ସେ ଏଇଠି ଥିବ ତାରି ପାଖେ ପାଖେ । ସେ ସିନା ଦେଖିପାରୁନି ମିହିର ନିଶ୍ଚେ ଦେଖୁଥିବ ତାକୁ । ମେଘା କ'ଣ ଭାବିଲା କେଜାଣି ମୁଣ୍ଡଟେକି ସିଧା ସଳଖ ଚାହିଁଲା ଭାଇମାନଙ୍କ ମୁହଁକୁ । ଆଖିରୁ ଲୁହ ପୋଛି ନିଜକୁ ଦମ୍ଭ କଲା । କହିଲା, "କୁଆଡ଼େ ଯିବି ଭାଇ, ଏଇ ତ ମୋ' ଘର । ମୋ' ତୀର୍ଥସ୍ଥଳ । ମିହିରର ଜନ୍ମ ମାଟି । ଏଇଠିକି ତ ସେ ଆଣିଥାନ୍ତେ ମୋ' ହାତ ଧରି । ନ ହେଲା ଏବେ ସବାରିରେ ବସିଲିନି କି ମହୁରୀ ବାଜିଲାନି । ତୁମ ହାତର ଦୂବ ଚାଉଳ ମୋ ମୁଣ୍ଡରେ ପଡ଼ିଲାନି, ମୋ ଭାଗ୍ୟରେ ତୁମମାନଙ୍କ ଆଶୀର୍ବାଦ ପାଇବାର ଯୋଗ ନାହିଁ । ସାକ୍ଷୀ ଅଛନ୍ତି ଏଇ କୃଷ୍ଣଚୂଡ଼ା ଓ ପଲାଶ । ମୁଁ ମିହିରଙ୍କ ଧର୍ମପତ୍ନୀ । ମୋ' ଗର୍ଭରେ ତାଙ୍କର ସନ୍ତକ । ତାକୁ ତ ଅସ୍ୱୀକାର କରି ପାରିବିନି । ମୁଁ ମିଥ୍ୟାବାଦୀ ହେବି ? ସେଇ ଅଧିକାର ନେଇତ କହୁଛି, ଏଇଟା ହିଁ ମୋ ଘର, ଏଇଠି ଅଛି ମିହିରଙ୍କ ସ୍ମୃତି । ଏଇଠି ପାଇବ ମୋ ସନ୍ତାନ ତାର ପିତୃ ପରିଚୟ । ସମସ୍ତେ ହାରିଯାଇଥିଲେ ବୁଝେଇ ବୁଝେଇ ।

ହେଲେ ମେଘମାଳାର ଏକା ଜିଦ୍ । ସେ ଯିବନି ଆଉ କୋଉଠିକି । ମରିଯିବ ପଛେ, ଯିବନି । ସମସ୍ତେ ତଟସ୍ଥ । ଭାବି ପାରୁନଥିଲେ ଯେ, ଏଇ ସେଇ ମେଘା, ଯିଏ ଟିକିଏ କଥାର ଛୁଆଁରେ ମେଘ ଭଳି ଝରିଯାଉଥିଲା, ଆଜି ଏତେ କଠୋର ଆଉ ଦୃଢ଼ ହେଲା କେମିତି ! କେହି କେହି କହିଲେ, ପ୍ରେମ ଜିନିଷଟା ହିଁ ଏମିତି, ଅନେକ କିଛି ଅସମ୍ଭବକୁ ସମ୍ଭବ କରିପାରେ । ଅଘଟଣକୁ ଘଟଣ । ଏମିତିକି ସମୁଦ୍ର ଲଂଘିପାରେ ଆବଶ୍ୟକ ସ୍ଥଳେ । ତମେ ଶୁଣିନ ବିଲ୍ୱମଙ୍ଗଳ

କଥା । ଶବ ସଂସ୍କାର ହେଲା ବେଳକୁ ରାତି ବିତିଯାଇଥିଲା ଅନେକ । ସାରା ଗାଁ ଆଖିରେ ନିଦ ନଥିଲା । କେହି କେହି ରଘୁ ଚଂପତିରାୟଙ୍କୁ ଦୋଷ ଦେଉଥିଲେ ତ, ଆଉ କେହି ଧରଣୀ ଶ୍ରୀଚନ୍ଦନଙ୍କ ଆଭିଜାତ୍ୟର ଗଉଁଙ୍କୁ ଆଙ୍ଗୁଠି ଦେଖଉଥିଲେ । କଥା କଟାକଟି ତର୍କବିତର୍କରେ ରାତି ପାହିଥିଲା । କେହି ହେଲେ ମେଘା ଆଉ ମିହିରଙ୍କ ମାନସିକ ସ୍ଥିତି କ'ଣ ହୋଇଥିବ, ଯେଉଁଥିପାଇଁ ଜୀବନଟିଏ ଲିଭିଗଲା-ଚିନ୍ତା କରିନଥିଲେ । ଚିନ୍ତା କରିନଥିଲେ ମଧ୍ୟ ସାମାଜିକ ବ୍ୟବସ୍ଥାରେ କିଛି ପରିବର୍ତ୍ତନ ଆଣିବା ଉଚିତ୍ କି ନୁହେଁ ! ପରିବେଶ କିନ୍ତୁ ଶୋକାକୁଳ ଥିଲା; ଆବେଗାତ୍ମକ ଥିଲା । ଶବାଧାର ସହିତ ସମଗ୍ର ଗାଁଟା ଯାଇଥିଲା ମିହିରକୁ ଶେଷ ବିଦାୟ ଦେବା ପାଇଁ । କାହା ବୋଲ ନ ମାନି ମେଘା ବି ମିହିର ପଛେ ପଛେ ଏକୁଟିଆ ଗଲା ଶ୍ମଶାନ ଘାଟ ପର୍ଯ୍ୟନ୍ତ । ଆଞ୍ଜୁଳାଏ ଲୁହରେ ଶେଷ ଅର୍ଘ୍ୟ ବାଢ଼ି ସ୍ୱଗତୋକ୍ତି କରି କହିଲା– "ତମେ ସିନା ମୋତେ ଅଧାବାଟରେ ଛାଡ଼ି ଚାଲିଗଲ ମିହିର, ହେଲେ ମୁଁ କିମିତି ଯିବି, ମୋ ଉପରେ ତ ଦାୟିତ୍ୱ ଲଦି ଦେଇଗଲ । ଆମେ ଶପଥ ନେଇଥିଲେ ଏକାଠି ବଞ୍ଚିବା ଆଉ ଏକାଠି ମରିବାକୁ । ତମେ କିନ୍ତୁ ଶପଥ ଭୁଲିଗଲ । ହେଲେ ମୁଁ... ମୁଁ ତ ଆଉ ଏକୁଟିଆ ନୁହେଁ ଯେ, ତମ ପଛେ ପଛେ ଚାଲିଯିବି । ଦାୟିତ୍ୱ ସରିଲାଯାଏ ମୋତେ ବଂଚିବାକୁ ହେବ । ତା'ପରେ ଯାଇ ମୁଁ ମୁକ୍ତ, ତମେ ଅପେକ୍ଷା କରିଥିବ 'ମୁଁ ନିଶ୍ଚେ ଯିବି ।' ଏବଂ ଶ୍ମଶାନ ଘାଟରୁ ସିଧା ଚାଲି ଯାଇଥିଲା ରୂପେଇ ନଈ ଧାରକୁ କାହା ନିର୍ଦ୍ଦେଶକୁ ଅପେକ୍ଷା ନକରି । ସେଠୁ ଫେରିଆସି ନୂଆ ସାଦା ଥାନ ପିନ୍ଧିଥିଲା ଓ ପୁଣି ଯାଇ ବସିଥିଲା ଚଂପତିରାୟଙ୍କ ଦୁଆରେ ଧାରଣା ଦେଇ । ଚମ୍ପତିରାୟ ଘରୁ କେହି ସମବେଦନା ଜଣାଇ ନଥିଲେ କି ଦରଦ ଟିକିଏ ଦେଖାଇ ନଥିଲେ । ଓଲଟି ଦୋଷାରୋପ କରିଥିଲେ । ଆକ୍ଷେପ କରିଥିଲେ । ତାର ମାତୃତ୍ୱ ନେଇଁ ଠିଆ ହୋଇଥିଲା ବିରାଟ ପ୍ରଶ୍ନବାଚୀ । ସମସ୍ତଙ୍କୁ ଶୁଣେଇ ଶୁଣେଇ ରଘୁ ଚଂପତିରାୟ କହିଥିଲେ, "କାହାର ନାହିଁ କାହାର ପାପକୁ ପେଟରେ ଧରି ମୋ'ପୁଅ ମୁଣ୍ଡରେ ଦୋଷ ଲଦୁଛି ଶ୍ରୀଚନ୍ଦନ ଝିଅ । ଯଦି ଏ ରକ୍ତ ମୋ' ମିହିରର, ତା'ହେଲେ ସେ ବେଳରେ ଦଉଡ଼ି ଲଗଉଥିଲା କାହିଁକି ? ମରଦପୁଅର କ'ଣ ବଂଚିବାକୁ ବାଟ ନ ଥିଲା ? ନା ପେଟ ପୋଷିବାକୁ ସମ୍ବଳ ନଥିଲା ? ଏଇ ବଡ଼ ଘର ଝିଅର ଦାଉରୁ ରକ୍ଷା ପାଇବ ତ ସେ ଦୁନିଆ ଛାଡ଼ିଲା – ଏବେ ସଂପତ୍ତି ଲୋଭରେ ପାପକୁ ମୋ' ବେକରେ ଝୁଲେଇବାକୁ ଚାହୁଁଛି – ନିର୍ଦ୍ଦୟ ଭାବେ ମୁହଁ ଫେରେଇ ନେଲେ ଚଂପତିରାୟ ।" ଘୃଣାରେ ନାକ ଟେକିଲେ ଚଂପତିରାୟଙ୍କ ଘରଣୀ । "ତୁ ଯା'ଏଠୁ ତୋ ମୁହଁ ଚାହିଁଲେ ପାପ ।" ମେଘା କିନ୍ତୁ ଅଟଳ ତା' ଜିଦ୍‌ରେ । ଅବସ୍ଥା ସଂଗୀନ୍ ହେଲା । ଗାଁର ମାନ୍ୟଗଣ୍ୟ ମୁଖିଆ ମାନେ ନିଜ କାନ୍ଧକୁ ଦାୟିତ୍ୱ ନେଇ ବୈଠକ ଡାକିଲେ । ଜେରା କରାଗଲା ମେଘମାଳାକୁ ଅନେକ ପ୍ରକାରେ । ହେଲେ ସେ ପାଟି ଖୋଲିଲାନି । ଶେଷରେ ଏତିକି କହିଲା, "ସେ ଭଦ୍ର ଘରର ଝିଅ ଆଉ ବୋହୂ-ମିହିରର ବିଧବା ପତ୍ନୀ । ତା' ସନ୍ତାନକୁ ପୃଥିବୀର ଆଲୋକ ସେ ନିଶ୍ଚୟ ଦେଖାଇବ – ଏଇ ନିଷ୍ପତ୍ତିରୁ ତାକୁ କେହି ବଞ୍ଚିତ କରି ପାରିବେନି । ଏ ଦାୟିତ୍ୱ ତା' ନିଜର ।"

ମେଘା କିନ୍ତୁ 'ଚଂପତିରାୟ ଭବନ'କୁ ଆଉ ଯାଇପାରିଲାନି । ଫୁଲଫୁଟା ହଳଦିଆ ଶାଢ଼ି ବଦଳରେ ସାଦା ଥାନ ପିନ୍ଧି ବାଧ ହୋଇ ବାପ ଘରକୁ ହିଁ ଫେରିଲା । ବିଧବାର ବ୍ରତ ପାଳିଲା । ଏକାଦଶୀ କଲା । କାର୍ତ୍ତିକରେ ହବିଷ ରାନ୍ଧିଲା । ଆକାଶଦୀପ ଜାଳିଲା, ମିହିରକୁ ହୃଦୟରେ ରଖି । ଜନ୍ମ କଲା ବୋଉ କୁଂଜଲତାଙ୍କ ଛାତିରେ ପଥର ଚପି ହୋଇଗଲା । ଅଲିଅଳି ଝିଅର ତପସ୍ୱିନୀ ରୂପ ଦେଖି ସେ ପଥର ପାଲଟିଗଲେ ସତେ କି ! ସେଇ ଋତୁରେ ଆଉ କୃଷ୍ଣଚୂଡ଼ା ଫୁଟିଲାନି । ପଲାଶ ଗଛ ତ କବନ୍ଧ ସାଜିଥିଲା । ରୂପେଇ ନଈ କିନ୍ତୁ ଅଟକି ନଥିଲା । ସମୟ ସାଥିରେ ତାଳଦେଇ ବହି ଚାଲିଥିଲା ତା' ନିଜ ବାଟରେ । ମେଘା ଆଖିର ଲୁହ ଫେଣ୍ଟି ଦେଇ ଯାଉଥିଲା ରୂପେଇର ନୀଳଜଳ ବେଣୀରେ । ନିତି ସକାଳୁ ରୂପେଇ କୋଳରେ ଆଉଜି ଆଞ୍ଜୁଳାଏ ପାଣି ଟେକିଲା ବେଳକୁ ମନ୍ତ ଉଚ୍ଚାରଣ କଲା ଭଳି କହୁଥିଲା– ମନେ ଅଛି ତମ କଥା, ଏଥର ସିଏ ଆସିବ । ତା' ଆସିବା ବେଳ ହେଲାଣି । କେତେ ଖୁସି ହେଇଥାନ୍ତ ତମେ ଥିଲେ । ଦୁହେଁ ଖୁସି ହୋଇଥାନ୍ତେ । ସେଇ ସୁଖ ନାହିଁ ମୋ କପାଳରେ । ତଥାପି ମୋର ଦୁଃଖ ନାହିଁ । ତମ ଅମାନତକୁ ମୁଁ ସାଇତି ରଖିବି ଯତ୍ନରେ । ସେ ବଡ଼ ହେବ, ମଣିଷ ହେବ । ଆମ ସ୍ୱପ୍ନ ସାକାର ହେବ । ତାକୁ ଦୁନିଆରେ ଥାଇ ଦିଲା ପରେ ମୋ'କାମ ସରିବ । ତା'ପରେ ମୁଁ ଚାଲିଯିବି ତମ ପାଖକୁ । ଅପେକ୍ଷା କରିଥିବ । ଏଥର ଯେମିତି ଆଉ ନଠକ ।"

ପୁଣି ମନକୁ ସ୍ୱଗତୋକ୍ତି କରି ପଚାରେ, "ସତ କହିଲ, ତମେ ମୋତେ କାହିଁକି ଏମିତି ଠକିଲ ? ଏମିତି ତ ନ ଥିଲ ଆଗରୁ, ଜୀବନ କେବେ ଡରଉ ନ ଥିଲା ତମକୁ । କେହି କାହାକୁ ଛାଡ଼ି ରହିବାନି କେବେ, ଦେହ ଛୁଇଁ କଥା ଦେଇଥିଲେ । ମୁଁ ଅଛି... ତମେ କିନ୍ତୁ ସ୍ୱାର୍ଥପର ଭଳି ଚାଲିଗଲ ଏକା ଏକା । ତମେ ସିନା ଏକୁଟିଆ ଲଢ଼ି ପାରିଲନି ଦୁନିଆ ସଂଗେ, ଦୁହେଁତ ଲଢ଼ି ପାରିଥାନ୍ତେ ଏକାଠି । ଏମିତି କାହିଁକି କଲ ମିହିର ? ଭାବିଲନି ଥରେ ମୋ କଥା ? ଆଉ ମୁଁ ବି... କେବେ କ'ଣ କଳ୍ପନା କରିଥିଲି, ତମ ବିନା ବଂଚି ପାରିବି ବୋଲି ? ହେଲେ ଦେଖ, ବିଧିତ ବିଡ଼ମ୍ବନା, ମୋତେ ବଂଚିବାକୁ ହେଉଛି, ମୁଁ ବଂଚିବି ମଧ, କାହିଁକି ଜାଣ..., 'ଜାଣେ ମୁଁ...' ।

ଚମକି ଉଠେ ମେଘା, ମିହିରର କଣ୍ଠ ସ୍ୱର ଭଳି । ଚାହେଁ ଚାରିଆଡ଼କୁ, ଆଖି ଖୋଳେ, ମନର ଭାବନା ପ୍ରତିଫଳିତ ହୁଏ ରୂପେଇର ଚହଲା ଢେଉରେ । ତାକୁ ଲାଗେ, ଗୋଟିଏ ନୁହେଁ କୋଟିଏ ହେଇଯାଇଛି ମିହିର ବହୁଧା ବିଭକ୍ତ । ସହସ୍ରବାହୁ ପ୍ରସାରି ଚକା ଭଉଁରି ଖେଳୁଛି ତା'ଚାରିପଟେ । ଛୁଇଁଲା ବେଳକୁ ହଜିଯାଉଛି କୁଆଡ଼େ । ପୁଣି ଉଭାରି ଆସୁଛି ଢେଉରେ ଏଇ ଛୁଁ ଛୁକା ଖେଳରେ ମଗ୍ନ ଥାଇ ପଚାରେ ମେଘା, 'କଣ ଜାଣିଛ କହିଲନି ତ' "ତମ କଥାବି, ତା' କଥାବି, ମନେ ନାହିଁ ତମର ? ମନେ ନ ଥିବ କିମିତି, ସେଇଥିପାଇଁ ତ ଅଟକି ରହିଛି ଏଠି ।" "ମୁଁ କିନ୍ତୁ ପାରୁନି ମେଘା, ଏକୁଟିଆ ଭାରି କଷ୍ଟ ହେଉଛି ।" "ମେଘା ମନ ବିକଳ ହୁଏ, ଆହାପଣ ଛଟପଟ କରେ । ମନେହୁଏ, କୋଳରେ ପୁରେଇ ମା' ଭଳି ଆଉଁଶି ଦିଅନ୍ତା ।

କୁହନ୍ତା, ଏମିତି ଅଥୟ ହେଲେ ହେବ, ଦେଖୁଛ ତ ମୋ' କାମ ସରିନି... ହାତ ବଢ଼ାଏ ଛୁଇଁବାକୁ । ଖସିଯାଏ ହାତ ମିଛ ଭାବନାରୁ । ଚମକି ଉଠେ ନିଜ ଭିତରେ । ଖାଲି ହାତ ଫୁଙ୍ଗୁଳା, ସବୁ ଖାଲି ଶୂନ୍ୟ । କୋହ ଉଠେ ପେଟ ଭିତରୁ । ପେଟ ଭିତରେ ଥାଇ ଜୀବନ୍ତ ସତାଟି ଚହଲି ଉଠି ଜଣେଇ ଦିଏ "ମୁଁ ପରା ଆସୁଛି ତୋ' ଲୁହ ପୋଛିବାକୁ, କାନ୍ଦୁଛୁ କାହିଁକି ?" ପ୍ରକୃତିସ୍ଥ ହୁଏ ମେଘମାଳା, ପାଣିରୁ ଉଠି ଆସେ ଉପରକୁ । ଆସେ ନିଜ ବାସ୍ତବ ଜୀବନ ଭିତରକୁ ।

ଦିନକର ଶୀତ ସକାଳରେ.... ଏନ୍ତୁଡ଼ି ଘରର ଅଂଧାର ଚିରି ଓହ୍ଲେଇ ଆସେ ନୂଆଁ ଜୀବନଟିଏ ଚୁପ୍‌ଚାପ୍ । ସେ ଆସିଲା ବେଳେ ଶୁଭଶଂଖ ବାଜେନା କି ଆନନ୍ଦର ହରିଲୁଟି ହୁଏନା । ଷଠି ବୁଢ଼ୀ ଘରେ ଦୀପ ଜାଳେନା କି ପଞ୍ଚୁଆତି ଖାଏନା । ହେଲେ ମେଘମାଳା ଜୀବନରେ ଚହଳ ପଡ଼େ, କୁନି ପୁଅର କୁଆଁ କୁଆଁ ଡାକରେ ଉଛୁଳି ଉଠେ ମାତୃତ୍ୱ । ନିଶୂନ୍ ନିଛାଟିଆ ଜୀବନଟା ଏଣିକି ଅର୍ଥମୟ ଲାଗେ । ଯେତେ ସବୁ ନିନ୍ଦା ଅପବାଦକୁ ପଣତରେ ବାନ୍ଧି ଧୀମନ୍ତ ଆଡ଼କୁ ମୁହଁ କରି ସୂର୍ଯ୍ୟଙ୍କୁ ଦେଖାଏ, ଆଲୋକ ଦେଖାଏ, ଚିହ୍ନାଏ ମାଟିକୁ, ଆକାଶକୁ, ଫୁଲ ଆଉ ଜହ୍ନ ମାମୁଁକୁ । ଦିନେ ଦିନେ ଉଦାସିଆ ଅପରାହ୍ନରେ ଥୁଣ୍ଟା ପଲାଶ ମୂଳକୁ ଯାଇ ଅନେକ ସମୟ ଧରି କଥା କୁହେ ମିହିର ସହିତ । କୋଳରେ ଥାଏ ବକଟେ ନାମକୁ ଧୀମନ୍ତ- "ଦେଖ ମିହିର ତମ ଧୀମନ୍ତକୁ, ଠିକ୍ ତମରି ଆଖି ଆଉ ନାକ, ଅନୁଭବ କର ତାକୁ ତମ ବିମୂର୍ତ୍ତ ସ୍ପର୍ଶରେ... ।"

ଘର ଭିତରେ ମେଘା ଆଉ ପୁଅକୁ ନ ଦେଖି ବ୍ୟସ୍ତ ହେଇ ଉଠନ୍ତି କୁଂଜଲତା । ଭାଇମାନେ ବ୍ୟସ୍ତ ହେଇ ଖୋଜିବାକୁ ଯାଇ ଦେଖନ୍ତି, ମେଘା ବସିଛି ପଲାଶ ଗଛ ମୂଳେ ପୁଅକୁ ନେଇ । ଧାଇଁଯାଇ ଆକଟ କରନ୍ତି- କେଡ଼େ ଅଭିଲା ମଣିଷଟାଏ ତୁ; କଅଁଳ ପିଲାଟାକୁ ଏମିତି ଗଛମୂଳକୁ ଆଣନ୍ତି ? ବୋଉ କେତେ ବ୍ୟସ୍ତ ହେଉଛି । ଅଥଚ ତୁ; କେତେବେଳେ ପଲାଶ ମୂଳରେ ତ କେବେ କୃଷ୍ଣଚୂଡ଼ା ମୂଳରେ । ହସିଦିଏ ମେଘା ବୋଉର ଅଜଣା ଆଶଙ୍କାରେ । ମନେ ମନେ କୁହେ, ତା' ବାପା ପରା ଏଇଠି, କ'ଣ ହେବ ତା'ର, ତମେମାନେ ମିଛରେ ଡରୁଛ ।

ଥୁଣ୍ଟା ପଲାଶ ଗଛର ଗଣ୍ଡିରେ କ୍ରମଶଃ ଶାଖା ଉଦ୍‌ଗମ ହୁଏ । ପତ୍ର କଅଁଳେ, ଧୀରେ ଧୀରେ ସମୟ ସାଥିରେ ଗାଢ଼ ଧରେ ପତ୍ରର ସବୁଜିମା । ଛନଛନ ଦିଶେ ପଲାଶ ଗଛ । ଧୀମନ୍ତ ବଡ଼ ହୁଏ, ଚାଲେ, କଥା କୁହେ । ମା' ଡାକରେ ତା'ର ପେଟ ପୁରିଯାଏ । ସବୁ ଦୁଃଖ ଯନ୍ତ୍ରଣାକୁ ଭୁଲିଯାଏ ମେଘମାଳା । ଧୀମନ୍ତର କଅଁଳ ଓଠରେ ବାପା ଡାକ ଶୁଣି ତା' ମନ ବିକଳ ହୁଏ । ଧୀମନ୍ତ୍ ବାପାକୁ ଖୋଜେ । ମେଘମାଳା ତା' ବାପା ଧରଣୀ ଶ୍ରୀଚନ୍ଦନଙ୍କ ଆଡ଼କୁ ଆଙ୍ଗୁଠି ଦେଖେଇ ଚିହ୍ନେଇ ଦିଏ ସିନା, ତା' ମନ ଧାଇଁଯାଏ କୃଷ୍ଣଚୂଡ଼ା ମୂଳକୁ ନିଛାଟିଆରେ କଥା କହିବାକୁ ମିହିର ସହିତ । କୃଷ୍ଣଚୂଡ଼ାର ଶାଖାରେ ଆଉଜି ଆଖି ବୁଜି ଚୁପ୍ ଚୁପ୍ ରୁହେ । ତମ ଧୀମନ୍ତ ବଡ଼ ହେଇଗଲାଣି । କଥା କହୁଛି । ବାପା ଡାକରେ ଅଥୟ କରି ପକାଉଛି ମୋ' ବାପାଙ୍କୁ ଆଣିଦିଅ ବୋଲି । ଏବେ ତ ସେ ପିଲା ହୋଇଛି । ଆଉ ଟିକିଏ ବଡ଼ ହେଲେ, ସେ ବୁଝିପାରିବ ସବୁ ।

ପଚାରିବ ତା' ବାପା କଥା । କେଡ଼େ ହତଭାଗାଟା । କ'ଣ ଉତ୍ତର ଦେବି ମୁଁ ତା' କଅଁଳ ମନକୁ ବୁଝେଇଲା ଭଳି ? ସେ ବା କେମିତି ବୁଝିବ ଆମ ମନର ଅବସ୍ଥା, ସାମାଜିକ ବ୍ୟବସ୍ଥା ସଂପର୍କରେ । ସେ କିନ୍ତୁ ପଚାରିବ ମିହିର ।

ଦଲକାଏ ପବନ କୃଷ୍ଣଚୂଡ଼ାକୁ କେନ୍ଦ୍ରେଇ ବହିଆସି ମେଘମାଳାର ଦେହ ମନକୁ ଥଣ୍ଡା କରିଦିଏ । ଉଡ଼ିଲା ପଣତରେ ସତେ ଯେମିତି ତା' ଆଖିର ଲୁହକୁ ପୋଛି ଦେଇ ମିହିର କୁହେ– "ଏତେ ଉଣାପଣ କାହିଁକି ? ଆମେ ତ କେବେ ସତ କହିବାକୁ ପଛେଇନେ, ତମେ ତାକୁ ସତ ହିଁ କହିବ, ସେ ମୋ' ପୁଅ –ବୁଝିବ ଠିକ୍ ।' ଝରିପଡ଼େ କୃଷ୍ଣଚୂଡ଼ାର ଝରା ପାଖୁଡ଼ା କେତୋଟି ପବନ ସହିତ ମିଶି ସାଙ୍କେତିକ ଭାବେ । ସୂଚେଇ ଦିଏ ମିହିରର ସତ୍ତା, 'ମୁଁ ଅଛି ମେଘା ଏଇଠି । ଏଇ କୃଷ୍ଣଚୂଡ଼ାର ରଂଗରେ, ପାଖୁଡ଼ାରେ, ସବୁଜିମାରେ ପବନରେ ମିଶି ମୁଁ ଅଛି ।' ମେଘାକୁ ଲାଗେ ଇଏ ଗଛ ନୁହେଁ, ମଣିଷ, ତା' ମିହିର, ଅନୁଭବରେ ଗ୍ରହଣ କରେ । ବର୍ଷକୁ ବର୍ଷ କୃଷ୍ଣଚୂଡ଼ା ପୁଷ୍ପବନ୍ତ ହୁଏ ।

ମା'ର ପଣତ ଛାଡ଼ି ଧୀମନ୍ତ ପାଠ ପଢ଼ିବାକୁ ସ୍କୁଲରେ ଦାଖଲ ହୁଏ । ବାପର ପରିଚୟ ଦେବାକୁ ଯାଇ ସ୍କୁଲ ରେଜିଷ୍ଟରରେ ଲେଖିଦିଏ ମେଘା ମିହିର ଚଂପତିରାୟର ନାଁ, ପୁଣି ସୃଷ୍ଟି ହୁଏ ଛୋଟକାଟର ଝଡ଼ଟିଏ ସେଇ ସମୁଦ୍ର କୂଳିଆ ଗାଁଟିରେ । ସାମ୍ନା କରେ ମେଘା ଝଡ଼କୁ ଏଥର ବି ସାହସର ସହିତ । ସ୍କୁଲ ଫେରନ୍ତି, କୃଷ୍ଣଚୂଡ଼ା ମୂଳେ ମୁହୂର୍ତ୍ତେ ବସି ନିରୋଳାରେ ମିହିର ସହିତ ଦୁଃଖ ସୁଖ ହୁଏ । । 'କହୁଥିଲି ନା ଝଡ଼ ଉଠିବ, ଉଠିଲା ଦେଖିଲ ତ । ମୁଁ କିନ୍ତୁ ହାରିନି ମିହିର, ଉଚିତ୍ ଜବାବ ଦେଇଛି । ଭାବୁଛି, ବାପାଙ୍କ ଉପରେ ଆଉ ବୋଝ ହେଇ ରହିବିନି । କୋଉଠି ଖଣ୍ଡେ ଚାକିରି କରିବି, ପାଖ ଗାଁର ସ୍କୁଲରେ, ଶୁଣୁଛି ଖାଲିଅଛି କାଗା । କହିଥିଲି ବାପାଙ୍କୁ ଯେ, ହେଲେ ବୋଉ ତ ମୋଟେ ରାଜି ହେଉନି । ଭାଇଙ୍କର ବି ମନ ନାହିଁ । ସେମାନଙ୍କୁ ଆଡ଼େଇ କିଛି ନିଷ୍ପତ୍ତି ନେବାକୁ ମୁଁ ସାହସ କରି ପାରୁନି ମିହିର । ତମେ କ'ଣ କହୁଛ, ମୁଁ ଠିକ୍ କରୁଛି ନା ?... ଧୀମନ୍ତକୁ ସ୍କୁଲରୁ ଆଣିବା ବାଟରେ ମଝିରେ ମଝିରେ ଅଟକି ଯାଏ ମେଘା କୃଷ୍ଣଚୂଡ଼ା ମୂଳରେ । ପୁଅକୁ ଖେଳିବାକୁ ଛାଡ଼ି ଦେଇ ମେଘା ମିହିରକୁ ଦେଖାଏ; ଦେଖୁନ, ତମ ପୁଅ ଠିକ୍ ତମରି ଭଳି ଦିଶୁଛି । ଭଲ ବି ପଢୁଛି, ହେଲେ ସେ ପଚାରୁଛି ତା' ବାପା କଥା କ'ଣ କହିବି କୁହ ? ଆଉ ଦିନେ ସ୍କୁଲ ଫେରନ୍ତି କୃଷ୍ଣଚୂଡ଼ା ମୂଳରେ ବସି କୁହେ ମେଘା – 'ଆଉ ମୁଁ ପାରିଲିନି, ମିହିର, ଆଜି ତାକୁ ତମ ଫଟୋକୁ ଦେଖେଇଲି । ଚିହ୍ନେଇ ଦେଲି ବି, 'ଇଏ ତୋ' ବାପା । ଜାଣିଛ ମିହିର, ଖୁସିରେ ଜାକି ଧରିଲା ଛାତିରେ ତମକୁ । ନାଚିଗଲା ବୁହେ, କହିଲା କେଉଁଠି ଅଛନ୍ତି ସେ, ମୋତେ ନେଇଚାଲ ତାଙ୍କ ପାଖକୁ । ମୁଁ କିନ୍ତୁ ମିଛ କହିପାରିଲି ନାହିଁ । ହୁଏତ, ଆଜି ସଂଜ ଆକାଶରେ ସେ ଖୋଜିବ ତମକୁ ତାରାମାନଙ୍କ ମେଳରେ । ତା' ମନଟା ମଉଳି ଯାଇଛି, ଠିକ୍ ଏଇ ଶୁଖିଲା କୃଷ୍ଣଚୂଡ଼ାର ପାଖୁଡ଼ା ଭଳି । ମୁଁ

ଆଉ କ'ଣ କରିଥାନ୍ତି ?' ହଠାତ୍ କୃଷ୍ଣଚୂଡ଼ାର ପତ୍ରମାନେ ସ୍ଥିର ହୋଇଯାନ୍ତି ମୁହୂର୍ତ୍ତେ, ଥମିଯାଏ ପବନ-ଗୁମ୍‌ସୁମ୍ ଲାଗେ ଘରିପାଖ ମେଘାର । ମେଘା ବୁଝେ ମିହିର ମନ ବି ମଉଳି ଯାଇଛି ।

... ମେଘମାଳା ଭାବେ ନିକାଞ୍ଚନରେ, ସତରେ ବି ସେ କ'ଣ କରିଥାନ୍ତା । ସେ କ'ଣ ଜାଣିଥିଲା, ଭାଗ୍ୟ ତାକୁ ଏହି ପରିସ୍ଥିତିରେ ଆଣି ଠିଆ କରିବ, ଆଉ ସେ ଚଉଛକିରେ ଠିଆ ହୋଇ ଜାଣି ପାରୁନଥିବ କୁଆଡ଼େ ଯିବ କ'ଣ କରିବ । ସେ ବି କ'ଣ ଚାହିଁଥିଲା ପରିସ୍ଥିତି ଏମିତି ହେଉ, ବାପା ଭାଇଙ୍କ ମୁଣ୍ଡ ତଳକୁ ହେଇଯାଉ, ବିପର୍ଯ୍ୟସ୍ତ ହେଇଯାଉ ତା' ଜୀବନ । ଆଉ ଦଶ ଜଣ ତାକୁ ଆଙ୍ଗୁଠି ଦେଖାନ୍ତୁ । ପ୍ରତିଟି ପଦକ୍ଷେପରେ ତାକୁ ଝଡ଼ ଝଂଜାର ସାମ୍ନା କରିବାକୁ ପଡୁ, ନା, ସେ ଚାହିଁନଥିଲା ମୋଟେ । ସେ ତ ସୁନା ଝିଅ ଥିଲା, ସୁଧୀର ସରଳ ଜୀବନଟିଏ ହିଁ ଜିଇବାକୁ ଚାହିଁଥିଲା । କିନ୍ତୁ ଭାଗ୍ୟ କୋଉଠି ଆଣି ଛାଡ଼ିଦେଲା । ପରିସ୍ଥିତି ଜଟିଳରୁ ଜଟିଳ ହିଁ ହେଲା । ସବୁକିଛି ଚାଲିଗଲା ତା' ନିୟନ୍ତ୍ରଣ ବାହାରକୁ । ସେ ଯେମିତି ସୁଅମୁହଁର ପତର । ପରିସ୍ଥିତି ହାତରେ ଆତ୍ମସମର୍ପଣ କରିବା ବ୍ୟତୀତ ଆଉ କି ଉପାୟ ଥିଲା ତାର ? ଯାହା ଚାହିଁଥିଲା ତା' ପାଇଲାନି; ଯାହା ପାଇଲା, ତାହା ସେ ଚାହିଁ ନଥିଲା ସେମିତି ହେଉ ।

ଏଇ ଧୀମନ୍ତ... ଯଦିଓ ତା' ଜୀବନର ଏକାନ୍ତ ଅବଲମ୍ବନ-ତୃଷ୍ଣାର ଜଳ-ଆଖିର ତାରା, ତଥାପି ଏଇମିତି ଅଶାସ୍ତ୍ରୀୟ ଢଙ୍ଗରେ, ଅଣଆନୁଷ୍ଠାନିକ ଭାବେ, ସମସ୍ତଙ୍କ ଅଗୋଚରରେ ତାକୁ ପୃଥିବୀକୁ ଡାକି ଆଣିବା ତାର ଉଚିତ ନଥିଲା । ଜୀବନ ଥିଲା ପର୍ଯ୍ୟନ୍ତ ଏଇ ସମସ୍ୟାର ସମ୍ମୁଖୀନ ତାକୁ ହେବାକୁ ହେବ । ତା' ଭୁଲ ପାଇଁ ଧୀମନ୍ତକୁ ମଧ୍ୟ ଅପମାନ, ଆଙ୍ଗୁଠି ଦେଖା ସହିବାକୁ ପଡ଼ିବ ଜୀବନସାରା । ଅନେକ କଥା ଶୁଣିବାକୁ ପଡ଼ିବ, ଯାର ଉତ୍ତର ତା' ପାଖରେ ନ ଥିବ । ସେ କ'ଣ ଏଥିପାଇଁ କ୍ଷମା କରି ପାରିବ ତା' ବାପ ମା'ଙ୍କୁ ? ଅପରାଧବୋଧର ଭାରରେ ନଇଁଯାଏ ତାର ଚେତନା । ନିଜକୁ ଦୋଷୀ ଦୋଷୀ ଲାଗେ । ସେ କେବେବି ଚାହେଁନା ଧୀମନ୍ତକୁ କେହି ଛୋଟ ନଜରରେ ଦେଖୁ, ତା' ଭିତରେ କୌଣସି ପ୍ରକାରର ଊଣାପଣ ସୃଷ୍ଟି ହେଉ । ହେଲେ କ'ଣ ସେ କରିପାରିବ, ପରିସ୍ଥିତି ତା ହାତ ମୁଠାରେ ନାହିଁ । ତା' ମୁହଁର ବିଷଣ୍ଣତା, ମନର ଭାବାନ୍ତର ବୋଉ କୁଂଜଲତା ଆଖିରୁ ଲୁଚି ରହେନା । ସେ, ଖୋଜି ଖୋଜି ପଚାରନ୍ତି କ'ଣ ହେଇଛି ମା' ତୋର, କପାଳରେ ଚିନ୍ତାର ରେଖା କାହିଁକି ? ଧୀମନ୍ତ ବି ପଚାରେ, 'ବୋଉ ଆଜିକାଲି ତୁ ଏମିତି ଗୁମ୍‌ସୁମ୍ ହେଇ କଣ ଏତେ ଭାବୁଛୁ ? କିଛି କହି ପାରେନା, ଉତ୍ତର ଦେଇ ପାରେନା କାହାକୁ । ବାହାନା ଦେଖେଇ କଥା ବୁଲାଏ, ଭାଉଜମାନଙ୍କ ସହିତ କାମରେ ହାତ ମିଶାଏ । ମନକୁ ଲୁଚେଇବାକୁ ଚେଷ୍ଟା କରେ । ହେଲେ ପାରେନା । ସମୟ ମାଡ଼ିପଡ଼େ-ନିରୋଳା ହେଲେ ଭାବେ... ଅନେକ କଥା ମନକୁ ଆସେ । ସଂସାରଟା କାହିଁକି କେଜାଣି କୁହୁଳିଆ ଦିଶେ । ବିଷାଦ ଲାଗେ ।

ଧୀମନ୍ତ ବଡ଼ ହେଇଛି, ଆହୁରି ବଡ଼ ହେବ । ତା' ଦାୟିତ୍ୱ କମି କମି ଆସୁଛି ଏଣିକି । ନିଜକୁ ନିଜେ ଅନେକ ସମ୍ଭାଳି ପାରିଲାଣି ଧୀମନ୍ତ । ହାତରେ କାମ ନାହିଁ କିଛି । ଘରକାମ ସମ୍ଭାଳିବାକୁ ତ ବୋଉ ଅଛି ଭାଉଜ ଅଛନ୍ତି । କ'ଣ କରିବ ସେ । ଭାରି ଏକୁଟିଆ ଲାଗେ ନିଜକୁ । ଅନେକ ସମୟରେ ଧୀମନ୍ତ ତା' ପାଠପଢ଼ା, ଖେଳ, ସ୍କୁଲ ଭିତରେ ବୁଡ଼ିରହେ । ତା' ପାଖ ହିଁ ମାଡ଼େନା, ତମାମ ଦିନ ସେ ଏକା । ଉଦାସ ହୋଇଯାଏ ତା'ମନ । କୃଷ୍ଣଚୂଡ଼ାର ଶାଖାରେ ବାହୁଛନ୍ତି ପରଭରେ; କୁହ ମିହିର ମୁଁ ଏବେ କ'ଣ କରିବି ? ଲାଗୁଛି, ମୋ' ଦାୟିତ୍ୱ ସରିଆସିଲାଣି । ମନ ଆଉ ଲାଗୁନି ସଂସାରରେ । ମୋ' ଦେହ ମନ ଚେତନାର ଘରିପଟେ ଯେମିତି ମେଘୁଆ ମାଡ଼ି ଯାଉଛି ଶିଉଳି ଭଳି । କେମିତି ବଂଚିବି, ତମେ ମନେପଡୁଛ ଖୁବ୍ ।

ଆଚ୍ଛା ମିହିର, ଗୋଟିଏ କଥା କହିବି ବୋଲି ଭାବୁଛି ଅନେକ ଦିନ ହେଲା; ତମେ ହସିବନି ତ ? ଏଇ କେତେଦିନ ହେବ ଆମ ଗାଁ ରାଧେଶ୍ୟାମ' ମନ୍ଦିରକୁ ଜଣେ ସାଧୁ ମହାତ୍ମା ଆସିଛନ୍ତି । ନିତି ପ୍ରବଚନ ହେଉଛି । ଅନେକ ଯାଉଛନ୍ତି ଶୁଣିବା ପାଇଁ । ବୋଉ ବି ଯାଇଥିଲା ଭାନୁ ଖୁଡ଼ୀଙ୍କ ସାଙ୍ଗରେ ଦିନେ । ତମେ ଜାଣିଛ, ଏସବୁ ଧର୍ମୀୟ ରୀତି ନୀତି ପ୍ରତି ମୋର ଆକର୍ଷଣ ନାହିଁକି ଆସ୍ଥା ନାହିଁ । ଏବେ କିନ୍ତୁ କେମିତି ଗୋଟାଏ ପ୍ରକାରର ବିରାଗ ମୋ ଚେତନାକୁ ଆବୋରି ବସିଛି । ଅଶାନ୍ତ ଲାଗୁଛି । ଅସ୍ଥିରତାର ଭଉଁରି ଭିତରେ ଆକ୍ତାମାକ୍ତା ହେଇଯାଉଛି ମୁଁ । ଗତ ଏକାଦଶୀ ଦିନ ଯାଇଥିଲି ମନ୍ଦିରକୁ । ପ୍ରବଚନ ଦେଉଥିଲେ ସ୍ୱାମୀଜୀ । ମୋର କୌତୂହଳ ହେଲା, ବସିଗଲି ଘଡ଼ିଏ । ତମେ ବିଶ୍ୱାସ କରିବନି ମିହିର, ସତେ ଯେମିତି କିଏ ସମ୍ମୋହିତ କରିଦେଲା ମୋତେ । ଶାନ୍ତି ଲାଗିଲା । ମୋ' ଭିତରେ ସୃଷ୍ଟି ହେଇଥିବା ଉଦ୍‌ବେଳନ ହଠାତ୍ ସ୍ଥିର ହେଇଗଲା ଯେମିତି । ମୋ' ପ୍ରଶ୍ନର ଉତ୍ତର ସତେ ଯେମିତି ମୁଁ ପାଇଗଲି । କେଡ଼େ ସୁନ୍ଦର କଥା । କେତେ ପ୍ରକାର ଉଦାହରଣ ଦେଇ ବୁଝାଇ ଦେଇଛନ୍ତି, ମନ ପ୍ରାଣକୁ ଛୁଇଁଲା ଭଳି ।

ତୁମ ବିନା-ର-ଏଇ ଲକ୍ଷ୍ମୀଛଡ଼ା ଜୀବନ କ୍ରମଶଃ ଆଶ୍ୱସ୍ତ ହେଉଛି ସେଇ ପ୍ରଶାନ୍ତଚେତା ସନ୍ନ୍ୟାସୀଙ୍କ ଦିବ୍ୟ ବାଣୀରେ । ବିଶ୍ୱାସ ଆସୁଛି ନିଜ ଉପରେ ମିହିର । ତେଣୁ ଏଇ କିଛି ଦିନ ହେଲା ନିତି ଯାଉଛି ମନ୍ଦିର ବେଢ଼ାକୁ ତାଙ୍କ ପ୍ରବଚନର ଧାରା ମଧ୍ୟ ଅନେକ ଭିନ୍ନ ଅନ୍ୟମାନଙ୍କ ଠାରୁ । କଥାରେ କଥାରେ ସେ ଆର୍ତ୍ତ ମଣିଷକୁ ଅନ୍ୟ ଜଗତକୁ ନେଇଁ ଯାଉଛନ୍ତି । ତାଙ୍କ କଥା କହିବା ଢଙ୍ଗରେ ଅଦ୍‌ଭୁତ ଶକ୍ତି ଅଛି । ଦୃଷ୍ଟିରେ ଅଛି ଦିବ୍ୟ ଭାବ । ଚେତନା ଉର୍ଜ୍ଜସ୍ୱଳ । ମୋହଗ୍ରସ୍ତ ମଣିଷକୁ ଦିବ୍ୟ ଚେତନାରେ ଅବଗାହିତ କରି, ଜୀବନ ବଂଚିବାର କଳା ଶିଖାଉଛନ୍ତି ସେ । ମୋତେ ଚକିତ କଲା ତାଙ୍କର ଚିନ୍ତାଧାରା । ତାଙ୍କର ଦୃଷ୍ଟିରେ ଜୀବନ ବଂଚିବାର କଳା ହିଁ ମଣିଷକୁ ସ୍ୱତନ୍ତ୍ର ପରିଚୟ ଦିଏ । ସେଠି ବୈରାଗ୍ୟର ତୁଚ୍ଛତା ନାହିଁ, ବରଂ ଜୀବନକୁ ସକାରାତ୍ମକ ଭଙ୍ଗୀରେ ଗ୍ରହଣ କଲେ ବଂଚିବାଟା ସହଜ ହୁଏ, ତା'ସହିତ ସହଜ ହୁଏ ଈଶ୍ୱର ଉପଲବ୍ଧି ।

ସ୍ୱୟଂ ଈଶ୍ୱର ଆନନ୍ଦର ପ୍ରତୀକ । ସେ ସଚ୍ଚିଦାନନ୍ଦ । ସେଇ ଆନନ୍ଦ ମାର୍ଗରେ ହିଁ ତାଙ୍କୁ ଲାଭ କରାଯାଇ ପାରେ । ସବୁ ତ ତାଙ୍କରି ଦେହ । ସବୁଠି, ସବୁରି ଭିତରେ ସେ ଅଛନ୍ତି ।

ନିତି ଭିନ୍ନ ଭିନ୍ନ ବିଷୟ, ଭିନ୍ନ ଭିନ୍ନ ତର୍ଜମା । ଜୀବନ ଦର୍ଶନର ଅନୁଦ୍‌ଘାଟିତ ଦିଗ ସବୁ ଆଲୋଚନାର ପରିଧି ଭିତରେ ଖୋଲି ହେଇ ଯାଉଛି । ମନ୍ତ୍ରମୁଗ୍ଧ ଭଳି ମୁଁ ଆଜିକାଲି ସବୁଦିନ ଚାଲିଯାଉଛି ତାଙ୍କ କଥା ଶୁଣିବାକୁ । ମୋତେ ହାଲୁକା ଲାଗୁଛି । ମୋ ଭିତରର ଅଂଧାର ପୋଛି ହେଇ ଯାଉଛି ମିହିର । ହେଲେ କ'ଣ ହେବ କହିଲ, ବାପା ବୋଉଙ୍କର ମୋଟେ ଇଚ୍ଛା ନାହିଁ ମୁଁ ସେଠିକି ଯାଏ । ଜାଣେନା, କ'ଣ ତାଙ୍କର ଉଦ୍ଦେଶ୍ୟ । ଠିକିରି କରିବାକୁ ତ ଛାଡ଼ିଲେନି । ଏବେବି ସେଇ 'ନାହିଁ' । କାହା ମନର ଭାବନା ଭିତରକୁ ମୁଁ କିମିତି ପଶି ପାରିବି ? ଘର ଭିତରେ କେତେ ମୁହଁମାଡ଼ି ପଡ଼ି ରହିବି ଯେ ! ଅବଶ୍ୟ ବୋଉ କାଲି କୁଟୁ କୁଟୁ ହେଇ କହିଲା, 'ଯିବାକୁ ମନ କରୁଛୁ ଯଦି ଯାଆ, ମନା କାହିଁକି କରିବି, ମନା କଲେ ବି ତୁ କୋଉ ରଖିବୁ ମୋ'କଥା ନା, ରଖିଛୁ କେବେ । କଥା ଶୁଣିଥିଲେ ଏତେ ସରି ହୁଅନ୍ତା କି ମଣିଷ..., ଅଭିମାନର ଗନ୍ତାଘର ଖୋଲି ହେଇଯାଏ ।

ମୁଁ ଜାଣିଥିଲି ତା'ର ଅନ୍ତରର କ୍ଷୋଭ ମୋ ବିପର୍ଯ୍ୟସ୍ତ ଜୀବନ ପାଇଁ । ହେବନି ବି କେମିତି, ସେ ତ ମା', ମୋ ସୁଖ ଦୁଃଖରେ ଷୋଳଅଣା ଭାଗୀ । କହିପାରୁନି କି ସହିପାରୁନି । ସମସ୍ତଙ୍କ ଆକ୍ଷେପ, ଟିପ୍ପଣୀ ଶୁଣିବା ଭିତରେ ତା' ସାମାଜିକ ମର୍ଯ୍ୟାଦାବୋଧ ଦୋହଲି ଯାଉଛି । ଅସୁଖ ଲାଗୁଛି । ତଥାପି କହି ପକେଇଲା, "ମୁଁ କ'ଣ କହୁଥିଲି କି ମା', ତୋର କ'ଣ ବୟସ ହେଇଛି ଏ ସବୁ ଧର୍ମ କର୍ମ ପାଇଁ । ଦୁଃସ୍ୱପ୍ନ ଭଳି କ'ଣ ଟିକିଏ ଘଟିଗଲା ଜୀବନରେ । ତୁ ସିନା ବାୟାଣୀ ଭଳି ମାଣ୍ଡେଇ ଧରିଛୁ ସେ ସବୁକୁ । କ'ଣ ବୁଝିବୁ ସେଇ ପ୍ରବଚନରୁ । କେତେ ଲୋକ ଯା'ଆସ କରୁଥିବେ । କାହା ବିଷୟ କିମିତି । କିଏ ପଦେ କହିଦେବ କ'ଣ ଭାବି, ସହିପାରିବୁନି ମା'- ସହି ପାରିବେନି ତୋ'ବାପା ଭାଇ ।"

ସତରେ ମିହିର, ମୋ' ବୋଉ ଖୁବ୍ ସରଳ, ସ୍ୱଚ୍ଛ । ଏବେବି ମୋତେ ପଣତ ଘୋଡ଼େଇ ରଖୁଛି । ମୁଁ ବୁଝିପାରିଲି ତା' କଥାର ଇଙ୍ଗିତ । ହେଲେ, ମୁଁ କ'ଣ ଛୋଟ ପିଲା ନା କଞ୍ଚା ବୟସର କିଶୋରୀ ? ମୁଁ ପରା ଧୀମନ୍ତର ମା' । ନିଜକୁ କ'ଣ ଡରିବି, ମୋର ବିଷୟ ନାହିଁ ? ତମେ କ'ଣ କହୁଛ ? ପକ୍ଷୀଟିଏ ଉଡ଼ିଗଲା ଡେଣା ଛାଟି ଦେଇ କୃଷ୍ଣଚୂଡ଼ାର ଶାଖାରୁ । ଝଡ଼ିପଡ଼ିଲା କେଇଟି ପତ୍ର, ଉପରକୁ ଚାହିଁଲା ମେଘା । ସବୁଜ ପତ୍ରର ଗହଳି ଭିତରୁ କଳିକାମାନେ ମୁଣ୍ଡ ଟେକୁଛନ୍ତି । ଅନେକ ଅନେକ ସ୍ତବକରେ ଶାଖା ପ୍ରଶାଖା ପୂରି ଉଠିଛି । କିଛିଦିନ ପରେ ଫୁଲ ଫୁଟିବ ଲାଲ ଲାଲ ହେଇ । ଜୀବନର ସୂଚନା, ଆଖିରେ ସ୍ୱପ୍ନ ବୁଣିଦେବ । କାମନାର ଢେଉ ଉଲ୍ଲସି ଉଠିବ ସବୁଠି ।

ମେଘା ଭାବିଲା, ଏବେ କ'ଣ କୃଷ୍ଣଚୂଡ଼ାର ଋତୁ ଆସିଲାଣି ଫୁଲବନ୍ତୀ ହେବାକୁ ! କେଜାଣି, ଏଇ କେତେ ବର୍ଷ ହେଲା ସେ ତ ମୋଟେ ଲକ୍ଷ୍ୟ କରିନି ତା ଫୁଲଫୁଟା ବେଳକୁ ।

ବିଶେଷ କରି ମିହିର ଗଲାଠୁ । ଆଖିରୁ ନିଦ ହଜିଯିବା ପରେ, ସ୍ୱପ୍ନ କଥା ତ ସେ ଭୁଲି ଯାଇଥିଲା । ଧୀମନ୍ତ ଛଡ଼ା ଆଉ କିଛି ନ ଥିଲା ତା' ସ୍ୱପ୍ନ ଜଗତରେ । ଅଥଚ ଆଜି କାହିଁକି ହଠାତ୍ ମନେ ପଡ଼ିଲା ଏଇ ସ୍ୱପ୍ନ କଥା କେଜାଣି ।

ସ୍ୱାମୀଜୀ ଠିକ୍ କହୁଥିଲେ ଦେହ ସହିତ ସମସ୍ତେ ଅଛନ୍ତି ଯୋଡ଼ି ହୋଇ । ସମୟର ଲୁଚକାଳି ଭିତରେ କିଏ କେତେବେଳେ ମୁହଁ ଲୁଚଉଛି ତ, କିଏ ମୁହଁ ଦେଖେଇ କହୁଛି 'ମୁଁ ଅଛି' । ତାକୁ ଚିନ୍ତା ଚେତେନାର ଉତ୍ତରଣ ଦେଇ ଅତିକ୍ରମିବାକୁ ହେବ । ମୋହମୁକ୍ତି ନହେଲେ ପରମ ସହିତ ଭେଟ କାହିଁ ? ସତ, ହେଲେ, ମୋହ କଟିଲେ ତ !

ମେଘମାଳାର ଭାବନା କେତେବେଳେ ଜୀବନ ଆଡ଼କୁ ତ କେତେବେଳେ ଦର୍ଶନର ଗମ୍ଭୀରା ଭିତରକୁ ମୁହାଁଇ ଦୋହଲି ଯାଉଥିଲା । ଅନେକ ଦୂରରୁ ଶୁଭୁଥିଲା ସମୁଦ୍ରର ଗୁରୁ ଗର୍ଜନ । ଆନ୍ଦୋଳିତ ହେଉଥିଲା ସମୁଦ୍ର । ଆନ୍ଦୋଳିତ ହେଉଥିଲା ମେଘମାଳାର ଚେତନା । ଘର ଫେରନ୍ତି ଉଠୁଉଠୁ ମିହିର ଉଦ୍ଦେଶ୍ୟରେ ସ୍ୱଗତୋକ୍ତି କଲା- "ତମେ ଖୁବ୍ ସ୍ୱାର୍ଥପର ମିହିର । ସବୁ ଯନ୍ତ୍ରଣାରୁ ମୁକ୍ତ ହୋଇ, ମାନ ଅପମାନକୁ ପିଠି କରି ଉଡ଼ିଗଲ ପକ୍ଷୀ ଭଳି । ମୁଁ କିନ୍ତୁ ସଡୁଛି; ଜଳୁଛି ମୁଁ, ନା ମୁକ୍ତ କରିପାରୁଛି ନିଜକୁ ଏଇ ସଂସାର ମୋହରୁ, ନା ମୁକ୍ତି ମିଳୁଛି । ମୁଁ ଭାସୁଛି ମଝି ନଈରେ ।"

ରୂପେଇ ନଈରେ ଆହୁରି କେତେ ପାଣି ବହିଗଲା । ସେଇ ବର୍ଷମାନଙ୍କରେ କୃଷ୍ଣଚୂଡ଼ା ଫୁଲର ସମ୍ଭାରରେ ସଜେଇଲା ନିଜକୁ । ପଲାଶ ବି ଫୁଟିଲା ତା'ର ନୂଆ ଶାଖା ପ୍ରଶାଖାରେ । କାମନା ଜଳିଲା ହୁତୁହୁତୁ ହୋଇ । ସ୍ୱପ୍ନ ଦେଖେଇଲା ଦେହୀମାନଙ୍କୁ । ଧୀମନ୍ତ ପ୍ରସ୍ତୁତ କରୁଥିଲା ନିଜକୁ, ସ୍କୁଲର ଶେଷ ପରୀକ୍ଷା ଦେବା ପାଇଁ ଦିନରାତିକୁ ଏକାକାର କରି ଏବଂ ମେଘମାଳା ସଂସାରକୁ ପଛକରି ଗେରୁଆ ପିନ୍ଧିଲା । ବେକରେ ଲମ୍ବେଇଲା ତୁଳସୀ ମାଳି । ଦୀକ୍ଷା ନେଲା ସ୍ୱାମୀ ନିତ୍ୟାନନ୍ଦଙ୍କ ଠାରୁ । ଏଣିକି ଅଧିକାଂଶ ସମୟ ତା'ର କଟୁଥିଲା ମନ୍ଦିର ସଂଲଗ୍ନ ସନ୍ନ୍ୟାସ ଗୃହରେ, ଜପତପ, ଭଜନ ଜଣାଣ ଭିତରେ । ଯେଉଁ କେତେଜଣ ସଂସାର-ବିରାଗୀ ତରୁଣୀ ସ୍ୱାମୀଜୀଙ୍କରଠାରୁ ଦିବ୍ୟକୃପା ଲାଭ କରିଥିଲେ, ସେମାନଙ୍କ ଭିତରୁ ମେଘା ଥିଲା ଅନ୍ୟତମା । ତା' ପାଇଁ ସ୍ୱାମୀଜୀଙ୍କର ସ୍ୱତନ୍ତ୍ର ଆଶୀର୍ବାଦ ଝରି ପଡ଼ିଥିଲା । ସେଇଥର ମନ୍ଦିର ବେଢ଼ାରେ ନୂଆ କରି ତୁଳସୀ ସହିତ ଅନେକ କୃଷ୍ଣଚୂଡ଼ାର ଚାରାଗଛ ରୋପଣ କରିଥିଲେ ଦୀକ୍ଷାଧାରିଣୀ କୃଷ୍ଣପ୍ରିୟାମାନେ ।

ସେଇବର୍ଷ ରୂପେଇ ଛାତିରେ ବନ୍ୟା ବି ଆସିଥିଲା । ଫୁଲିଉଠିଲା ଗର୍ବିଣୀ ରୂପେଇ । କୂଳ ଲଂଘିଲା । ପିବର୍ଯ୍ୟସ୍ତ କରିଦେଲା ଆଖପାଖର ଜନଜୀବନକୁ । ପଥର ମୁଣ୍ଡିଆ ପାଖ ସେଇ ନିକାଞ୍ଚନ ଘାସ ମଇଦାନକୁ ଯିବା ପାଇଁ ରାସ୍ତାଟାରେ, ବାଲି ମାଡ଼ିଯାଇ ଗୁଡ଼ାଏ ଅନାବନା କଣ୍ଟା ଗଛକୁ ଜନ୍ମ ଦେଲା ଓ ଚାଲିବା ପାଇଁ ଅଯୋଗ୍ୟ କରିଦେଲା । ଫଳତଃ ମୁଣ୍ଡିଆ ଉପରେ ଥିବା ଏକଣା କୃଷ୍ଣଚୂଡ଼ା ଗଛଟା ହଠାତ୍ ନିଃସଙ୍ଗ ଥୁଣ୍ଟା ହୋଇଗଲା । ରାସ୍ତାର ମଝି ଛକରୁ ବା ଆଡ଼ିକିଆ

ମନ୍ଦିର ଗଳିକୁ ମୁହାଁଇଲା ବେଳକୁ ମେଘା ଦୂରରୁ ଟିକିଏ ଚାହିଁ ଦେଉଥିଲା କୃଷ୍ଣଚୂଡ଼ା ଗଛକୁ । ତାକୁ ଲାଗୁଥିଲା ଗଛଟା ଯେମିତି ଝାଉଁଳି ଯାଉଛି । ବିମର୍ଷ ଦିଶୁଛି । ଫିକା ମଳଣ ଦିଶୁଛି ତାର ସବୁଜ ସମ୍ଭାର । ବେଳେବେଳେ ତାକୁ ଲାଗେ କିଛି ଯେମିତି କହିବ କହିବ ହେଉଛି ଗଛଟା । ହେଲେ ସେ ଯିବ କିମିତି ଯେ, ଯିବା ରାସ୍ତାରେ ତ ଖାଲି କଣ୍ଟା ଗଛ । ଥାଉ, ଆଉ କେବେ ଯିବ ଦିନ ଥାଉଁ ଥାଉଁ । ମନ୍ଦିର ଆଡୁ ସଂଜ ଆଳତୀର ଘଣ୍ଟଘଣ୍ଟା କାନରେ ବାଜେ । ପାଦ ଅଥୟ ହୁଏ । ତରତର ହେଇ ତାର ପାଦ ଆପେ ମନ୍ଦିର ଗଳିରେ ପଡ଼େ କୃଷ୍ଣ ନାମ ଜପୁ ଜପୁ । ଏତେଦିନ ଧରି ଯେଉଁ ପ୍ରିୟ ପୁରୁଷଟି ତା' ମନ ପ୍ରାଣ ଆତ୍ମାକୁ ଆଛନ୍ନ କରି ରଖିଥିଲା, କ୍ରମଶଃ ସେଇ ହୃଦ ସିଂହାସନରେ ପ୍ରତିଷ୍ଠିତ ହୋଇ ସାରିଥିଲେ ପ୍ରେମମୟ-ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତୀ । ମନ୍ଦିରବେଢ଼ା ପାଲଟି ଯାଇଥିଲା ଶ୍ୟାମାୟୀତ ମଧୁବନ । ରାଧାକୃଷ୍ଣଙ୍କର ନାମ କୀର୍ତ୍ତନ ଭିତରେ ତରୁଣୀ ସନ୍ନ୍ୟାସିନୀ ଜୀବନର ପରମାର୍ଥ ଖୋଜୁଖୋଜୁ କୃଷ୍ଣଚୂଡ଼ାର ରଂଗରେ ନିଜକୁ ହଜେଇ ଦେଲା । ବାପା, ବୋଉ ଘରଦ୍ୱାର ସଂସାର ଭୁଲିଲା, ନିଜକୁ ଭୁଲିଲା, ଏମିତିକି ଧୀମନ୍ତକୁ ବି ।

ସମୁଦ୍ରକୂଳିଆ ସେଇ ଗାଁ ଆକାଶରେ ନିତି ଉଇଁଲା ପୂନେଇଁ ଜହ୍ନ । ନିତ୍ୟ ବସନ୍ତ ବିରାଜିଲା ତା'ର ସକଳ ବିଭବ ନେଇ । ବସନ୍ତରାସର ମଧୁମୂର୍ଚ୍ଛନାରେ ଗୁଂଜରିତ ହେଲା ମଧୁବନ । ସମୁଦ୍ର ଉଛୁଳିଲା ଜହ୍ନକୁ ଦେଖି । ଉତାଳ ହେଲା ମନେଇ ଜହ୍ନ । ମଧୁବନରେ ଶୁଭିଲା କେୟୁର ନୂପୁରର ରୁଣୁଝୁଣୁ ଶବ୍ଦ, ବଂଶୀର ବିଲମ୍ବିତ ଆଳାପ ସହିତ ନଦିୟାର ତାଳେ ତାଳେ ରସନାଗରଙ୍କ ନାମ କୀର୍ତ୍ତନ । ପରିବର୍ତ୍ତିତ ପରିବେଶ ଗାଁର ବିଷୟୀ ମଣିଷମାନଙ୍କୁ ହତଚକିତ କରିଥିଲା ସିନା, କୃଷ୍ଣାନୁରାଗିଣୀ ମାନେ ବାଉଳା ହେଇଥିଲେ । କଥା ଲୁଚିଲାନି, ସମୁଦ୍ର ପବନ ନାଗରା ପିଟିଲା ଡିବିଡ଼ିବି କରି ।

ସବୁ କଥା ସମ୍ଭାଳି ହେଉଥିଲା ଏକ ପ୍ରକାର । କିଛିଟା ଦୟାରେ, ସହାନୁଭୂତିରେ, ଆହାପଣରେ, ହେଲେ ଯେଉଁଦିନ ମେଘମାଳା ବାପାବୋଉଙ୍କ ଆଗରେ ତା' ବୃନ୍ଦାବନ ଯାତ୍ରା କଥା ଉପସ୍ଥାପନ କରି, ଦିନ, ତାରିଖ, ମୁହୂର୍ତ୍ତ ନିର୍ଦ୍ଦିଷ୍ଟ କଲା, ସେ'ଦିନ ସତକୁ ସତ ଶ୍ରୀଚନ୍ଦନ ପରିବାର ଭିତରେ ଏକ ରକମର କୋକୁଆ ଭୟ ଖେଳିଗଲା । ଧରଣୀ ଶ୍ରୀଚନ୍ଦନ ମୁଣ୍ଡରେ ହାତ ଦେଇ ବସିଲେ । ବିଶ୍ୱାସ ହେଉ ନଥିଲା, ଇଏ ସେଇ ଝିଅ, ଯିଏ ସିଧାସଳଖ ଠିଆ ହୋଇକେବେ ଦିନେ କଥା କହିନି ତାଙ୍କ ମୁହଁକୁ ଚାହିଁ । ଆଦର୍ଶକୁ କାନିରେ ବାନ୍ଧି ଦୀର୍ଘ ପନ୍ଦର ବର୍ଷ ହେଲା ଜଣେ ସମର୍ପିତା ପତ୍ନୀର ଉଜ୍ଜ୍ୱଳ ଭାବମୂର୍ତ୍ତିକୁ ଏଇ ଗାଁ ଦାଣ୍ଡରେ ଅଧିଷ୍ଠିତ କରି ଯିଏ ନୂଆ ଇତିହାସ ରଚିଥିଲା - ସେଇ ଝିଅ ତାଙ୍କର ଏଇ ମେଘମାଳା । ଯା'ର ଅନମନୀୟ ନାରୀତ୍ୱ ଆଗରେ ସେ ନିଜେ ବି ମୁଣ୍ଡ ନୁଆଁଇ ଦେଇଛନ୍ତି । ସେଇ ଝିଅ ତାଙ୍କର ମେଘା, ଧୀମନ୍ତର ଜନ୍ମ କଲା ମା' ଏକଥା କହୁଛି !! ସେ ସିନା ଭାବିଥିଲେ ଧୀମନ୍ତ ବଡ଼ ହେବ, ମଣିଷ ହୋଇ ଠିଆ ହେଲେ ସବୁ ଦୁଃଖ ଅପସରି ଯିବ । ପୁଣି ହସି ଉଠିବ ତା'ର ଜୀବନ ଭିନ୍ନ ଏକ ନୂଆ ରୂପରେ ।

ସେ'ପୁଣି ମୁଣ୍ଡଟେକି ଠିଆହୋଇ ଦୁନିଆ ଆଗରେ କହିବେ, "କେବେ ପାଠରେ ପଢ଼ିଥିଲା, ପୁରାଣରେ ଶୁଣିଥିଲା, ହେଲେ ଏବେ ଦେଖ ମୋ' ଝିଅର ଗରିମାମୟ ଉଜ୍ୱଳ ରୂପକୁ... । ହେଲେ କି ବିଡ଼ମ୍ବନା ବିଧାତାର, ଝିଅ ତାଙ୍କର ଇଏ କି ପ୍ରକାର ଜୀବନକୁ ଆଦରି ନେଇଛି । ଏଇଟାକୁ ସେ କିଭଳି ଭାବରେ ଗ୍ରହଣ କରିବେ । ଇଏ ବାଟ କି ଅବାଟ ? ଲୋକେ କ'ଣ କହିବେ । ସଂସାର କ'ଣ କହିବ । ସନ୍ନ୍ୟାସିନୀ ହେଇ ମଠରେ ରହିବ । କାନକୁ ଭଲ ଶୁଭୁନଥିଲା କଥାଟା । ମଠ ସଂସ୍କୃତି ଉପରେ ତାଙ୍କର ସେଭଳି ଖୁବ୍ ଉଚ୍ଚ ଧାରଣା ନଥିଲା । ବୋଧହୁଏ ସେଇଥିପାଇଁ ତାଙ୍କର ପିତୃପ୍ରାଣ ବିକଳ ବିତ୍ରସ୍ତ ହୋଇ ପଡୁଥିଲା, ତା'ଛଡ଼ା ମେଘା ତ ଅସହାୟ ନୁହେଁ ।

ଅନେକ ବୁଝେଇଥିଲେ ଭାଇମାନେ । ଦୀକ୍ଷା ନେଇ ବି ତ ଅନେକେ ଅଛନ୍ତି ସଂସାର ଭିତରେ ଥାଇ । ମନ ଯେତେବେଳେ ଥରେ ସନ୍ନ୍ୟାସ ନେଇ ସାରିଛି, ତା' ପାଇଁ ସଂସାରର ଯାବତୀୟ ସୁଖ ଆନନ୍ଦର କିଛି ମାନେ ନାହିଁ । ତୋ' ଜୀବନଚର୍ଯ୍ୟା ଉପରେ ସେ ସବୁ କିଛି ପ୍ରଭାବ ପକେଇବନି । ତା' ଛଡ଼ା ଧୀମନ୍ତ ବଡ଼ ହେଉଛି । ମଣିଷ ପରି ମଣିଷଟିଏ କରି ଗଢ଼ି ତୋଳିବାରେ ତୋର କ'ଣ କିଛି ଅବଦାନ ନାହିଁ ? ସିଏ କ'ଣ ତୋ' ଜୀବନର ଶ୍ରେଷ୍ଠ ସଫଳତା ନୁହେଁ ? ତା' ମନକୁ ରିକ୍ତ କରିଦେବା ତୋ' ପକ୍ଷରେ ଉଚିତ ହେବନି ମେଘା – ତା' ପାଇଁ ତ ତୁ ଶ୍ରେଷ୍ଠ ଅବଲମ୍ବନ – ଏକମାତ୍ର ଭରସା । ଆଉ ଥରେ ବିଚାର କର ନିଜର ନିଷ୍ପତ୍ତି ସଂପର୍କରେ ।

ହେଲେ, ମେଘମାଳା, ନିଷ୍ପତ୍ତି ତ ନେଇ ସାରିଥିଲା । ତା' ଆଖିରେ ଦିବ୍ୟାଞ୍ଜନର କୁହୁକ ବୋଳି ଦେଇଥିଲେ ପରମ ପ୍ରେମମୟ ଶ୍ୟାମ ସୁନ୍ଦର । କସ୍ତୁରୀ ଚନ୍ଦନର ବାସ୍ନା ତାକୁ ପାଗଳ କରୁଥିଲା । ଅଥୟ ହେଉଥିଲା ମନ ପବନ । ଅହରହ ବଂଶୀର ରାଧେ ରାଧେ ଡାକ ତାକୁ ଉଚ୍ଚକିତ କରୁଥିଲା ସେ ଆଉ ନିଜ ଭିତରେ ନଥିଲା । ତମାଳର ମଦିର ଗନ୍ଧରେ ଉନ୍ମନା ରାଇ ମନପବନର ନଉକା ଚଢ଼ି ପହଞ୍ଚି ସାରିଥିଲା ଲୀଳାଭୂମି ବୃନ୍ଦାବନରେ ।

କାର୍ତ୍ତିକର ଶୀତ ସକାଳ । ଦୂରରୁ ଶୁଭୁଥିଲା କାର୍ତ୍ତିକ ବ୍ରତୀଙ୍କର ହୁଳହୁଳି ସହିତ ରାଧାକୃଷ୍ଣ ଭକ୍ତି ସମ୍ବଳିତ ଚୌପଦୀ ଭଜନ । ଘରିଆଡ଼େ କେମିତି ଏକ ମାଧୁର୍ଯ୍ୟମୟ ପରିବେଶ । ଧୂପଦୀପ ଗନ୍ଧ ଚନ୍ଦନର ମହକ ଭାସି ବୁଲୁଥିଲା ପବନରେ । ବଡ଼ି ସକାଳୁ କୁଂଜଲତା ଉଠି ବାଡ଼ିପଟ ଖଂଜା ଆଡ଼କୁ ଚାଲ ଚାଲ ହୋଇ ମାଡ଼ିଗଲେ । ତଳ ଖଂଜା ଭିତରେ ମେଘମାଳାର ନିଜସ୍ୱ କୋଠରି । ଆଗରୁ ଧୀମନ୍ତକୁ ନେଇଁ ସେ ଶୁଆବସା କରୁଥିଲା । ଧୀମନ୍ତ ବଡ଼ ହେଇଗଲା ପରେ ବୋଉ କୋଳ ଛାଡ଼ି ଅଜାଙ୍କ ସାଂଗରେ ରହିବାକୁ ଭଲ ପାଇଲା । ଆଜିକାଲି ତ ମେଘା ସେଇ କୋଠରୀଟିକୁ ରୀତିମତ ମନ୍ଦିରରେ ପରିଣତ କରିଦେଇଛି । ସେଠି ପିତଳ ବିମାନରେ ପ୍ରତିଷ୍ଠିତ ହେଇଛନ୍ତି ରସରାଜ ଶ୍ୟାମ ସୁଂଦର ।

କୁଂଜଲତା ଜାଣନ୍ତି, କୁଆଁତରା ଉଠିଲେ, କୁଆ ଡାକିନଥିବ, ମେଘା ଉଠି ଚାଲିଯାଇଥିବ ରୂପେଇ ନଈକୁ । ଆଉ ସେ ଉଠିଲା ବେଳକୁ ଫେରୁଥିବ ରାଈଦାମୋଦର ପୂଜା ସାରି ଘରକୁ ।

ନହେଲେ କେବେ କେବେ ମୁରୁଜ ପକଉଥିବ ଚଉଁରାମୂଳେ । କଳାଧଡ଼ିର କୁମ୍ଭପକା ମଠା ପିନ୍ଧି । ଆଜି ସେଇ ନିତିଦିନର ପରିଚିତ ଛବିଟା ଆଖିରେ ପଡ଼ିଲାନି କୁଂଜଲତାଙ୍କର । ହଠାତ୍ ମନଟା କିମିତି ହେଇଗଲା, ଭଲ ଲାଗିଲାନି । ସକାଳୁ ଉଠିବା ମାତ୍ରେ ଅଭ୍ୟାସ ଗତ ଫ୍ରେମ ଭିତରେ ସବୁବେଳେ ସେଇ ଛବିକୁ ସେ ଦେଖିଆସିଛନ୍ତି ତ । ତା'ର ଅବର୍ତ୍ତମାନ ତାଙ୍କୁ କିମିତି ଅସ୍ୱାଭାବିକ ଲାଗିଲା । ଅଡୁଆ ଅଡୁଆ, ଭାବିଲେ ମନେ ମନେ, ଏ ଯାଏଁ କ'ଣ ମେଘା ନଈରୁ ଫେରିନି । ବେଳ ତ ଗଡ଼ିଗଲାଣି । ଆକାଶକୁ ଚାହିଁଲେ ଫରଚ୍ଛ ଦିଶୁଛି ପୂର୍ବଦିଗ । ଦୃଷ୍ଟି ଫେରେଇଲେ ଆକାଶରୁ କୋଠରି ଆଡ଼କୁ । ସବୁଦିନ ଭଳି ଆଉଜା ହୋଇଛି ଦୁଆର । ପୁଣି ଭାବିଲେ, ଆସୁଥିବ ମନ୍ଦିର ବେଢ଼ା ଦେଇ । ଆଜି ଏକାଦଶୀ ତିଥି ଅଛି । ମନ୍ଦିର ତାକୁ ବାୟାଣୀ କରିଛି । ହଉ, ଆସୁଥିବ ତା' ମନକୁ ଆସିବା ଭାବନା ଉଡ଼ିଗଲା ଉତ୍ତରା ପବନରେ । ଦାଣ୍ଡଦୁଆରେ ଡାକ ପକେଇଲା ଶିବ-ମା' ବାସି ପାଇଟିକୁ । ଖରତର ହେଇ ଧାଇଁଲେ କୁଂଜଲତା । ଝିଅଟା ପାଇଁ କିଛି ଫଳାହାର ମଗେଇନେବେ ଶିବ ମା' ହାତରେ । ନଡ଼ିଆ ପୁଞ୍ଜିଏ ଛଡ଼େଇବାକୁ କହିବେ, ମେଘା ଖୋଜିବ ଆସିଲେ । ଦାନ୍ତକାଠି ପାଟିରେ ଗୁଂକି ଶିବ-ମା'କୁ ବାର ଫରମାସି କରୁ କରୁ ଘଡ଼ିଏ ଗଲା ଚଳନ୍ତି ସମୟରୁ । ଘର ଦୁଆର ଓଳେଇ ସାରି ଦଅଁଙ୍କ ଘର ପୋଛିବାକୁ ଶିବ-ମା' ତଳଖଂଜାକୁ ଓହ୍ଲେଇଲା । ସେଠି ମେଘା ଦେଈଙ୍କ କୋଠରି । ଛୁଞ୍ଚକନା ବୁଲେଇ ଘର ପୋଛିସାରି, ବାଡ଼ି ଅଗଣାରୁ ଫୁଲ ତୋଳି ରଖି ସାରିଲେ ଯାଇ ତା'କାମ ସରେ । ନିତି ଦିନର ଅଭ୍ୟାସରେ ଶିବ ମା' କୋଠରିର କବାଟ ଠେଲି ଭିତରକୁ ପଶି, ଚମକି ପଡ଼ି ଦି'ପାଦ ପଛକୁ ଘୁଞ୍ଚିଗଲା । ଆଖିବୁଜି ହେଇଗଲା । ହାତରୁ ଖସି ପଡ଼ିଲା ପାଣି ବାଲଟି । ବିକଳରେ ଆଖି ଖୋଲି ଯାହା ଦେଖିଲା, ଏଡ଼େ ଶୀତରେ ବି ଟମଝାଳ ବୋଳିଗଲା ତା' ଦେହରୁ । ପାଟି ଖନି ମାରିଗଲା, ଏ କ'ଣ !!! ମା'... ତା' ପାଟି ଶୁଣି ଧାଇଁ ଆସିଲେ ଜଣ ଜଣ କରି ଘରଟା ଯାକର ମଣିଷ । ମୁଣ୍ଡ ବାଡ଼େଇ ଦେଲେ କୁଂଜଲତା ଶ୍ୟାମସୁନ୍ଦରଙ୍କ ପାଦତଳେ - "ଶେଷରେ ଏଇୟା ଦେଖେଇଲେ ଠାକୁର... କି ପାପ କରିଥିଲି... ।"

ନିଦରୁ ଉଠି ଆସିଥିବା ଶ୍ରୀଚନ୍ଦନଙ୍କର ହଠାତ୍ ଚେତା ବୁଡ଼ିଗଲା । ବଡ଼ ପୁଅ ଧାଇଁ ଆସି କୋଳେଇ ଧରି ମୁହଁରେ ପାଣି ମାରି ନାକ କାନ ଫୁଙ୍କିବାକୁ ଲାଗିଲା । ମୁହୂର୍ତ୍ତକରେ ସବୁ କିମିତି ଗୋଳମାଳ ହେଇଗଲା । ଅଭାବନୀୟ ପରିସ୍ଥିତି । ସମସ୍ତେ ହତବମ୍ଭ । ଏ କ'ଣ ହେଲା !! ଆଉ ଧୀମନ୍ତ... ଜୀବନର ପ୍ରଥମ ପ୍ରଭାତରେ, ଆନନ୍ଦମୁଖର ଜୀବନର ହାତଧରି ବାଟ ଚାଲିବାକୁ ପାଦ ଉଠେଇଥିବା ଧୀମନ୍ତ, ହଠାତ୍ ଝୁଣ୍ଟି ପଡ଼ିଲା ଯିମିତି । ଯିଏ ମୃତ୍ୟୁ କେବେ ଦେଖିନଥିଲା କି ଜାଣିନଥିଲା... ସାମ୍ନାରେ ସେଇ ଭୟଂକର ମୃତ୍ୟୁକୁ ଦେଖି ସ୍ଥାଣୁ ପାଲଟିଗଲା । ପଲକ ପଡ଼ିଲାନି ଆଖିର, ଲୁହ ଝରିଲାନି କି ଭାଷା ଫୁଟିଲାନି ଓଠରୁ । ତା'ର ଅତି ଆଦରର ବୋଉ - ଦୁଃଖର ପାହାଡ଼ ବୋଝେଇ ବାଟ ଚାଲୁଥିବା ବୋଉ ତାର - ତାକୁ ଏକା କରି ଦେଇ କାହିଁକି ଚାଲିଗଲା ଏମିତି, କିଛି ବୁଝି ପାରୁନଥିଲା ।

କେତେ ରାତିରୁ କେଜାଣି ବାଡ଼ିପଟୁ କୂଅ ଦଉଡ଼ି ଆଣି ବେକରେ ଲଗେଇ ଓହଳି ପଡ଼ିଥିଲା ମେଘା ଘର ଭିତରର ତୁଳୀକାଠରେ । କାନି ପଣତରେ ବନ୍ଧା ହୋଇଥିଲା ଚିଠି ଖଣ୍ଡେ ବାପା ଧରଣୀ ଶ୍ରୀଚନ୍ଦନଙ୍କ ଉଦ୍ଦେଶ୍ୟରେ ।

ବାପା,

ମୁଁ ଜାଣେ, ତମେ ମୋତେ କେବେ କ୍ଷମା କରିବନି । ତମ କ୍ଷମାର ଯୋଗ୍ୟ ବି ମୁଁ ନୁହେଁ । ତଥାପି କ୍ଷମା ମାଗି ନେଉଛି । ଆଉ ପାରୁନି । ବଂଚି ରହିବା ସମ୍ଭବ ହେଲାନି । ଧୀମନ୍ତ ପାଇଁ କଲ୍ୟାଣ ଛଡ଼ା ଆଉ କିଛି ନାହିଁ ମୋ ପାଖରେ । ଜାଣେନା, ମୋ ଜନ୍ମଲଗ୍ନରେ ଶୁଭଶଙ୍ଖ ବାଜିଥିଲା କି ନାହିଁ । ହେଲେ ବାହାଘରେ ତ ବାଜିଲାନି । ଆଉ ଆଜି ମୋର ଅନ୍ତିମ ଯାତ୍ରା ବି ସେଇ ନିରବତା ଭିତରେ । ତମ ସ୍ନେହର, ତମ ବିଶ୍ୱାସର ଯୋଗ୍ୟ ମୁଁ ହେଲିନି । ତେଣୁ ତମ ପାଦଧୂଳି ନେବାର ସୌଭାଗ୍ୟ ମଧ୍ୟ ମୋର ନାହିଁ । ଭାଇମାନଙ୍କୁ କହିବ, ନିଜ ଗୁଣରେ ମୋତେ କ୍ଷମା କରିବେ । ଧୀମନ୍ତ ତ ତମର । ବୋଉକୁ କହିବ, କାନ୍ଦିବନି ମୋ' ପାଇଁ । ତା' ପାଖରେ ତ ମୁଁ ଅପରାଧୀ । ମୁଁ ଯାଉଛି ମିହିର ପାଖକୁ କ୍ଷମା ମାଗିବାକୁ । ମୋ ମୃତ୍ୟୁ ପାଇଁ କେହି ଦାୟୀ ନୁହଁନ୍ତି ।

ଇତି
ମେଘମାଳା

ସାନପୁଅ ଶୁଭେନ୍ଦୁ ଚିଠିଟିକୁ ପଢ଼ି ବଢ଼େଇ ଦେଲା ବାପାଙ୍କ ହାତକୁ । ବାପା ବଢ଼େଇ ଦେଲେ ବଡ଼ପୁଅ ଶିବେନ୍ଦୁ ହାତକୁ । ପରସ୍ପର ପରସ୍ପର ସହିତ ଦୃଷ୍ଟି ବିନିମୟ କଲେ । ସେଇ ଦୃଷ୍ଟିରେ କିଛି ଅର୍ଥ ପ୍ରକଟୁ ନଥିଲା । ଶୂନ୍ୟ ଦୃଷ୍ଟି । ନିଃସ୍ୱ ହୋଇଯିବାର ଦୃଷ୍ଟି । ଏତେଦିନର ଥାଇତା ଦମ୍ଭ, ଅହଂକାର, ବଂଶପରଂପରା, ଆତ୍ମସମ୍ମାନବୋଧ ଶବ ପାଲଟି ଯାଇ ନିଷ୍ପ୍ରାଣ ମେଘମାଳା ସହିତ ମିଶି ଏକାକାର ହେଇଯାଇଥିଲା । କେହି କାହାକୁ ଆଶ୍ୱାସନା ଦେଇନଥିଲେ, ପ୍ରବୋଧନା ଦେଇନଥିଲେ । ଆଶୁ କର୍ତ୍ତବ୍ୟ କଥା ଭାବୁ ଭାବୁ ଶୁଭେନ୍ଦୁର ଦୃଷ୍ଟି ଲମ୍ବିଗଲା ଆକାଶକୁ । ସକାଳର ଉଜ୍ଜ୍ୱଳ ଆକାଶଟା ଗୁମ୍‌ସୁମ୍ ଦିଶୁଛି ।

"ଦେଖିଲ ଭାଇ, କିମିତି ଅଂଧାର ଘୋଟି ଆସୁଛି । କଳାମେଘ, ବର୍ଷିବ ନା କ'ଣ !!" ସତେ ତ ! ଅଦିନିଆ ମେଘ । କୁଆଡ଼େ ଦିନଥିଲା, ଅଘଟନକ କୋଉଠୁ ମାଡ଼ି ଆସିଲା ଯେ, କହୁ କହୁ ଟପ୍ ଟପ୍ ହେଇ ବରକୋଳିଆ ଟୋପା ସବୁ ଝରି ପଡ଼ିଲେ ଆକାଶ ଛାତିରୁ ।"

ସେଇମିତି କାହ୍ନୁକୁ ଆଉଜି, ଧରଣୀ ଶ୍ରୀଚନ୍ଦନ ଆକାଶକୁ ଚାହିଁ କହିଲେ– "ଠିକ୍ ଏଇମିତି ଏଇ ମେଘା ଜନ୍ମବେଳକୁ, ଚିହ୍ନବର୍ଣ୍ଣ ନ ଥିବା ଅଦିନିଆ ବର୍ଷନ୍ତି ମେଘଟିଏ ମାଡ଼ି ଆସିଥିଲା ଜ୍ୟେଷ୍ଠ ମାସର ଡହ ଡହ ଖରାବେଳଟାରେ । ଗଛବୃଛ ଶାନ୍ତ ହେଇଥିଲେ ତମାମ୍ ଜୀବଜଗତ ସହିତ । "ଲକ୍ଷ୍ମୀ ଆସିଲେ ଧରଣୀକୁ, ପୃଥ୍ୱୀ କେମିତି ଶାନ୍ତ ହେଲା ଦେଖୁନୁ । ଝିଅକୁ କୋଳକୁ ଉଠେଇ ଡାକିଲେ 'ମେଘମାଳା' - ମେଘକୁ ଡାକି ଆଣିଛି ସାଂଗରେ ଏଇ ମେଘା, - ମୋ' ମେଘକନ୍ୟା" ।





'ଅନ୍ଧାରର ମୁହଁ' ଆମ ସମୟର ଜଣେ ମନସ୍ୱିନୀ ସାରସ୍ୱତ ସାଧିକା ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ରଙ୍କର ଅନ୍ୟତମ ଶ୍ରେଷ୍ଠ ଗଳ୍ପ ସଂକଳନ । ଅନ୍ଧାରକୁ ପର୍ସୋନିଫିକେସନ (ବ୍ୟକ୍ତିତ୍ୱ ଆରୋପ) କରି ସଂସାରର ତରୁଛାୟା ମଧ୍ୟରେ ନାରୀର ଅବଗୁଣ୍ଠିତ ଭାବସତ୍ତାର ଯଥାର୍ଥ ନାମକରଣ କରାଯାଇଛି । ବାସ୍ତବିକ୍ ଭରାଭରା ସଂସାର ଭିତରେ ନାରୀର ଏକମାତ୍ର ସାଥୀ ତା' ଏକ୍‌ଲାପଣ । ସେଇ ଏକ୍‌ଲାପଣରେ ଥାଏ ଅସରନ୍ତି ଦୁଃଖ ସହ ସଂଘର୍ଷ । ନିଜ ଭିତରର ଏଇ ବେସାଲିସ୍ ଯୁଦ୍ଧରେ କ୍ଷତବିକ୍ଷତ ହେଉଥାଏ ତା' ମନ । କେତେବେଳେ ସେ ଉତ୍‌କ୍ଷିପ୍ତ ହୁଏ, ପୁଣି କେତେବେଳେ ହସେ ଓ କାନ୍ଦେ, ଯାହା କେବେବି ସନ୍ତାନ ବା ସ୍ୱାମୀଙ୍କ ଆଖିରେ ନ ପଡ଼ିବା ଭଳି । ତା' ଅତୀତର ସ୍ମୃତି ଓ ସନ୍ତକମାନଙ୍କୁ ସେ ଖୁବ୍ ଯତ୍ନରେ ସାଇତି ରଖେ କାହିଁକି ନା ସେଥିରେ ଜଡ଼ିତ ଥାଏ ତା' ପ୍ରିୟଜନଙ୍କ କେତେ ମାନ ଅଭିମାନ, ଭଲପାଇବା, ଈର୍ଷା ଓ ଘୃଣାର ଅଭୁଲା ଇତିହାସ । ଅବଶ୍ୟ ସେଥିପାଇଁ ସେ ସ୍ୱାମୀ ଓ ତା' ହାତଗଢ଼ା ପୁଅଝିଅ, ନାତିନାତୁଣୀଙ୍କ ଠାରୁ 'ମିଡିଲ୍‌କ୍ଲାସ୍ ମେଣ୍ଟାଲିଟି'ର ଅପବାଦ ବି ପାଏ । ଏ ଅପବାଦର ଦୁଃଖ କ'ଣ କମ୍ ଯନ୍ତ୍ରଣାଦାୟକ ! ଏସବୁ ବାହାରକୁ ଦିଶୁ ନଥିବା ଏକ ବିରାଟ ଅନ୍ଧାର ଯେଉଁ ଅନ୍ଧାର ଅଟକି ଯାଇଛି ମନଗହନର ଏରୁଣ୍ଡି ଭିତରେ । ମାତ୍ର ଭାବନା ସମୂହ ସମୟ ବନ୍ଧ ଡେଇଁ ଧାଡ଼ିଧାଡ଼ି ହୋଇ ଚାଲି ଆସିଛନ୍ତି କାହାଣୀ ହୋଇ ଆମ ପାଖକୁ ।

ଏହି ସୁନ୍ଦର ସାରସ୍ୱତ ଗଳ୍ପ ସଂକଳନ ଶ୍ରଦ୍ଧାଳୁ ପାଠକ/ପାଠିକାଙ୍କୁ ନିଶ୍ଚୟ ଅସରନ୍ତି ତୃପ୍ତି ପ୍ରଦାନ କରିବ, ଏଥିରେ ସନ୍ଦେହ ନାହିଁ ।

–ପ୍ରକାଶକ



